କବି ସମ୍ରାଟ ଉପେନ୍ଦ୍ର ଭଞ୍ଜ ବିରଚିତ

ସଚିତ୍ର




# ଦ୍ୱିତୀୟ ଖଣ୍ଡ

( ବିଜୟବୈଜୟନ୍ତୀ ଟୀକା ସହ )

ସମ୍ପାଦକ ଓ ଟୀକାକାର :—

ଶ୍ରୀ ଉଦୟନାଥ ଷଡ଼ଙ୍ଗୀ

ପ୍ରକାଶକ :—

ନାରାୟଣ-ପୁସ୍ତକାଳୟ

ଶ୍ରୀ ନାରାୟଣ ଚନ୍ଦ୍ର ଦାସ

ପୋ: ଚାନ୍ଦନୀଚୌକ, କଟକ

* ଦ୍ୱିତୀୟ ସଂସ୍କରଣ *

ମୂଲ୍ୟ ୨ / ୮ ଅଢେଇ ଟଙ୍କା ମାତ୍ର

# ଭୂମିକା

---

ମହାକାବ୍ୟ 'ବୈଦେହୀଶବିଳାସ' ଅମର କବି ଉପେନ୍ଦ୍ର ଭଞ୍ଜଙ୍କର ଶ୍ରେଷ୍ଠ ଅବଦାନ । ଭାବର ଗାମ୍ଭୀର୍ଯ୍ୟରେ, ଭାଷାର ମାଧୁର୍ଯ୍ୟରେ, ଛନ୍ଦର ଲାଳିତ୍ୟରେ, ଅପରୂପ ଶବ୍ଦ ବିନ୍ୟାସ ଓ ଅଳଙ୍କାରର ଶୈଳୀରେ ଏହା ପ୍ରାଚୀନ ଉତ୍କଳ ସାହିତ୍ୟର ଏକ ଅମୂଲ୍ୟରତ୍ନ । ଏହା ଉତ୍କଳ ସାହିତ୍ୟ କାହିଁକି, ବିଶ୍ୱ ସାହିତ୍ୟରେ ଯେ ଏହାର ସ୍ଥାନ ଅତି ଉଚ୍ଚରେ,—ଏହା ସମସ୍ତେ ମୁକ୍ତ କଣ୍ଠରେ ସ୍ୱୀକାର କରିବେ ।

କବିଙ୍କର ଦୁର୍ଭାଗ୍ୟ ଯେ, ସେ ଅମ ଉତ୍କଳ ପ୍ରଦେଶରେ ଜନ୍ମ ଗ୍ରହଣ କରିଥିଲେ । ପାଶ୍ଚାତ୍ୟ ଦେଶ ତାଙ୍କର ଜନ୍ମଭୂମି ହୋଇଥିଲେ, ସେ ବର୍ତ୍ତମାନ ଯେ କୌଣସି ବିଶ୍ୱବିଖ୍ୟାତ କବିଙ୍କର ସମାନ ଆସନରେ ପୂଜା ପାଉଥାନ୍ତେ;—ଏହା ଗତ 'ଉତ୍କଳ' 'ଇନ୍ଦ୍ରଧନୁ' କଳହ ସମୟରେ ତାଙ୍କର ନିତାନ୍ତ ଶତ୍ରୁପକ୍ଷ ମଧ୍ୟ ସ୍ୱୀକାର କରି ଯାଇ ଅଛନ୍ତି । ଆଧୁନିକ ତଥାକଥିତ ଶିକ୍ଷିତ ତାଙ୍କର କେତେକ ଲେଖାରେ ଅଶ୍ଳୀଳତାର ଦୋଷ ଦେଖାଇଥାନ୍ତି, ମାତ୍ର 'ବୈଦେହୀଶ-ବିଳାସ' ଏ ଦୋଷରୁ ଏକାବେଳକେ ମୁକ୍ତ ।

ଏହି କାବ୍ୟରେ ଛନ୍ଦମାନ ଅନେକ ସ୍ଥଳରେ ସହଜବୋଧ ନ ହେଲେ ମଧ୍ୟ ଗାଁ ଗଣ୍ଡାର ଅର୍ଦ୍ଧଶିକ୍ଷିତ, ଅଶିକ୍ଷିତଙ୍କ ମନକୁ ଏପରି ଅଧିକାର କରି ରଖିଛି ଯେ, ଗାଈଜଗୁଆଳ ପିଲା ମୁଖରୁ ବି 'ବତଳକୁ ଅଲଙ୍ଗନ' ଛନ୍ଦ ବହୁତ ସମୟରେ ଶୁଣାଯାଏ; ଛନ୍ଦମାନଙ୍କର ମନ ମୋହନ କରିବାର କ୍ଷମତା ଏଥିରୁ ବେଶ୍ ସୂଚିତ ହେଉଅଛି ।

ଏହା ପୂର୍ବରୁ ସଟୀକ ବୈଦେହୀଶବିଳାସ କେତେଥର ପ୍ରକାଶିତ ହୋଇଥିଲା, ମାତ୍ର ତାହାର ଟୀକା ପୂର୍ଣ୍ଣତା ପ୍ରାପ୍ତ ନୁହେଁ କିମ୍ବା ଛନ୍ଦର ମାଧୁରୀ ଠିକ୍ ରଖାଯାଇ ନାହିଁ । ଅନେକ ସ୍ଥାନରେ ମଧ୍ୟ ଛନ୍ଦର ଭାବକୁ ଅଯଥା ପୀଡ଼ିତ ଓ ବିକଳାଙ୍ଗ କରାଯାଇଅଛି । ଏହି ସବୁ ଅଭାବ ଦେଖି, ଏହି କାବ୍ୟର ଯଥାସାଧ୍ୟ ପୂର୍ଣ୍ଣ ଓ ଦୋଷ ରହିତ 'ବିଜୟବୈଜୟନ୍ତୀ' ଟୀକା ଦୁଇଜଣ ବିଜ୍ଞ ସାହିତ୍ୟିକଙ୍କଦ୍ୱାରା କରାଇ ପୁସ୍ତକ ପ୍ରକାଶ କଲୁ । ଅଭ ମଧ୍ୟ ଏହାକୁ ଚିତ୍ତରଞ୍ଜନ

ଓ ସର୍ବାଙ୍ଗସୁନ୍ଦର କରିବା ପାଇଁ ଯେତେଗୋଟି ମନୋହର ଛନ୍ଦ ଏବଂ ସ୍ପଷ୍ଟ ନକ୍ଷତ୍ର ଚକ୍ରମାନଙ୍କର ସୁଗମ ପରିଚୟ ଦେବା ପାଇଁ ଅନ୍ତର ନକ୍ସାମାନ ଏଥିରେ ଦିଆଯାଇଛି । ଏଦ୍ୱାରା ଏ ମହାକାବ୍ୟର ଉପାଦେୟତା ଯେ କେତେ ବଢି ପାଇଛି, ତା ପାଠକମାନେ ବିବେଚନା କରିବେ ।

ପରିଶେଷରେ ନିବେଦନ, ଯେତେ ପ୍ରକାର ଚେଷ୍ଟା ଓ ପରିଶ୍ରମ କରାଗଲେ ମଧ୍ୟ 'ବୈଦେହୀଶବିଳାସ' ପରି ମହାକାବ୍ୟର ଟୀକା କରିବାରେ ଯେ ତ୍ରୁଟି ନ ରହିବ, ଏହା ଦୃଢ଼ତାର ସହିତ କୁହାଯାଇ ନ ପାରେ । ତେଣୁ ଏଥିରେ ସ୍ଥାନେ ସ୍ଥାନେ ଦୋଷ ରହିଯାଇଥିବା ଅସମ୍ଭବ ନୁହେଁ । ସହୃଦୟ ରସଜ୍ଞ ପାଠକମାନେ ଦୟା କରି ତ୍ରୁଟିମାନ ଦର୍ଶାଇ ଦେଲେ, ଉପଯୁକ୍ତ ବିବେଚିତ ହେଲେ ପରସଂସ୍କରଣରେ ତାହା ସଂଶୋଧନ କରି ନେବି ।

ଶ୍ରୀ ଉଦୟନାଥ ଷଡ଼ଙ୍ଗୀ



# ସୂଚୀପତ୍ର








# ଦ୍ୱିତୀୟ ଖଣ୍ଡ

## ଚତୁର୍ଦ୍ଦଶ ଛାନ୍ଦ

ରାଗ—ମଙ୍ଗଳଗୁଜ୍ଜରୀ

ବେହରଣ ଭଙ୍ଗି ବଭ୍ରାଜନ ମୂଳ କର ।
ବଶୁଦ୍ଧ ତାର ଲଗ୍ନକୁ ଜ୍ୟୋତିଷେ ବସ୍ତୁର ଯେ ।୧।
ବର୍ଦ୍ଧକୀଚୟ କି ମୟ ବିଶ୍ୱକର୍ମା ଗୁରୁ ।
ବେଦକାମଣ୍ଡପ କଲେ ଅତଶୟ ରୁଚିରୁ ଯେ ।୨।

---

୧ମ ପଦ—ବେହରଣ—ସଭା । ବିଶୁଦ୍ଧ—ନିର୍ଦ୍ଦୋଷ ବା ଉତ୍ତମ । ତାର—ନକ୍ଷତ୍ର ।

୨ୟ ପଦ—ବର୍ଦ୍ଧକୀଚୟ—ବଢ଼ାଇମାନେ ।

---

## ଚତୁର୍ଦ୍ଦଶ ଛାନ୍ଦ

୧ମ ପଦ—କନ୍ୟା ଦେଖା ପରେ ସଭା ଭାଙ୍ଗି ଜ୍ୟୋତିଷମାନଙ୍କ ସହିତ ଶ୍ୱଶୁର କର ବିବାହ ପାଇଁ ଶୁଭ ଲଗ୍ନ, ଶୁଭଚନ୍ଦ୍ର ଓ ଭଲ ଦିନ ସ୍ଥିର କଲେ ।

୨ୟ ପଦ—ବଢ଼ାଇମାନେ ବେଦୀ ଓ ବିଭାମଣ୍ଡପ ଅତ୍ୟନ୍ତ ସୁନ୍ଦର ରୂପେ ନିର୍ମାଣ କଲେ । ତାହା ଦେଖି ମନେ ହେଲା, ସେମାନେ ମୟଦେବ ଓ ବିଶ୍ୱକର୍ମା ଏ ଦୁହିଙ୍କର ଗୁରୁ ଅଟନ୍ତି କି ? ( ଏ ଦୁହେଁ ପ୍ରସିଦ୍ଧ ଶିଳ୍ପୀ, ମାତ୍ର ମଣ୍ଡପନିର୍ମାତା ବଢ଼େଇମାନଙ୍କ ଅପେକ୍ଷା ନ୍ୟୂନ ଅଟନ୍ତି ) ।

ବଇକୁଣ୍ଠପୁରୁ ରଥ ପଡ଼ିଲା କି ଖସି ।
ବଇକୁଣ୍ଠ-ପୁରସଭା ଶୋଭନକୁ ହସି ।୩।
ଜଳଧର ହରିତବସନେ ହୋଇଛନ୍ତି ।
ଭଲଗନ ତଳରେ ଜଘରେ ରମ୍ଭା ସ୍ଥିତି ଯେ ।୪।
ଭ୍ରମିଲା ଚିତ୍ତ ଛାୟାମଣ୍ଡପକୁ ଚାହିଁ ।
କେଡ଼ି ରହିଲା କି ସୁରସଭା ଅଛି ତହିଁ ଯେ ।୫।
ବିନୟ ତ ସୁମନମାଳାରେ ଅବିରତ ।
ବାଞ୍ଛା-କଳ୍ପଦ୍ରୁମ ପରି ଫଳରେ ପୂରିତ ଯେ ।୬।

---

୩ୟ ପଦ—ବୈକୁଣ୍ଠପୁର—ସ୍ୱର୍ଗପୁର ବା ବିଷ୍ଣୁପୁର । ବଇକୁଣ୍ଠପୁର-ସଭା—ସୁଧର୍ମା ସଭା ।

୪ର୍ଥ ପଦ—ହରିତବସନ—ହଳଦିଆ ଲୁଗା, ବସ୍ତ୍ର । ରମ୍ଭା—ରମ୍ଭାନାମ୍ନୀ ସ୍ୱର୍ଗ ବେଶ୍ୟା, କଦଳୀ ଗଛ ।

୫ମ ପଦ—ଛାୟାମଣ୍ଡପ—ଛାମୁଣ୍ଡିଆ । ସୁରସଭା—ଦେବସଭା ।

---

୩ୟ ପଦ—ସେହି ବେଦୀ ଓ ମଣ୍ଡପର ଶୋଭା ଦେଖି ମନେ ହେଲା, ବୈକୁଣ୍ଠ ଭୁବନରୁ ବିଷ୍ଣୁରଥ ମହୀକୁ ଖସି ପଡ଼ିଲା କି ? ଇନ୍ଦ୍ରଙ୍କର ସୁଧର୍ମାସଭାର ସୌନ୍ଦର୍ଯ୍ୟ ମଧ୍ୟ ସେ ମଣ୍ଡପର ଶୋଭା ଉପହାସ କଲା ।

୪ର୍ଥ ପଦ—ବିଷ୍ଣୁରଥ ନାରାୟଣଙ୍କ ସହିତ ଶୋଭିତ ହୋଇଥାଏ, ସେହିପରି ଏ ବେଦୀ ରାମ ସୀତାଙ୍କସହ ଶୋଭା ପାଇଲା । ସୁଧର୍ମାସଭାରେ ଦିଗମ୍ବର ମାନେ ବିହାର କରୁଥାନ୍ତି, ଏ ମଣ୍ଡପରେ ବନ୍ଧା ହୋଇଥିବା ହଳଦିଆବର୍ଣ୍ଣ ଲୁଗା ସବୁ ପବନ ଯୋଗେ ଦୋହଲି ଅଛନ୍ତି । ସେହି ସଭାରେ ରମ୍ଭା ଅପ୍‌ସରା ଥାଏ, ସେହିପରି ଏ ସଭାରେ ତଳ ଉପର ହୋଇ କଦଳୀଗଛ ସବୁ ପୋତା ଯାଇଅଛି ।

୫ମ ପଦ—ଛାମୁଣ୍ଡିଅକୁ ଚାହିଁ ଚିତ୍ତରେ ଭ୍ରମ ଜାତ ହେଲା, ମନେ ହେଲା ଦେବସଭା ଆସି ଏଠାରେ କେଡ଼ି ରହିଲା କି ?

୬ଷ୍ଠ ପଦ—ଦେବସଭାରେ ଦେବତାମାନେ ଅନବରତ ବିନୟୀ ବା ନମ୍ର ହୋଇଥାନ୍ତି, ସେହିପରି ଏ ଛାୟାମଣ୍ଡପରେ ଫୁଲମାଳ ସବୁ ସର୍ବଦା 'ବିନୟ' ହୋଇ ଝୁଲୁଅଛି । ସେ ଛାୟାମଣ୍ଡପ କଳ୍ପଦ୍ରୁମ ସମ ବୋଧ ହେଲା । କଳ୍ପଦ୍ରୁମ ବାଞ୍ଛିତ ଫଳରେ ଯେପରି ପୂର୍ଣ୍ଣ ହୋଇଥାଏ, ଏ ମଣ୍ଡପ ସେହିପରି ଗୁଆ, ନଡ଼ିଆ ଆଦି ଫଳରେ ସମ୍ପୂର୍ଣ୍ଣ ହୋଇଅଛି ।

ବରଣ ବରୁଣାଳୟ ପ୍ରାୟ ବେଷ୍ଟନାରେ ।
ବିରାଜ ରାଜ ମକର ଗଙ୍ଗା ଯମୁନାରେ ଯେ ।୭।
ବେନି ନରେଶ୍ୱରଙ୍କର ମଣ୍ଡିତ ନଗରେ ।
ବହାଇଲେ ଗନ୍ଧସାର ମହା ଉତ୍ସବରେ ଯେ ।୮।
ବ୍ରାହ୍ମଣୀ ସାତ ସଅଳଙ୍କାର କରି ତହୁଁ ।
ବସ୍ତ୍ର ପାଟେ ଲଲାଟେ ସିନ୍ଦୂର ଟିକା ଦେଇ ଯେ ।୯।
ବଯୋଚିଲେ ଚନ୍ଦ୍ର ଘାଗ୍ୟମାନ କୁମ୍ଭରାଶି ।
ବନ୍ଧୁରତାରେ ଧନିଷ୍ଠା ହୋଇ ପ୍ରଶଂସି ଯେ ।୧୦।

---

୭ମ ପଦ—ବରଣ—ପ୍ରାଚୀର । ବରୁଣାଳୟ—ସମୁଦ୍ର । ରାଜ—ଶୋଭମାନ୍ତ ।

୮ମ ପଦ—ନଗର—ପୁର । ଗନ୍ଧସାର—ଚନ୍ଦନ, କର୍ପୂର ସୁଗନ୍ଧି ଦ୍ରବ୍ୟ ।

୯ମ ପଦ—ସଅଳଂକାର—ଅଳଙ୍କାରଭୂଷିତ ।

୧୦ମ ପଦ—ଚନ୍ଦ୍ର—ସୁବର୍ଣ୍ଣ, ଚନ୍ଦ୍ର । କୁମ୍ଭରାଶି—ସ୍ୱର୍ଣ୍ଣଘଟସମୂହ, ରାଶି ବିଶେଷ । ଧନିଷ୍ଠା—ଧନିଷ୍ଠା ନକ୍ଷତ୍ର ।

---

୭ମ ପଦ—ସମୁଦ୍ର ପୃଥିବୀକୁ ବେଷ୍ଟନ କରି ରହିଥିବା ପ୍ରାଚୀର ଏ ସବୁକୁ ବେଢ଼ି ରହିଅଛି । ସମୁଦ୍ରରେ ଗଙ୍ଗା ଯମୁନା ନଦୀ ପତିତ ହୋଇ ଅଛନ୍ତି ଓ ମକର, ମତ୍ସ୍ୟ ପ୍ରଭୃତି ଜଳଚର ପ୍ରାଣୀ ତହିଁରେ ବିହାର କରନ୍ତି, ସେହିପରି ପ୍ରାଚୀରରେ ଗଙ୍ଗା ଯମୁନା ଓ ମତ୍ସ୍ୟ ମକର ଚିତ୍ରକର ଚିତ୍ର ଅଙ୍କିତ ହୋଇଅଛି ।

୮ମ ପଦ—ଦଶରଥ ଓ ଜନକଙ୍କର ମଣ୍ଡିତ ପୁରରେ ପରିଚାରକ-ମାନେ ମହୋତ୍ସବରେ ଗନ୍ଧସାର ବିଧାନଙ୍କୁ ବହିଲେ ( ଅନେକ ସୁଗନ୍ଧ ଗନ୍ଧଚନ୍ଦନାଦି ଦ୍ୱାରା ପୁରକୁ ସୁବାସିତ କରାଇଲେ ) ।

୯ମ ଓ ୧୦ମ ପଦ—ତତ୍ପରେ ସାତଜଣ ବ୍ରାହ୍ମଣ କନ୍ୟାକୁ ଅଳଙ୍କାର ମଣ୍ଡିତ କରି ଓ ପଟ୍ଟବସ୍ତ୍ର ପିନ୍ଧାଇ ଲଲାଟରେ ସିନ୍ଦୂର ଟିକା ଭୂଷିତ କରାଇ, ସେମାନଙ୍କ ହାତରେ ସ୍ୱର୍ଣ୍ଣ ନିର୍ମିତ ଘଟସବୁ ଦେଲେ । ଯେପରି ଚନ୍ଦ୍ର କୁମ୍ଭ ରାଶିରେ ଯୁକ୍ତ ହୋଇ ଧନିଷ୍ଠା ନକ୍ଷତ୍ର ସହିତ ବନ୍ଧୁତା କଲେ ନିଜକୁ ପ୍ରଶଂସିତ ମନେ କରେ, ସେହିପରି ସେ ସମୟରେ କନ୍ୟା ଲୋକମାନେ ଉତ୍ଫୁଲ୍ଲ ହୋଇ ନିଜକୁ ଭାଗ୍ୟବନ୍ତ ବୋଲି ପ୍ରଶଂସା କଲେ ।

ବିଷମେଷୁ ସୂର୍ପଯୁକ୍ତ ନାରୀବେଳତରେ ।
ଚରହୁଣୀ ପ୍ରାପ୍ତ ଦିବାକାର୍ତ୍ତି-ନାରୀ ଧରେ ଯେ । ୧୧ ।
ବିଚ୍ଛୁରିତ ଦୀପେ ଯେ ସରିତଈଶ ସରି ।
ବେଶ୍ୟାକାର ସଙ୍ଗୀତମନ୍ଦିର ଶୋଭା ଧରି ଯେ । ୧୨ ।
ବୀଣା କଣ୍ଠ ପୟୋଧର ମର୍ଦ୍ଦଳ ସଜାତ ।
ବିସ୍ତାର ନୃତ୍ୟ ନର୍ତ୍ତକୀ ନେତ୍ର ଖ୍ୟାତ ଗୀତ ଯେ । ୧୩ ।
ବାହାରୁଁ ଯେ ମୁଖର-ରସନା ସ୍ୱନ କଲେ ।
ବିସ୍ତରେ ଅନ୍ତଃପୁରସ୍ଥା ହୁଳିରବ ମଙ୍ଗଳେ ଯେ । ୧୪ ।

---

୧୧ଶ ପଦ—ବିଷମେଷୁ—କନ୍ଦର୍ପ । ସୂର୍ପ—କୁସ । ଦିବା କାର୍ତ୍ତିନାରୀ—ଭଣ୍ଡାରୁଣୀ ।

୧୨ଶ ପଦ—ସରିତଈଶ—ସମୁଦ୍ର । କେଶ୍ୟାକାର—ବେଶ୍ୟାସମୂହ ।

୧୩ଶ ପଦ—ପୟୋଧର—ସ୍ତନ ।

୧୪ଶ ପଦ—ମୁଖର—ଶବ୍ଦାୟମାନ । ରସନା—କଙ୍କିଣୀ । ମୁଖର ରସନା—ହୁଳହୁଳି ଶବ୍ଦ ।

---

୧୧ଶ ପଦ—କନ୍ଦର୍ପ ଯେପରି ରତିଦେବୀ ସହିତ ଯୁକ୍ତ ଥାଏ, ସେହିପରି କୁସ ନଗର ଓ କାନ୍ତିରେ ଏ ଦୁଇ ପଦାର୍ଥରେ ଯୁକ୍ତ ହୋଇଅଛି । ଚରହୁଣୀ ନାରୀ ଯେପରି କାମ ବିକାରକୁ ଧରିଥାଏ, ଭଣ୍ଡାରୁଣୀ ସେହିପରି ଏ କୁଳକୁ ଧରିଅଛି ।

୧୨ଶ ପଦ—ପୁଣି ସେ କୁଶ ସମୁଦ୍ର ପ୍ରାପ୍ତ ହୋଇଅଛି । ସମୁଦ୍ର ଯେପରି ଦ୍ୱୀପମାନଙ୍କରେ ଶୋଭିତ ହୋଇଥାଏ, କୁଶ ସେହିପରି ପ୍ରଦୀପମାନ ଜଳିବା ଦ୍ୱାରା ଶୋଭା ପାଉଅଛି । ବେଶ୍ୟାମାନେ ସଙ୍ଗୀତ ଗୃହର ଶୋଭାକୁ ଧାରଣ କରି ଅଛନ୍ତି ।

୧୩ଶ ପଦ—ସଙ୍ଗୀତ ଗୃହ ବୀଣା ଆଉ ମର୍ଦ୍ଦଳରେ ମଣ୍ଡିତ ହୋଇଥାଏ ତଦ୍ରୂପ ଏହି ବେଶ୍ୟାଗଣ ବୀଣା ତୁଲ୍ୟ କଣ୍ଠ ସ୍ୱରରେ ଓ ମର୍ଦ୍ଦଳ ତୁଲ୍ୟ ସ୍ତନ ଯୁଗଳରେ ମଣ୍ଡିତ ହୋଇ ଅଛନ୍ତି । ପୁଣି ସଙ୍ଗୀତ ଗୃହରେ ନର୍ତ୍ତକୀସବୁ ନୃତ୍ୟ କରନ୍ତି । ଏଠାରେ ବେଶ୍ୟାମାନଙ୍କର ଭ୍ରୂଭଙ୍ଗୀ ନେତ୍ର ଚାଳନା ସହିତ ନୃତ୍ୟ ଓ ଗୀତ ଖ୍ୟାତ ଲଭିଅଛି ।

୧୪ଶ ପଦ—ନର୍ତ୍ତକୀମାନେ ସଙ୍ଗୀତଶାଳାରୁ ବାହାରିବା ବେଳେ ଯେପରି ସେମାନଙ୍କର କଟୀସ୍ଥ କିଙ୍କିଣୀର ସ୍ୱନ ଶୁଣାଯାଏ, ସେହିପରି ଏମାନେ ଅନ୍ତଃପୁରରୁ ବାହାରିବା ବେଳେ ସ୍ତ୍ରୀମାନେ ମଙ୍ଗଳ ସୂଚକ ହୁଳହୁଳି ଶବ୍ଦ କଲେ ।

ଦ୍ୱାସ୍ଥସନ ନଳ ପ୍ରାପ୍ତ ନିଷେଧ ଅଧିପ ।
ବାଜିବାରେ ସଜ୍ଜ ବାଦ୍ୟ ସାଦୀଙ୍କ ସ୍ୱରୂପ ଯେ । ୧୫ ।
ବନ୍ଧୁ ସ୍ୱଏ ଗୃହୁଁ ଛନ୍ତି ଘଣ୍ଟିମୁଖ ଚଳ ।
ଶିଖିସ୍ପୃହଭବନଜନ୍ୟା ଶମ୍ବରକୁ ଧରି ଯେ । ୧୬ ।
ବନ୍ଦିଲେ ଦେବୀ ଦେବଙ୍କୁ ପରସ୍ପରେ ଯାଇ ।
ବର କନ୍ୟା ଗନ୍ଧପିଲେ ଗନ୍ଧପୁଷ୍ପ ଦେଇ ଯେ ।୧୭ ।
କପୋତ ନିଦ୍ରାରେ ଭୃତ୍ୟେ ଜଣା ଥାଇଁ ଯାମେ ।
ଭୁଙ୍କ ବନ୍ଧ ପରଭୃତ ପସ୍କୃତ ନାମେ ଯେ । ୧୮ ।

---

୧୫ଶ ପଦ—ଦ୍ୱାସ୍ଥସନ—ଦ୍ୱାସ୍ଥ । ବାଜିବାରେ—ବାଜିବାଜୀ, ଅଶ୍ୱମାନଙ୍କରେ । ସଜ୍ଜ—ସଜ୍ଜିତ, ଶୋଭା ପାଇ । ସାଦୀ—ଅଶ୍ୱାରୋହୀ ।

୧୮ଶ ପଦ—ଯାମ—ପ୍ରହର । ପରଭୃତ—କୋକିଳ ।

---

୧୫ଶ ପଦ—ସେ ସମୟରେ ଦ୍ୱାରପାଳମାନେ ନଳରାଜାଙ୍କ ପ୍ରାପ୍ତ ହେଲେ । ନଳରାଜା ନିଷଧ ଦେଶର ଅଧିପତି, ସେହିପରି ଦ୍ୱାରପାଳମାନେ ନିଷେଧ ଅର୍ଥାତ୍ ବାରଣ କରିବାରେ ଅଧିପତି ଅଟନ୍ତି । ବାଦ୍ୟସମୂହ ବାଜିବାର ତାହା ଅଶ୍ୱାରୋହୀଙ୍କ ସ୍ୱରୂପ ହେଲା । ଅଶ୍ୱାରୋହୀମାନେ 'ବାଜୀବାରେ' ଅଶ୍ୱ ସମୂହରେ ଶୋଭିତ ହୋଇଥାନ୍ତି—ଏ ବାଜିବାରୁ ଶୋଭିତ ।

୧୬ଶ ପଦ—ମୃଗମାନେ ବ୍ୟାଧର ଘଣ୍ଟି ଶବ୍ଦ ଶୁଣି ଗୃହଁ ଲଟନ୍ତି ବନ୍ଧୁ ସ୍ତ୍ରୀମାନେ ଏ କନ୍ୟାମାନଙ୍କୁ ହୁଳହୁଳି ଶବ୍ଦ ଶୁଣି ଗୃହୁଁ ଅଛନ୍ତି । ବନରେ ବ୍ୟାଧମାନେ ଅତି ଶୋଭାଯୁକ୍ତ ବନଜାତ ସମ୍ବର, ମୃଗ ଧରିଲାପରି ଏଠାରେ ରମଣୀମାନେ ପ୍ରଧାନ ପ୍ରଧାନ ଘରୁ ଜଳ ସଂଗ୍ରହ କରି ଧଇଲେ, ( କାକୁଅ ପାଣି ଗ୍ରାମର କେତେକ ଘରୁ ସଂଗ୍ରହ କରାଯାଇ ଥାଏ ।

୧୭ଶ ପଦ—ତାହାପରେ ( ଜଳ ତୋଳା ସରିଲାପରେ ) ଜଣେ ଜଣେ ଯାଇ 'ଦେବଦେବୀମାନଙ୍କୁ ପୂଜା କଲେ ଓ ବର କନ୍ୟାଙ୍କୁ ଗନ୍ଧପୁଷ୍ପ ଦେଇ ମଙ୍ଗୁଳିଲେ ।

୧୮ଶ ପଦ—ଭୃତ୍ୟମାନେ ରାତ୍ରି ପ୍ରହରେ ଥାଇଁ ନିଦ୍ରା ଦେଇ ଉଠି କୋକିଳର ପ୍ରାକୃତ ନାମ କୁହୁକୁ ବନ୍ଦିଲେ । ( ବରକନ୍ୟାଙ୍କୁ କୋଇଲି ଲୁଚ କରାଇଲେ ) ।

ନିର୍ଜନ ସ୍ଥାନେ ପୂଜାଇ ଲବଣରୁମସ୍ତି ।
ବ୍ରତାଗୃହସ୍ତି ପରି ଭଣ ଗୃହ ସୁକୁମାରୀ ଯେ । ୧୯ ।
ବେଗେ ଯାଉ ଦିବସ ଏ ବଶ ବର କନ୍ୟା ।
ବିରକ୍ତ ହେଉଁ ଏ ରକ୍ତବନ୍ତେ ଭାନୁ ଧନ୍ୟା ଯେ । ୨୦ ।
ବ୍ୟାସକ୍ତ ଅନୁରାଗରେ ସବିତା ଏକାଳେ ।
ବଳିପୁଷ୍ଟ ବୋଲି ନିଜ ନିବାସକୁ ଚଳେ ଯେ । ୨୧ ।
ବୁଡ଼ାଇ କି ସିନ୍ଧୁଜଳେ ତାମ୍ରପାତ୍ର ରବି ।
ବଳି ସୀତା ରାମର ନିକଟ ଧାତା ଭାବି ଯେ । ୨୨ ।
ବାରିଧିଜ ଉଦେ ଅଙ୍କ ଦୂର୍ବାଦଳ ଭରି ।
ବନ୍ଦାଇବ ରୂପାସ୍ଥାଳୀ ପ୍ରାଚୀନାରୀ ଧରି ଯେ । ୨୩ ।

---

୧୯ଶ ପଦ :—ଲବଣରୁମସ୍ତି—ଲୁଣଚଉଁରି । ବ୍ରତାଗୃହସ୍ତି—ବ୍ରତାବଲମ୍ବିନୀ ।

୨୧ଶ ପଦ :—ସବିତା—ସୂର୍ଯ୍ୟ । ବଳିପୁଷ୍ଟ—କୁଆ ।

୨୩ଶ ପଦ :—ବାରିଧିଜ—ଚନ୍ଦ୍ର । ଅଙ୍କ—କଳଙ୍କ । ପ୍ରାଚୀନାରୀ—ପୂର୍ବଦିଗରୂପ ରମଣୀ ।

---

୧୯ଶ ପଦ—ତଦନନ୍ତର ସୀତା ପ୍ରଭୃତି ଗୃହ କୁମାରୀଙ୍କୁ ବ୍ରତାଗୃହିଣୀ ପରି ନିର୍ଜନ ସ୍ଥାନରେ ଲବଣଚଉଁରି ପୂଜାଇଲେ ।

୨୦ଶ ପଦ—'ଶୀଘ୍ର ଦିନ ଶେଷ ହେଉ' ଏହି କଥାରେ ବଶ ହୋଇ ବର କନ୍ୟା ବିରକ୍ତି ପ୍ରକାଶ କରନ୍ତେ, ସୂର୍ଯ୍ୟ ତାହା ଜାଣିପାରି ଅସ୍ତ ହୋଇଗଲେ । ତେଣୁ ସେ ବର କନ୍ୟା ପ୍ରଶଂସ୍ୟା ଅଟନ୍ତି । ( ସୂର୍ଯ୍ୟ ମଧ୍ୟ ତାଙ୍କ ମନ କଥା ଜାଣି ଶୀଘ୍ର ଅସ୍ତ ହୋଇଗଲେ । )

୨୧ଶ ପଦ—ସୂର୍ଯ୍ୟ ଅନୁରାଗରେ ରକ୍ତବର୍ଣ୍ଣ ପ୍ରଭା ସ୍ନେହ ପ୍ରକାଶ କରିବାର ଦେଖି କାକଗଣ 'ସ୍ନେହରେ ବିଶେଷରେ ଅସକ୍ତ ହୁଅ' ଏହା ସମସ୍ତଙ୍କୁ କହି ନିଜ ନିଜ ବସାକୁ ଉଡ଼ିଗଲେ ।

୨୨ଶ ପଦ—ସୂର୍ଯ୍ୟ ବୁଡ଼ିଯିବାର ଦେଖି ବୋଧହେଲା, 'ସୀତା ରାମଙ୍କ ନିକଟ ହେଉ' ଏହା ଭାବି ବିଧାତା ରବିରୂପ ତାମ୍ରପାତ୍ରକୁ ସମୁଦ୍ର ଜଳରେ ବୁଡ଼ାଇଲେ କି ?

୨୩ଶ ପଦ—ସେହି ସମୟରେ ଚନ୍ଦ୍ର ଉଦିତ ହେଲେ । ତାହା ଦେଖି ମନେହେଲା, ପୂର୍ବଦିଗରୂପା ସ୍ତ୍ରୀ କଳଙ୍କରୂପ ଦୂର୍ବାଦଳକୁ ରଖି ରାମ ସୀତାଙ୍କୁ ବନ୍ଦାଇବ ବୋଲି ରୂପା ଥାଳି ଧାରଣ କରିଅଛି କି ? ( ଚନ୍ଦ୍ର ରୂପାଥାଳି ଓ ତନ୍ମଧ୍ୟସ୍ଥ କଳଙ୍କ ଦୂର୍ବାଦଳ ସହିତ ଉପମିତ । )

ତଉତେ ଉତ୍ସବ ହେଲା ଦେନି ସିଂହଦ୍ୱାରେ ।
ବର୍ଷାଋତୁ ମୂର୍ତ୍ତିମନ୍ତେ କିବା ଅନୁସରେ ଯେ । ୨୪ ।
ବୃନ୍ଦ ବୃନ୍ଦ ଦିଶିଲେ ଜଳଦ ଦନ୍ତିବର ।
ବ୍ୟୋମ-ପୂର୍ଣ୍ଣ ସ୍ତନିତ ପଟହ ନାଦ ତାର ଯେ । ୨୫ ।
ବିଗଳିତ ଜଳଧାର ପରି ଦାନଜଳ ।
ବଜ୍ରନିର୍ଘୋଷ ନାଗରା ବାଦନ ଚହଳ ଯେ । ୨୬ ।
ବ୍ୟୂହ ଭୟାତୁର ଅଶ୍ୱ ଚଞ୍ଚଳ ହୁଅନ୍ତି ।
ବୈଶମ୍ପାୟନଙ୍କ ଶାନ୍ତି ମାଗଧଙ୍କ ସ୍ତୁତି ଯେ । ୨୭ ।

---

୨୫ଶ ପଦ—ଜଳଦ—ମେଘ । ବ୍ୟୋମ—ଆକାଶ । ସ୍ତନିତ—ମେଘ ଗର୍ଜ୍ଜନ । ପଟହ—ବାଦ୍ୟ ବିଶେଷ ।

୨୭ଶ ପଦ—ବ୍ୟୂହ—ସମୂହ । ମାଗଧ—ସ୍ତୁତି ପାଠକ ବା ଭାଟ ।

---

୨୪ଶ ପଦ—ଦଶରଥ ଓ ଜନକଙ୍କ ଦ୍ୱାରରେ ଆଡ଼ମ୍ବର ସହିତ ଉତ୍ସବ ହେଲା । ତାହା ଦେଖି ବୋଧ ହେଲା, ବର୍ଷାଋତୁ ମୂର୍ତ୍ତିମନ୍ତ ହୋଇ ସେଠାରେ ଉପସ୍ଥ ହେଲା କି ?

୨୫ଶ ପଦ—ଯୂଥ ଯୂଥ ହୋଇ ଯାଉଥିବା ଶ୍ରେଷ୍ଠ ହସ୍ତୀସବୁ ମେଘମାଳା ପରି ଦେଖାଗଲେ । ମେଘ ଗର୍ଜ୍ଜନ ତୁଲ୍ୟ ପଟହ ପ୍ରଭୃତି ବାଦ୍ୟନାଦରେ ଆକାଶ ପୂର୍ଣ୍ଣ ହେଲା ।

୨୬ଶ ପଦ—ହସ୍ତୀମାନଙ୍କର ଗଣ୍ଡସ୍ଥଳରୁ ଝରୁଥିବା ମଦବାରିସବୁ ତଥା ବିବାହ ଯୋଗୁ ଦାନ ଦେବାପାଇଁ ବ୍ରାହ୍ମଣମାନଙ୍କ ହାତକୁ ଟେକି ଦେଉଥିବା ଜଳସବୁ ବର୍ଷାଧାର ପରି ଦେଖାଗଲା ଏବଂ ବାଜୁଥିବା ନାଗରାର ଚହଳ ବଜ୍ରନିର୍ଘୋଷ ପରି ବୋଧ ହେଲା ।

୨୭ଶ ପଦ—ବଜ୍ର ନିର୍ଘୋଷରେ ଭୟାତୁର ଘୋଡ଼ାମାନେ ଚଞ୍ଚଳ ହେଲା ପରି, ବାଦ୍ୟର ଅତ୍ୟୁଚ୍ଚ ନାଦରେ ଘୋଟକ ସବୁ ଚଞ୍ଚଳ ହେଲେ । ବଜ୍ର ଭୟରୁ ରକ୍ଷା ପାଇବା ପାଇଁ ଲୋକେ ବୈଶମ୍ପାୟନଙ୍କ ଶାନ୍ତି ଜପ ପରି ଏଠାରେ ଭାଟମାନଙ୍କର ସ୍ତୁତି ପାଠ ଉଚ୍ଚାରିତ ହେଲା ।

ବଳାହକ ନଳୀଙ୍କ ଇନ୍ଦ୍ରକୋଦଣ୍ଡ ହାବେଳି ।
ବହ୍ନିବାଣ ଜାତ କି ଖଦ୍ୟୋତ ଉଦେ ହେଲା ଯେ ।୨୮।
ଧ୍ୱଜାଗ୍ର ଚଞ୍ଚଳ ପୀତ-ଶବଳ ଦୁକୂଳ ।
ଝଞ୍ଜାଭ୍ରମେ ଗୃଧ୍ରକ ପଙ୍କ୍ତି ଚ୍ୟୁତ ତୋରଣେ ମେଳ ।୨୯।
ବକ ଶଙ୍ଖ ଦାତ୍ୟୁହ ମଧୁସ୍ୱୀ କଙ୍କ ଭେରୀ ।
ବର୍ଷାଭୂ ଡମରୁ ନାଦେ ଦଣ୍ଡଦଣ୍ଡ ପୂରେ ଯେ ।୩୦।
ବ୍ୟାଖ୍ୟାନ ଶାମ୍ବୁକ ନାଦ ଦାସୀ ହୁଳହୁଳି ।
ବଢିଲା ଇନ୍ଦ୍ରଗୋପ ବେଶ୍ୟା ପାଟଶ୍ରେଣି ଯେ ।୩୧।

---

୨୮ଶ ପଦ—ବଳାହକ—ସ୍ତୂପମେଘ । କୋଦଣ୍ଡ—ଧନୁ । ଇନ୍ଦ୍ରକୋଦଣ୍ଡ—ଇନ୍ଦ୍ରଧନୁ । ବହ୍ନିବାଣ—ଅଗ୍ନିବାଣ । ଖଦ୍ୟୋତ—ଜୁଳୁଜୁଳା ପୋକ ।
୩୦ଶ ପଦ—ଦାତ୍ୟୁହ—ଡାହୁକ । ବର୍ଷାଭୂ—ଭେକ ।
୩୧ଶ ପଦ—ଇନ୍ଦ୍ରଗୋପ—ସାଧବ ବୋହୂ ବା ଲାଲ ବର୍ଣ୍ଣ କୀଟ ବିଶେଷ ।

---

୨୮ଶ ପଦ—ସ୍ତୂପ ମେଘରୁ ଇନ୍ଦ୍ରଧନୁ ଜାତ ହେଲାପରି ନଳୀମାନଙ୍କରୁ ହାବେଳୀ ବାଣ ପ୍ରକାଶ ପାଇଲା । (ଗାଢ଼ ମେଘ କୃଷ୍ଣ ବର୍ଣ୍ଣ ଓ ଲୁହାନଳୀ କୃଷ୍ଣ ବର୍ଣ୍ଣ ) । ସେହି ହାବେଳୀରୁ ଜାତ ଅଗ୍ନିକଣା ସବୁ ଜୁଳୁଜୁଳା ପୋକପରି ସବୁ ଜଗତ୍ତୁ ଉଜ୍ଜ୍ୱଳ କଲେ । । (ସେହି ବାଣ ଛୁଟିବାରୁ ସବୁଆଡ଼ ଉଜ୍ଜ୍ୱଳ ଦେଖାଗଲା ।
୨୯ଶ ପଦ— ଧ୍ୱଜାଗ୍ରର ପତାକା ସବୁ ପବନ ଯୋଗେ ଉଡୁଥିବାରୁ ଝଞ୍ଜାର ଭ୍ରମ ପ୍ରାୟ ଦେଖାଗଲା । ଅମ୍ବ ପରିର ତୋରଣ ଗୃଧ୍ରକ ପକ୍ଷୀ ଏଣେ ତେଣେ ଉଡ଼ିଲା ପରି ଇତସ୍ତତଃ ଦୋହଲିବାକୁ ଲାଗିଲା ।
୩୦ଶ ପଦ—ଶଙ୍ଖରୂପ ବକ, ମଧୁସ୍ୱୀ ରୂପ ଡାହୁକ, ଭେରୀରୂପ କଙ୍କପକ୍ଷୀ, ଡମରୁ ରୂପ ଭେକଙ୍କର ନାଦରେ ଦଣ୍ଡଦଣ୍ଡ ପୂରିଗଲା । (ବର୍ଷାଦିନେ ବକ, ଡାହୁକ, କଙ୍କ ଓ ଭେକଙ୍କ ଶବ୍ଦରେ ଦଣ୍ଡଦଣ୍ଡ ପୂରି ଉଠେ, ସେହିପରି ଏଠାରେ ଶଙ୍ଖ, ମଧୁସ୍ୱୀ, ଭେରୀ ଓ ଡମରୁ ନାଦରେ ଦଣ୍ଡଦଣ୍ଡ ପୂରିଉଠିଲା ।)
୩୧ଶ ପଦ—ଦାସୀମାନଙ୍କର ହୁଳହୁଳି ନାଦ ଶାମ୍ବୁକର ନାଦ ପରି ଶୁଣାଗଲା ଓ ନୃତ୍ୟଲୀଳା କରୁଥିବା ବେଶ୍ୟାମାନଙ୍କର ପାଟ କାନିଲା ସାଧବବୋହୂ ପୋକପରି ଦେଖାଗଲା । (ବର୍ଷାଦିନେ ଶାମ୍ବୁକା ନାଦ ଶୁଣାଯାଏ ଓ ବଢ଼ନ୍ତ ଗାଢ ଲାଲବର୍ଣ୍ଣ ସାଧବ ବୋହୂ ପୋକ ଦେଖାଯାନ୍ତି । ସେହିପରି ଏଠାରେ ହୁଳହୁଳି ଶବ୍ଦ ଶୁଣାଗଲା ଓ ନୃତ୍ୟକାରିଣୀମାନଙ୍କର ଲାଲବର୍ଣ୍ଣର କାନିଲା ସାଧବବୋହୂ ପୋକ ପରି ପ୍ରତୀୟମାନ ହେଲା ) ।

ବଳଦ ଶିଳୀନ୍ଧ୍ର ଛଦ ସଦୃଶେ ଦିଶିଲେ ।
ବାଣାଦି ଜାଇ ଯୂଇ ତ ସତ ପୁଷ୍ପିଗଲେ ଯେ । ୩୨ ।
ବରହଣ ନର୍ତ୍ତକ ନର୍ତ୍ତନ ପ୍ରକଟିତ ।
ବ୍ୟାପେ ଦୁର୍ଦ୍ଦିନ କୁହୁକ ଜାଲକରେ ସତ ଯେ । ୩୩ ।
ବର୍ଣ୍ଣୋପଳ ପାତ ଦାତା ରଜତ ପ୍ରଦାନ ।
ବାହାର ପୁର-ଶିଖରୁ ହେଲେ ଝର-ସୈନ୍ୟ ଯେ । ୩୪ ।
ବବର୍ତ୍ତନ ରାଜମାର୍ଗ ନଦୀ ହେଲା ତହିଁ ।
ବଭଙ୍ଗ ଉଷ୍ଣୀଷ ଡିଣ୍ଡୀରମାନ ଯହିଁ ଯେ । ୩୫ ।

---

୩୨ଶ ପଦ—ବଳଦ—ଶୁକ୍ଳବର୍ଣ୍ଣ । ଶିଳୀନ୍ଧ୍ର—କଦଳୀ ।

୩୩ଶ ପଦ—ବରହଣ ( ବର୍ହଣ )—ମୟୂରସମୂହ । ଦୁର୍ଦ୍ଦିନ—ମେଘ ଘୋଡ଼ାଇଥିବା ଦିନ । ଜାଲକ—ଯେ କୁହୁକ ଦେଖାଏ ।

୩୪ଶ ପଦ- ବର୍ଣ୍ଣୋପଳ—କୁଆପଥର ।

---

୩୨ଶ ପଦ—ଶୁକ୍ଳବର୍ଣ୍ଣ ଛତସବୁ କଦଳୀ ପୁଷ୍ପ ପ୍ରାୟ ଦିଶିଲେ । ବାଣ ସବୁ ଫୁଟିବାରୁ ଜାଇ, ଯୂଇ ଫୁଲ ଫୁଟିଲା ପ୍ରାୟ ଦେଖାଗଲା । ( ବର୍ଷା ଦିନେ ନୀଳବାଣ ପ୍ରଭୃତି ଜାଇ ଯୂଇ ଫୁଲ ଫୁଟନ୍ତି ) ।

୩୩ଶ ପଦ—ନର୍ତ୍ତକମାନେ ମୟୂର ପ୍ରାୟ ହୋଇ ନୃତ୍ୟ କଲେ । ଇନ୍ଦ୍ରଜାଲକ ( କୁହୁକ କଲା ବ୍ୟକ୍ତି )ର କୁହୁକ ମେଘାଚ୍ଛନ୍ନ ଦିବସ ପ୍ରାୟ ଅସ୍ପଷ୍ଟ ଦେଖାଗଲା । (ବର୍ଷାଦିନେ ମୟୂରମାନେ ନୃତ୍ୟ କରନ୍ତି, ମେଘାଚ୍ଛନ୍ନ ହେତୁ ଦିନ ସ୍ପଷ୍ଟ ଦେଖାଯାଏ ନାହିଁ, ସେହିପରି ନର୍ତ୍ତକମାନେ ଏଠାରେ ନୃତ୍ୟ କରୁଛନ୍ତି ଏବଂ ଐନ୍ଦ୍ରଜାଲିକର କୁହୁକ କୌଶଳ ସ୍ପଷ୍ଟ କେହି ବୁଝି ପାରୁ ନାହାନ୍ତି) ।

୩୪ଶ ପଦ—ଦାତାମାନଙ୍କର ( ଦଶରଥ ଓ ଜନକ ଦୁଇରାଜାଙ୍କର ) ରୌପ୍ୟ ମୁଦ୍ରା କରକା ପାତ ପ୍ରାୟ ଦୃଶ୍ୟମାନ ହେଲା । ନଗର ରୂପ ପର୍ବତରୁ ସୈନ୍ୟମାନେ ଝରଣା ସଦୃଶ ବହିର୍ଗତ ହେଲେ ।

୩୫ଶ ପଦ—ସେ ସୈନ୍ୟରୂପ ଝରଣା ଦ୍ୱାରା ରାଜପଥରୂପ ନଦୀ ବର୍ତ୍ତିତ ହେଲା । ସୈନ୍ୟମାନଙ୍କର ମୁଣ୍ଡର ପାଗ ସବୁ ପାଣିର ଫେଣ ରୂପେ ପୂର୍ଣ୍ଣଭାବରେ ଦେଖାଗଲା ।

ବୀରତରୁ ପୁଷ୍ପବନ୍ତ ହୋଇ ସମଧୂପ ।
ବେଣୀକୂଳ ବେଳପାଶେ ସ୍ଥିତ ବୃକ୍ଷଦୀପ ଯେ । ୩୬ ।
ବୀଚ ବେଗରେ ଗମନ ଇଚ୍ଛିଲ ସେ ଶାନ୍ତି ।
ବନ୍ଧ ସିନ୍ଧୁରରେ ଏମନ୍ତ ବ୍ୟତସନ୍ତି ଯେ । ୩୭ ।
ବିଦେଶୀ ପାନ୍ଥପ୍ରଧାନ ଜନତରୀ ଜାନ ।
ବହନ ତେଜି କଲେ ସେ ସଦନ ଗମନ ଯେ । ୩୮ ।
ବେଶ୍ମସ୍ଥା ମୃଦୁସ୍ତନୀବ ନୀଳଅଁାଇ ଅନ୍ଧ ।
ବରିଲେ ବର ଶାଳକେ ଧରିଲେ ତେସନ ଯେ । ୩୯ ।

---

୩୬ଶ ପଦ—ବୀରତରୁ—ଅର୍ଜୁନ ବୃକ୍ଷ ।
୩୭ଶ ପଦ—ବୀଚ—ଲହରୀ ।
୩୮ଶ ପଦ—ପାନ୍ଥ—ପଥିକ । ତରୀ—ନୌକା ।
୩୯ଶ ପଦ—ବେଶ୍ମସ୍ଥା—ଗୃହବାସିନୀ ସ୍ତ୍ରୀ ।

---

୩୬ଶ ପଦ—ଜର୍ଦୀରନେ ଅର୍ଜୁନ ବୃକ୍ଷମାନେ ପୁଷ୍ପବନ୍ତ ଓ ଭ୍ରମରଯୁକ୍ତ ହୋଇ ନଦୀର ବେଳା କୂଳରେ ରହିଥାନ୍ତି; ସେହିପରି ଏ ଗଙ୍ଗଧାରା ରୂପ ନଦୀର ଉଭୟ ପାର୍ଶ୍ୱରେ ବୃକ୍ଷଦୀପମାନେ ଫୁଲ ଜ୍ୟୋତି ଶୋଭିତ ଓ ମଦୀପ ଶବ୍ଦରେ ଯୁକ୍ତ ହୋଇ ସ୍ଥିର ହୋଇ ଅଛନ୍ତି ।

୩୭ଶ ପଦ—ନଦୀ ତରଙ୍ଗଯୁକ୍ତ ହୋଇ ବେଗରେ ଯେମନ ବହୁ ବହୁ ବନ୍ଧ ପାଇଲେ ସ୍ଥିର ହୋଇଯାଏ । ସେହିପରି ଜନମାନେ ଅଳ୍ପ ବେଗରେ ଯାଇ ( ଶୋଭାଯାତ୍ରାରେ ଯାତ୍ରୀଗଣ ଧୀରେ ଧୀରେ ଯାନ୍ତି ) ସିଂହଦ୍ୱାର ରୂପ ବନ୍ଧକୁ ପାଇ ସ୍ଥିର ହୋଇ ରହିଲେ ।

୩୮ଶ ପଦ—ବିଦେଶୀ ପଥିକମାନେ ନଦୀ ପାର ହୋଇ ଅସିଲେ ନୌକା ଛାଡ଼ି ନିଜ ନିଜ ଗୃହକୁ ଗମନ କରନ୍ତି । ସେହିପରି ବିବାହ ଯାତ୍ରୀ ହୋଇଥିବା ଶ୍ରେଷ୍ଠଲୋକମାନେ ଶବାଦି ଦ୍ରବ୍ୟ ଯାନ ସବୁକୁ ତ୍ୟାଗ କରି ନିଜ ନିଜ ବାସ ଗୃହକୁ ଗଲେ ।

୩୯ଶ ପଦ—ତାହାପରେ ପୁର ମଧ୍ୟରେ ଥିବା ମୃଦୁସ୍ତନୀମାନେ ରାମଙ୍କୁ ଅନ୍ଧାଳୀରେ ବନ୍ଦାପନା କଲେ, ଶାଳକମାନେ ବରଙ୍କୁ କରଣ କରି ନେଲାବେଳେ ପ୍ରଧାନ କଂଚମାନଙ୍କୁ କରଣ କରି ନେଲା ପ୍ରାୟ ଦେଖାଗଲା ।

ବିବାହ ସ୍ଥାନରେ ବରବେଶେ ବସାଇଲେ ।
ବ୍ରହ୍ମା ଅଗ୍ରଜନ୍ମା ବେଦବେ ଯୁଗଯୁଗ ହେଲେ । ୪୦।
ବଶିଷ୍ଠ ଶତାନନ୍ଦ, କାଶ୍ୟପ କଉଶିକ ।
ବାମଦେବ ଗଉତମ, ଜାବାଳି ବାଲ୍ମୀକ ଯେ । ୪୧।
ବିଧି ବିରଚିତ ଶାଳେ ଧୁଆଇଲେ ପଦ ।
ବିହିତ ଗମନାଗଲେ ଚମସ୍ତ୍ରି ବିନୋଦ ଯେ । ୪୨ ।
ବିଦୃଷ୍ଟି ଅନ୍ତର ପାଟ କୁଳ୍ୟାଂଟି ବଣରେ ।
ବିଶ୍ୱବସୁ ପଦ୍ମିନୀର ହୋଏ ପରସ୍ପରେ ଯେ । ୪୩ ।
ବରଗିଲେ ସୂପକ୍ଷୋପବୀତ ଦୂତୀ ତନ୍ତି ।
ବିପ୍ରଲବ୍ଧା ହୋଇଥିଲେ ଆସିଲେ ବୋଧାଇ । ୪୪ ।

---

୪୦ଶ ପଦ—ନେବବେ—ପ୍ରତି ବେଶରେ । ଯୁଗ ଯୁଗ—ଦୁଇ ଦୁଇ ।

୪୩ଶ ପଦ—ବିଶ୍ୱବସୁ—ସୂର୍ଯ୍ୟ ।

୪୪ଶ ପଦ—ବିପ୍ରଲବ୍ଧା—ନାୟିକା ବିଶେଷ ଅର୍ଥାତ୍ ଅଠପ୍ରକାର ନାୟିକାଙ୍କ ମଧ୍ୟରୁ ଗୋଟିଏ, ସାଜନୀ ସ୍ତ୍ରୀ ।

---

୪୦ଶ ପଦ—ତଦନନ୍ତର ବରମାନଙ୍କୁ ବରବେଶରେ ବିବାହ ସ୍ଥାନରେ ବସାଇଲେ, ପ୍ରତି ବେଶରେ ବ୍ରହ୍ମା ଓ ଅଗ୍ରଜନ୍ମା ଏହିପରି ଦୁଇ ଦୁଇଜଣ ବରଣ ହେଲେ ।

୪୧ଶ ପଦ—ବଶିଷ୍ଠ—ଶତାନନ୍ଦ, କାଶ୍ୟପ—କୌଶିକ, ବାମଦେବ—ଗୌତମ, ଏବଂ ଜାବାଳି—ବାଲ୍ମୀକି ଏହିପରି ପ୍ରତିବେଶରେ ବ୍ରହ୍ମା ଓ ଅଗ୍ରଜନ୍ମା ହୋଇ ବସିଲେ ।

୪୨ଶ ପଦ—ପୁରୋହିତମାନେ ବିଧି ବିଧାନ ଅନୁସାରେ ଶାଳକମାନଙ୍କ ଦ୍ୱାରା ବରମାନଙ୍କର ପାଦକୁ ଧୁଆଇଲେ । ଚମତ୍ରିମୃଗ ପଠନରେ କ୍ରୀଡାରତ ହୋଇ ଆମୋଦ ଲଭିଲା ପରି, ସେ ବର କନ୍ୟାମାନେ ଲବଣ ଗୃମସ୍ତ୍ରି ବିଧାନରେ ଆନନ୍ଦ ଉପଭୋଗ କଲେ ।

୪୩ଶ ପଦ—ବର କନ୍ୟାଙ୍କର ଦେଖା ଦେଖି ନ ହେବା ପାଇଁ ପାଟର ଅନ୍ତର କାନ୍ଥ ମଧ୍ୟରେ ପକାଇଲେ । କୁହୁଡି ଯୋଗୁ ସୂର୍ଯ୍ୟ ଓ ପଦ୍ମଙ୍କର ଯେପରି ଦେଖାଦେଖି ହୋଇ ନ ପାରେ, ସେହିପରି ଅନ୍ତର ପାଟ ଯୋଗୁ ସୂର୍ଯ୍ୟବଂଶ ଜାତ ରାମଚନ୍ଦ୍ରଙ୍କର ଓ ପଦ୍ମିନୀ ସ୍ତ୍ରୀ ସୀତାଙ୍କର ଦେଖାଦେଖି ହୋଇ ପାରିଲା ନାହିଁ ।

୪୪ଶ ପଦ—ଉତ୍ତମ ଯଜ୍ଞସୂତ୍ର (ମନ୍ତ୍ରିତ ହୋଇଥିବା ଅଷ୍ଟାଙ୍ଗୁଳ ସୂତା) ଦୂତୀରୂପେ ବରମାନଙ୍କଠାରୁ ସଙ୍କେତ ନେଇ କନ୍ୟାମାନଙ୍କ ପାଖକୁ ପଠାଇବାରୁ କନ୍ୟାମାନେ ଆସିଲେ ସେ କନ୍ୟାମାନେ ବିପ୍ରଲବ୍ଧା ହୋଇଥିଲେ,

ବାଞ୍ଛାକଳ୍ପଦ୍ରୁମ ପାଶେ କାମ ଧେନୁ ମିଳେ ।
ବାମନେତ୍ରା ଦକ୍ଷିଣ କରାଇ ବସାଇଲେ । ୪୫ ।
ବସୁନ୍ଧରା ପ୍ରାୟେ ସେ ଅଙ୍ଗଣ ନବଖଣ୍ଡେ ।
ଛବିବସ୍ତ୍ର ତ ଅମ୍ବରେ ତାରାପନ୍ତି ଛୁଣ୍ଡେ ଯେ । ୪୬ ।
ବୃକ୍ଷସ୍ତମ୍ଭେ ରାଜେ ଫଳବନ୍ତ ହୋଇ ସେହି ।
ବାନ୍ଧବ-କୁମୁଦର ତ ପ୍ରଭା ସୁଧା ବହି ଯେ । ୪୭ ।

---

୪୬ଶ ପଦ—ବସୁନ୍ଧରା—ପୃଥିବୀ । ଅଙ୍ଗଣ—ଅଗଣା । ଅମ୍ବର—ଆକାଶ, ବସ୍ତ୍ର । ତାରାପନ୍ତି—ନକ୍ଷତ୍ର ସମୂହ, ମୁକ୍ତାପନ୍ତି ।

୪୭ଶ ପଦ—ସୁଧା—ଚୂନ, ଅମୃତ ।

---

ତାଙ୍କୁ ବୋଧ କରାଇ ଆଣିଲେ । (ଦୂତୀମାନେ ମାନିନୀ ନାୟିକାଙ୍କୁ ପ୍ରବୋଧ କରାଇ ସଙ୍କେତ ସ୍ଥଳକୁ ମଣାଇ ନେଲାପରେ, ଅଣ୍ଟାଡୁଆ ମୂଡ଼ା ଯିବାରୁ ସୀତା ପଦ୍ମଣ୍ଡ ମଣାଇ ବେଦୀ ଉପରକୁ ଆସିଲେ ) ।

୪୫ଶ ପଦ—ବାଞ୍ଛାପୂର୍ଣ୍ଣକାରୀ କଳ୍ପତରୁ ରୂପ ବରଙ୍କ ନିକଟରେ କାମଧେନୁ ରୂପୀ କନ୍ୟାମାନେ ଆସି ମିଳିତ ହେବାରୁ ପୁରୋହିତମାନେ ବାମ-ଲୋଚନା କନ୍ୟାମାନଙ୍କୁ ଦକ୍ଷିଣ ଭାଗରେ ବସାଇଲେ ।

୪୬ଶ ପଦ—ସେହି ଅଗଣା ବସୁନ୍ଧରା ପ୍ରାୟ ହୋଇଅଛି । ବସୁନ୍ଧରା ନବଖଣ୍ଡ ହେଲା ପ୍ରାୟ ଅଗଣା । ଗୃହ ଗୋଟି ବେଦୀ ୪।୫ ଗୋଟି ଅନ୍ତର ସ୍ଥାନ ଯୋଗେ ନବ ଖଣ୍ଡ ହୋଇଅଛି । ରାତ୍ରରେ ଆକାଶରେ ନକ୍ଷତ୍ର ଶ୍ରେଣୀ ଋଣ୍ଡ ହୋଇ ଶୋଭା ପାଇଲା ପରି, ସେ ଅଗଣାରେ ଟଣା ହୋଇଥିବା ଚନ୍ଦ୍ରାତପ ସୁନ୍ଦର ଦିଶୁଅଛି । ( ଏଠାରେ ଚନ୍ଦ୍ରାତପ ଆକାଶ ଓ ଚନ୍ଦ୍ରାତପରେ ଖଞ୍ଜିତ ହୋଇଥିବା ମଣିମୁକ୍ତାଦି ନକ୍ଷତ୍ର ସଦୃଶ ଉପମେୟ ) ।

୪୭ଶ ପଦ—ସେହି ଅଗଣାରେ ପୋତା ହୋଇଥିବା ସ୍ତମ୍ଭସବୁ ବୃକ୍ଷ ହେଲେ । ବୃକ୍ଷସବୁ ଫଳଦ୍ୱାରା ଶୋଭିତ ହେଲା ପ୍ରାୟ ସ୍ତମ୍ଭ ସବୁ ଗୁଆ ନଡ଼ିଆ ଇତ୍ୟାଦି ଫଳରେ ଭୂଷିତ ହୋଇ ଅଛନ୍ତି । ପୁଣି ସେ ସ୍ତମ୍ଭ ଚୂନ ଲିପ୍ତ ହୋଇ ଥିବାରୁ ଅମୃତରେ ଶୁଭ୍ର ପ୍ରଭା ଧାରଣ କରିଥିବା ଚନ୍ଦ୍ର ପ୍ରାୟ ଶୋଭାମାନ ହୁଏ ।

ବ୍ରହ୍ମା ଅନନକୁ ଯେ ହୋଇଲା ଅନରୂପ ।
ବେଦବାକ୍ୟ ପୂର୍ଣ୍ଣ ହୋଇ ଚତୁର ମଣ୍ଡପ ଯେ । ୪୮ ।
ବିପ୍ର ଲକ୍ଷିତ ହୋଇଲେ ତାଙ୍କ କର ସଙ୍ଗେ ।
କୁଶ ତାମ୍ର ସ୍ରୁବ ଶ୍ରୁବ ଶ୍ରୁଚ ଯୋଗେ ଯେ । ୪୯ ।
ବରକନ୍ୟାଙ୍କୁ ବୋଲନ୍ତି ଈଶ୍ୱର ପାର୍ବତୀ ।
ବାନ୍ଧିଲେ ସେ ମୁକୁଟ କବି କ ଏହୁ ମତ ଯେ । ୫୦ ।
ଅଦ୍ଭୁତ ପୁଣ ଏ ଗୋତ୍ରବଂଶବର ଖ୍ୟାତ ।
ଭଗୀଶ ଭୀତଦୃଷ୍ଟି ହୋଏ ତାପର ଉଦିତ ଯେ । ୫୧ ।
କୈଶାଳେଶ ଶୂଳ ଉରମ ଲପୁଛି ତା ଥିବ ।
ବାଳା ଡମ୍ବରୁ ନାଦକୁ ଶୁଣି ପଳାଇବ ଯେ । ୫୨ ।

---

୫୧ଶତ୍ ପଦ—ଗୋତ୍ର ବଂଶବର—'ଗୋତ୍ର' ପର୍ବତମାନଙ୍କ ମଧ୍ୟରେ ପ୍ରଧାନ ଅର୍ଥାତ୍ ହିମାଳୟ ପର୍ବତ, ପ୍ରଧାନ ସୂର୍ଯ୍ୟବଂଶ । ଭଗୀଶ—କ୍ଲେଶତ୍ ଭୟ ।

---

୪୮ଶ ପଦ—ସେହି ଗୃହଗୋଷ୍ଠି ମଣ୍ଡପ ବ୍ରହ୍ମାଙ୍କର ଗୃହ ମୁଖ ସହିତ ସମାନ ହୋଇ । ଚତୁରାନନ ବେଦରେ ପୂର୍ଣ୍ଣ ହେଲା ପରି ଏ ଗୃହ ମଣ୍ଡପ ବ୍ରାହ୍ମଣ ମୁଖ ନିଃସୃତ ବେଦ ବାକ୍ୟରେ ପୂର୍ଣ୍ଣ ହୋଇଅଛି ।

୪୯ଶତ୍ ପଦ—ସେହି ବ୍ରାହ୍ମଣଙ୍କ ହସ୍ତ ସହିତ ବିପ୍ରମାନେ (ବ୍ରହ୍ମା ଓ ଅଗ୍ନିମାନେ) ଲକ୍ଷିତ ହେଲେ । ବ୍ରହ୍ମାଙ୍କ ହସ୍ତରେ କୁଶ ମୁଷ୍ଟି, ତମ୍ବାପାତ୍ରୀ, ସ୍ରୁବ, ସ୍ରୁଚ ବିଦ୍ୟମାନ ଥିଲା ପ୍ରାୟ, ଏହି ବ୍ରାହ୍ମଣମାନଙ୍କ ହସ୍ତରେ କୁଶମୁଷ୍ଟି ତମ୍ବାପାତ୍ରୀ, ସ୍ରୁବ, ସ୍ରୁଚ ରହିଅଛି ।।

୫୦ଶତ୍ ପଦ—ବର କନ୍ୟାଙ୍କୁ ଈଶ୍ୱର-ପାର୍ବତୀ କହନ୍ତି (ଉମା ପାଶୁପତେ); ସେହି ହେତୁରୁ ସେମାନେ ବର କନ୍ୟାଙ୍କ ମସ୍ତକରେ ମୁକୁଟ ବାନ୍ଧିଲେ କି ?

୫୧ଶତ୍ ପଦ—ବିବାହ ସମୟରେ ଗୋତ୍ର ବଂଶ ପ୍ରବର କଥିତ ହେବା ବିଧି; ପୁଣି କନ୍ଦର୍ପ ପର୍ବତ ଶ୍ରେଷ୍ଠ ହିମାଳୟରେ ବାସ କରୁଥିବା ମହାଦେବଙ୍କୁ ଦେଖି ଭୀତ ହେଲା ପରି ସୂର୍ଯ୍ୟବଂଶରେ ଜାତ ବରମାନଙ୍କୁ ଦେଖି ବିଶେଷ ଭକରେ ଭୟ ପ୍ରାପ୍ତ ହେଲା ।

୫୨ଶତ୍ ପଦ—ସେହି କନ୍ଦର୍ପର କେଶୀ ଜଙ୍ଘରେ ଯୋଡା ହୋଇଥିବା ବାହୁଶାଳ ଦର୍ଶନରେ ମହାଦେବଙ୍କ ଶୂଳ ବୋଲି ଭ୍ରମ ଉପୁଜିଥିବ । ପୁଣି କନ୍ୟାମାନଙ୍କର ବାଳା ଶବ୍ଦରୁ ସେ ମହାଦେବଙ୍କ ଡମ୍ବରୁ ଶବ୍ଦ ବୋଲି ମନେକରି ବିଶ୍ଚୟ ପଳାଇ ଯିବ ।

ବୀତହୋତ୍ରେ ଲଜା ହୋମ କରୁ ଲଜ୍ଜାବଳ ।
ବଳରେ କହୁର କାହୁଁ ହୋଇବ ସମ୍ଭାଳ ଯେ । ୫୩ ।
ବନ୍ଧାଇଲେ ଦୁହିଙ୍କର କର ସେ କୋବିଦେ ।
ବାମା ପୁଂସ ଏକ କର ସେ ଦମ୍ପତି ପଦେ ଯେ । ୫୪ ।
ବନ୍ଧୁ ଦୁହିତାଏ ତହିଁ ପରବେଶ ହେଲେ ।
କପଟ ପାଶ ଫିଟିଲା ପାଇଁ ଫିଟାଇଲେ ଯେ । ୫୫ ।
ବାହାରିଲେ ପଣ୍ଡିଆଳ ଅଳଂକୃତ ହୋଇ ।
ବିଶ୍ୱତେଜୁ ରଣାରମ୍ଭେ କି ସେ ଶାନ୍ତି ପାଇ ଯେ । ୫୬ ।
ବସ୍ତ୍ରଟେକ ଅନ୍ତପୁରେ ଦ୍ୟୂତ ଖେଳାଇଲେ ।
ବଳବନ୍ତ ଅବଳା ଧରିପି ନପାରିଲେ ଯେ । ୫୭ ।

---

୫୩ଶତ ପଦ—ବୀତହୋତ୍ର—ଅଗ୍ନି । ଲଜା—ଲିଅ ।
୫୭ଶତ ପଦ—ବସ୍ତ୍ରଟେକ—କଉଡ଼ି ।

---

୫୩ଶତ ପଦ—ଅଗ୍ନିରେ ଲଜା ହୋମ କରିବାରୁ ( ବିବାହ ବେଳେ ଅଗ୍ନିରେ ଲିଅ ପୋଡ଼ାଯାଏ, ତାହାକୁ ଲଜା ହୋମ ବା ଲାଜା ହୋମ କହନ୍ତି) ଲଜ୍ଜାସବୁ କହୁଥିଲେ, "ଆମ୍ଭେ ଆଉ କେଉଁଠି ସମ୍ଭାଳି ହୋଇ ରହିବା ?"

୫୪ଶତ ପଦ—ବରଣ ହୋଇଥିବା ବ୍ରହ୍ମା ଓ ଅଗ୍ନି ବର କନ୍ୟା ଦୁହିଙ୍କର ହସ୍ତସବୁ ବାନ୍ଧିଲେ । (ହାତଗଣ୍ଠି ପକାଇଲେ ) । ତତ୍ପରେ ସେ ବର ଓ କନ୍ୟା ଦୁହିଙ୍କୁ ଦମ୍ପତି (ଜାୟା ଓ ପତି) ପଦରେ ଏକାଠି କରିଦେଲେ ।

୫୫ଶତ ପଦ—ତତ୍ପରେ ବ୍ରାହ୍ମଣ କନ୍ୟାମାନେ ସେଠାରେ ପ୍ରବେଶ ହେଲେ । କାମ କପଟରୁ ଯୁଗ ଫାଶ ଏବେ ଫିଟିଗଲା —ଏଥିପାଇଁ ସେ ହାତଗଣ୍ଠିକୁ ଫିଟାଇ ଦେଲେ ।

୫୬ଶତ ପଦ—ବର, କନ୍ୟା ଉଜ୍ଜ୍ୱଳ ବସ୍ତ୍ରରେ ଭୂଷିତ ହୋଇ ବାହାରିଲେ । ତାହା ଦେଖି ମନେ ହେଲା, —କନ୍ଦର୍ପ ସହିତ ଯୁଦ୍ଧାରମ୍ଭ କରିବା ପାଇଁ ଏମାନେ ଶାନ୍ତି ପାଇଲେ କି ?

୫୭ଶତ ପଦ—ଅନ୍ତଃପୁରରେ ବର କନ୍ୟାଙ୍କୁ କଉଡ଼ିରେ ଜୁଆ ଖେଳାଇଲେ । ତେଣିକି ବୀର ରାମଚନ୍ଦ୍ରାଦି ବରମାନେ ଅବଳା କନ୍ୟାମାନଙ୍କୁ ଜୟ କରି ପାରିଲେ ନାହିଁ । ( ଅର୍ଥାତ୍ କନ୍ୟାମାନଙ୍କ ହାତରୁ କଉଡ଼ି ଛଡ଼ାଇ ପାରିଲେ ନାହିଁ ) ।

ବୃଦ୍ଧି ନଦୀ ତଟତରୁ ଉପାଡି ଭସାଇ ।
ବେତସ ମଧ୍ୟରେ କିଛି କରି ନ ପାରଇ ଯେ ।୫୮।
ତହୁଁ ପଞ୍ଚଗ୍ରାସୀ ହସ୍ତ ଥାଳୀରୁ ନ ଟଳା ।
ଜଳସ୍ଥ ରାମମୂରତି ଦର୍ଶନେ ମୈଥିଳୀ ଯେ ।୫୯।
ବାରି ବନ୍ଧୁ ବିମ୍ବ ଯଥା ଚକୋର ସୁନ୍ଦରୀ ।
ବସି ପତ୍ରାଚ୍ଛନ୍ନ ବୃକ୍ଷେ ଟେକି ନ ଅନାଇ ଯେ ।୬୦।
ବଢ଼ିଲା ଏ ବିଧାନ ଶାଶୁଏ କରାଇଲେ ।
ବିତରଣ ଅମୂଲ୍ୟ ରତନମାନ କଲେ ଯେ ।୬୧।
ବୀରବର ଭଞ୍ଜ ସୀତା ରାମକୁ ଧ୍ୟାଇଲା ।
ବାଷଠି ପଦେ ଏ ଛାନ୍ଦ ଶେଷକୁ ବହିଲା ଯେ ।୬୨।

———

୫୮ତମ ପଦ—ବଢ଼ିଥିବା ନଈ ତାର ତୀରରେ ଥିବା ବଡ଼ ବଡ଼ ବୃକ୍ଷମାନଙ୍କୁ ଉପାଡି ଭସାଇ ନିଏ, ମାତ୍ର ମଧ୍ୟରେ ଥିବା ବେତର କିଛି କରି ପାରେ ନାହିଁ । ( ସେହିପରି ବଳିଷ୍ଠ ବୀରମାନେ ବଡ଼ ବଡ଼ ବୀରଙ୍କୁ ହରାଇ ପାରନ୍ତି, ମାତ୍ର ଅବଳା ନିକଟରେ ହାରିଲେ ) ।

୫୯ ଓ ୬୦ତମ ପଦ—ଯେପରି ଚକୋର ପକ୍ଷୀ ପତ୍ରାଚ୍ଛାଦିତ ବୃକ୍ଷରେ ବସି ଜଳ ମଧ୍ୟରେ ପଡ଼ିଥିବା ଚନ୍ଦ୍ରର ପ୍ରତିବିମ୍ବ ଦେଖିଲେ ତହିଁ ପ୍ରତି ସ୍ନେହୀ ହୋଇ ଆଉ ଉପରକୁ ( ଚନ୍ଦ୍ରକୁ ) ଅନାଏ ନାହିଁ, ସେହିପରି ସୀତା ପଞ୍ଚଗ୍ରାସୀ ସମୟରେ ହସ୍ତରେ ପିନ୍ଧିଥିବା କଙ୍କଣାଦି ଅଳଙ୍କାରରେ ରାମଙ୍କର ପ୍ରତିମୂର୍ତ୍ତି ଦେଖି ଥାଳୀରୁ ଆଉ ହସ୍ତ ଟେକିଲେ ନାହିଁ । ( ପ୍ରତିମୂର୍ତ୍ତି ଦେଖି ଏପରି ତନ୍ମୟ ହୋଇ ଯାଇଥିଲେ ଯେ, ହାତ ଆଉ ଟେକିଲେ ନାହିଁ । କିମ୍ବା ଥାଳୀରୁ ହାତ ଉଠାଇଲେ ଆଉ ରାମଚନ୍ଦ୍ରଙ୍କ ପ୍ରତିମୂର୍ତ୍ତି ଦିଶିବ ନାହିଁ,—ଏ ଆଶଙ୍କା ହେତୁରୁ ହାତ ଟେକିଲେ ନାହିଁ ) ।

୬୧ତମ ପଦ—ଏ ପାଞ୍ଚଗ୍ରାସୀ ଯଥାବିଧିରେ ଶେଷ ହେଲା । ଶାଶୁମାନେ ବର କନ୍ୟାଙ୍କୁ ବନ୍ଦାପନା କଲେ ଓ ଅମୂଲ୍ୟ ରତ୍ନମାନ ବିତରଣ କଲେ ।

୬୨ତମ ପଦ—ବୀରବର ଭଞ୍ଜ ସୀତା ରାମଙ୍କୁ ଧ୍ୟାନ କରି ଏ ଛାନ୍ଦ ବାଷଠି ପଦରେ ଶେଷ କଲେ ।

———

## ପଞ୍ଚଦଶ ଛାନ୍ଦ

### ରାଗ—କେଦାର, ଚକ୍ରକେଳି ବାଣୀ

ବିଚିତ୍ରିତ ଚିତ୍ରରେ ହୋଇଥିଲେ । ବାମା ମଧୁଶଯ୍ୟାକୁ ମଣ୍ଡାଇଲେ ।
କମ୍ରବନ୍ତରୁ ହୋଇଛି ରଞ୍ଜନ । ବ୍ୟକ୍ତ ସୁନେତ୍ର ସୋହିତ ଖଞ୍ଜନ ।୧।
ବିପତନ ଯେ ପଲଙ୍କ ପଲକ । ବେଣୀ ରତ୍ନପ୍ରଦୀପରେ ଅଧିକ ।
ବେଣୀ ଶୋଭା ଅଗୁରୁ ଧୂମ ଧାର । ବହୁଅଛି ଅଳକା ମନୋହର ।୨।
ବକ୍ତ୍ର ଦର୍ପଣ ଚନ୍ଦ୍ରାତପେ ଶୋହି । ବିନୋଦକୁ ପ୍ରକାଶିବାରେ ସ୍ନେହି ।
ବହୁ ପୂରେ ରୂପକ ଶ୍ଳେଷ ଛନ୍ଦ । ତାହେ ଦମ୍ପତି ହେବେ ବନ୍ଦାବନ୍ଦ ।

---

୧ମ ପଦ—ଖଞ୍ଜନ—ଉଦଉଦଳିଆ ପକ୍ଷୀ । କମ୍ରବନ୍ତରେ—ଶୋଭାରେ ।
୨ୟ ପଦ—ପଲକ—ପକ୍ଷ୍ମପାତ । ଅଳକ—ଚୂର୍ଣ୍ଣକୁନ୍ତଳ, କୁବେରଙ୍କ ପୁର ।
୩ୟ ପଦ—ବକ୍ତ୍ର—ମୁଖ । ଚନ୍ଦ୍ରାତପ—ଚାନ୍ଦୁଆ । ଦମ୍ପତି—ସ୍ୱାମୀ ଓ ସ୍ତ୍ରୀ ।

---

## ପଞ୍ଚଦଶ ଛାନ୍ଦ

୧ମ ପଦ—ନାନାବର୍ଣ୍ଣ ଚିତ୍ରରେ ଚିତ୍ରିତ ହୋଇଥିବା ଓ ପଟ୍ଟବସ୍ତ୍ରରେ ଭୂଷିତ ହୋଇଥିବା ମଧୁଶଯ୍ୟା ଗୃହକୁ ମଣ୍ଡାଇଲେ । ରମଣୀମାନଙ୍କ ପରି ସେ ମଧୁଶଯ୍ୟା ଗୃହ କମନୀୟବସ୍ତ୍ରରୁ ଅନୁରାଗ ଜନିତ ହୋଇଛି । ତହିଁରେ ଚିତ୍ରିତ ହୋଇଥିବା ସେହିମାନ, ଖଞ୍ଜନ ପକ୍ଷୀ ମୀନନୟନା ଓ ଖଞ୍ଜନାକ୍ଷୀ ରମଣୀମାନଙ୍କ ଉତ୍ତମ ନେତ୍ର ସଦୃଶ ହୋଇ ଅଛନ୍ତି । (ବାମାମାନେ ଚନ୍ଦନାଦିରେ ଚର୍ଚ୍ଚିତ ହୋଇଥାନ୍ତି, ବସ୍ତ୍ରାଦିରେ ଭୂଷିତ ହୋଇଥାନ୍ତି ଏବଂ ତାଙ୍କ ନେତ୍ର ମୀନ ଓ ଖଞ୍ଜନ ପକ୍ଷୀର ନେତ୍ରପରି ହୋଇଥାଏ, ସେହିପରି ଏ ବାସର ଗୃହ ଚିତ୍ରିତ ହୋଇଅଛି । ନାନାପ୍ରକାର ପାଟବସ୍ତ୍ର ଦ୍ୱାରା ଆବୃତ ହୋଇଅଛି ଓ ସେଥିରେ ମୀନ, ଖଞ୍ଜନାଦି ଅଙ୍କିତ ହୋଇ ଅଛନ୍ତି ) ।

୨ୟ ପଦ—ବାସର ଗୃହରେ ପଡ଼ିଥିବା ପଲଙ୍କ ରମଣୀଙ୍କ ନେତ୍ରର ପଲକ ସଦୃଶ ଅଟେ । ବାମମାନେ ନାନା ରତ୍ନରେ ବେଶ ଭୂଷା ହୋଇଥିବାପରି ଏ ଗୃହ ବହୁ ରତ୍ନ ପ୍ରଦୀପରେ ଭୂଷିତ ହୋଇଅଛି । ଗୃହର ଅଗୁରୁ ଧୂମର ଶିଖା ବାମାଙ୍କର ବେଣୀର ଶୋଭା ଧାରଣ କରିଅଛି । ଯେପରି ବାମାମାନେ ଅଳକା ଅର୍ଥାତ ଚୂର୍ଣ୍ଣ କୁନ୍ତଳ ଧାରଣ କରିଥାନ୍ତି ସେହିପରି କୁବେର ପୁରୀ ପ୍ରାୟ ସେ ଗୃହ ମନୋହର ହୋଇ ଥିବାରୁ ଅଳକା ପୁରୀ ନାମ ବହିଅଛି ।

୩ୟ ପଦ—ବାମାମାନଙ୍କ ମୁଖ ଯେପରି ଦର୍ପଣ ପ୍ରାୟ ଶୋଭାପାଏ; ସେହିପରି ଏ ବାସର ଗୃହ ଦର୍ପଣ ଖଚିତ ଚାନ୍ଦୁଆଦ୍ୱାରା ଶୋଭା ପାଉଅଛି । ପୁଣି ବାମାମାନେ ଉତ୍କଣ୍ଠା ଭାବେ ସ୍ନେହ ହେଲାପରି ଏ ଗୃହ ବିନୋଦ

ବସୁ ତହିଁ ରାମା ହେଲେ ସ୍ୱଧବ । ବିଧିରେ ତ ବାସକସଜ୍ଜା ଭାବ ।
ବକୋଳକତ କାନ୍ତା ନ ବର ଅଗଣତ । ବଳ ଶଉଦ୍ଧାରେ ରହିଁ ଅରତେ ।୪।
ବିରହରେ ଉତ୍କଣ୍ଠିତା ପ୍ରକାଶି । ବହୁବାକ୍ୟ ସୁରସ ମାନ ଘୋଷି ॥
ବିମ୍ବାଧରେ ଦନ୍ତ ଲବାକୁ ଖଣ୍ଡିତା । ବେଗ ବେଗ ହୋଇଅଛୁ ମମତା ।୬।
ବହୁବଚନେ ଏଣୁ ସିଦ୍ଧ ତହିଁ । ବ୍ୟାକରଣେ ରାମ ରାମା କହି ୭
ବହୁ ଏଣୁ ଗୀତେ ଘୋଷା ପ୍ରଥମା । ବୋଲନ୍ତି ପାଶ୍ଚାତ୍ୟେ ଶ୍ରୀରାମା ରାମା ॥
ବିଲକ୍ଷିତ ହୋଇବ କିପାଁ କଲେ । ବିରୋଚନ ମୋହନେ ରାମ ହେଲେ ।
ବୟସୀଏ ଏକାଳେ ସୁଲକ୍ଷଣୀ । ବଢେଇ କରାଇଲେ ତାଙ୍କୁ କଙ୍କଣୀ ॥

---

ସ୍ୱର୍ଗକୁ ହେତୁର ସଜ୍ଜିତ କରିଅଛି ( ମନୋହର ହୋଇଅଛି )। ସେ ଗୃହରେ ସ୍ତ୍ରୀ ପୁରୁଷ ଦୁହେଁ କାହ୍ନ୍ୱାର ଛନ୍ଦାଛନ୍ଦ ହେବେ ବୋଲି ଏରୂପଦ ଦ୍ୱେଷରେ ଗୃହର ବର୍ଣ୍ଣନା ରଚନା କରାଗଲା ।

୪ର୍ଥ ପଦ—ବାସକସଜ୍ଜା ନାୟିକା କାମାତୁର ହୋଇ ବେଶଭୂଷା ସହିତ ଉଦ୍‌ବିଗ୍ନ ଚିତ୍ତରେ ନିଜର ସ୍ୱାମୀ ଆସିବା ପଥକୁ ଗୃହ୍ରି ବସି ରହିଲା ପରି, ରାମଚନ୍ଦ୍ର ମଧୁଶଯ୍ୟା ଗୃହରେ ବସି କାମାର୍ତ୍ତ ଚିତ୍ତରେ ସୀତାଙ୍କ ଆଗମନ ଅପେକ୍ଷାରେ ଗୃହ୍ରି ରହିଲେ । ( ଏଠାରେ ରାମଚନ୍ଦ୍ର ବାସକସଜ୍ଜା ରମଣୀ ସହିତ ଉପମିତ )।

୫ମ ପଦ—ରାମଚନ୍ଦ୍ର କାନ୍ତାଙ୍କ ବିରହରେ ଅତ୍ୟନ୍ତ ହୋଇ ବିରହୋତ୍କଣ୍ଠିତା ନାୟିକା ପ୍ରାୟ ଉତ୍ତମ ରସ କଥାମାନ ଘୋଷି ହେଲେ । ( ବିରହୋତ୍କଣ୍ଠିତା ନାୟିକା ଗୁଣ ପ୍ରକାଶ ପାଇଲା )। ପୁଣି ସୀତାଙ୍କର ବିମ୍ବୋଷ୍ଠରେ ଅତିଶୀଘ୍ର କ୍ଷତ ଦାଗ ଅଙ୍କିତ କରିବା ପାଇଁ ଅସ୍ଥିର ହୋଇ ଉଠିଲେ ( ଖଣ୍ଡିତା ନାୟିକାର ଧର୍ମ ସୂଚୀତ ହେଲା )।

୭ମ ପଦ—ରାମ ବାସରଗୃହରେ ବସି ରାମା ହେଲେ; ଏହି ବର୍ଣ୍ଣନା ଅଳୀକ ନୁହେ । ବ୍ୟାକରଣ ଶାସ୍ତ୍ରରେ ରାମ ଶବ୍ଦର ବହୁବଚନରେ ରାମା ହୋଇଥାଏ [ ରାମଃ, ରାମୌ, ରାମାଃ ]। ତେଣୁ ଗୀତରେ ରାମଙ୍କୁ ସ୍ତ୍ରୀରୂପରେ ବର୍ଣ୍ଣନ କରାଗଲା । ପୁଣି ପଶ୍ଚିମ ଅଞ୍ଚଳର ଲୋକମାନେ ଶ୍ରୀରାମା ରାମା ବୋଲି କହିଥାନ୍ତି । ( ତେଣୁ ରାମଙ୍କୁ ସ୍ତ୍ରୀ ଲିଙ୍ଗ କରି ରାମା ରୂପେ ବର୍ଣ୍ଣନା କଲେ କ୍ଷତି କଣ ? )

୭ମ ଓ ୮ମ ପଦ—ରାମ ହେଲୁ ରାମା ବୋଲି ବର୍ଣ୍ଣନା କଲେ ଏହା ଅସଙ୍ଗତ ହେବ ନାହିଁ, କାରଣ, ବିରୋଚନ ରାକ୍ଷସକୁ ପୂର୍ବେ ମାୟିକ କନ୍ୟା ରୂପେ ଏହି ରାମଚନ୍ଦ୍ର ମୋହିତ କରିଥିଲେ । ଏହି ସମୟରେ ସଖୀମାନେ ସୁଲକ୍ଷଣବତୀ ସୀତାଙ୍କୁ ତାଙ୍କ ନିକଟକୁ ବଢେଇ ଦେଲେ । ସୀତାଙ୍କର ସଜ୍ଜନ

ବଚ ଭୂଷଣ ଶ୍ରୀ ସ୍ବରବ ଯେମନ୍ତ । କାରବ.ର ଧ୍ୱନି ଶୁଣି ତେମନ୍ତ ।
ସ୍ତ୍ରୀ ସ୍ବ୍ୟତକାନ୍ତ ଦାଣଗଣ । ଉଦ୍ଧ'ମାନ ତେଷ ଅତ ହେ.ଇଲ ।୮।
ବାଳା ରହୁଁ ଵେଲଗୃର ସନ୍ନିଧି । ବୟସିକାଏ ଚଉସିରେ ବେ'ଧି ।
ଵଚଣିନ ତେଜେ ମେ.ଦ ପଦ୍ମିନୀ । ହରଷିନବଂଶୀ ସେ ତୁ ପଦ୍ମିନୀ ।୯।
ବାକଗ୍ଭୂଷି ଚେମନ୍ତ ରହଲ । ବକ୍ଷରରେ ସମର୍ପିତା ହୋଇଲ ।
ବଳାଇଣ ବଳେ ଦ୍ବାର ଦେହଳୀ । ବାହୁଡିଲେ କବାଟ କଳ ଅଳୀ । ୧୦।
ବଲେ ବସାଇଁ ଚଳେ ଚୋଳେ କାନ୍ତ । ବସନ୍ତିଳ ପ୍ରଭାରେ ଦୁର୍ଗା ମତ ।
ବ୍ରୀଡ଼ାବତୀ ଚଞ୍ଚଳ ନ ଛାଡ଼ିଲେ । ବୋଧୁଁ ବଳସ୍ଥେ ଧୀର ଧୀର ହେଲେ।୧୧।

---

୧୧ଶ ପଦ—ବ୍ରୀଡ଼ାବତୀ—ଲଜ୍ଜାବତୀ । ଧୀର—ପଣ୍ଡିତା । ଧୀର—ସ୍ଥିର

---

ସମୟରେ ପାଦର କଙ୍କିଣୀ କାଳଚା ଶବ୍ଦ ଶୁଣି ମହାତ୍ମାଙ୍କର ଗୃହବାଟଣୀ ମେଘର ଗର୍ଜନ ଶୁଣି ଯେପରି ଆନନ୍ଦିତ ହୁଏ, ରାମଚନ୍ଦ୍ର ସେହପରି ଆନନ୍ଦିତ ହେଲେ । ସୀତାଙ୍କ ଦେହ କାନ୍ତି ବଜୁଳ ତେଜରୁ ଅଧିକ ପ୍ରକାଶିତ ହେଲ, ତେଣୁ ରାମଚନ୍ଦ୍ରଙ୍କ ଆନନ୍ଦ ଅତଶୟ ବର୍ଦ୍ଧିତ ହୋଇଗଲ ।

୯ମ ପଦ—ସୀତା ବାସଗୃହ ସମୀପରେ ରହଯାନ୍ତେ ସମବୟସୀ ସଖୀମାନେ ଛଳ ଭାବରେ ବୋଧ କର କହଲେ, "ହେ ସଖି ! ସୂର୍ଯ୍ୟ ତେଜରେ ପଦ୍ମ ପ୍ରସ୍ଫୁଟିତ ହୁଏ । ସେ ରାମଚନ୍ଦ୍ର ସୂର୍ଯ୍ୟ ବଂଶଧର, ତୁ ତ ପଦ୍ମିନୀ ରମଣୀ । ତାଙ୍କ ସଙ୍ଗମକୁ ଭୟ କରୁଛୁ କାହିଁକି ?"

୧୦ମ ପଦ—ସଖୀମାନେ ଯେଉଁ ବକ୍ରୋକ୍ତି କଲେ, ସେଥିରେ ବାକ୍‌ଗୁରୁଷ୍ଠୀ ପ୍ରକାଶିତ ହେଲ, ପୁଣି ବନ୍ଧୁଙ୍କୁ ସମର୍ପଣ କରିବାର ମଧ୍ୟ ହେଲ । ତାହା ପରେ ଗଳାଦ୍ବାରରେ ଦ୍ବାରର ଏବୁଣ୍ଡ ବନ୍ଧକୁ ଲଗାଇ ଦେଇ କବାଟ ବନ୍ଦ କରି ସଖୀମାନେ ଫେରିଗଲେ ।

୧୧ଶ ପଦ—ନାୟକ ରାମଚନ୍ଦ୍ର ଲଜ୍ଜାବତୀ ସୀତାଙ୍କୁ ନେଇ ଶଯ୍ୟାରେ ନଜ କୋଳରେ ବସାନ୍ତେ, ସୀତା କ୍ରୋଧରେ ଦୁର୍ଗା ସମାନ ଉଗ୍ରବତ ହେଲେ, (ଚନ୍ଦ୍ର ଦୁର୍ଗାଙ୍କ ଉଣ୍ଡ ଶୁଭ ମୂର୍ତ୍ତି ଅଛି) । ସେ ଜଳମଣି ପ୍ରଭାବରେ ଚମକିତ ହେଲେ ଯେପରି ଦଶ'ନେ ସୀତା ସେହପରି ଦିଶିଲେ । ସେ ଲଜ୍ଜାବତୀ ହେବାରୁ ଚଞ୍ଚଳତା ଶୀଘ୍ର ଛାଡ଼ି ନ ଥିଲେ । ରାମ ବନସ୍ଥ ବାକ୍ୟରେ ବୋଧ କରନ୍ତେ, କ୍ରମେ ସୀତା ସ୍ଥିର ହେଲେ ।

ବିଦଗଧ ଶ୍ରୀରାମଚନ୍ଦ୍ର କହେ । ବନ୍ଧୁ ଜୀବନ ଥିବାରେ ଏ ଦେହେ ।
ବିଳାସିନୀ ନ କରିବି ଅନ୍ୟ । ବୋଲି ଛୁଇଁ ଦୀପ ହୁତାଶନକୁ ।୧୨।
ବଇଦେହୀ କେଶୁଁ କାଟି କେତକୀ । ବର୍ଣ୍ଣ ଲିଖିତ ପୋଷ୍ଟ କସ୍ତୁରୀକି ॥
ବଳି ନାହିଁ ଅନେ ଏତେଯାଏ ତ । ବଳାଇବ ଜନ୍ମେ ଜନ୍ମେ ମୋ ଚିତ୍ତ ।
ବର ମଣ୍ଡପରୁ ଯିବ ବାହୁଡ଼ି । ବାର୍ତ୍ତାବହେ ତୁମ୍ଭଙ୍କୁ ନେବ ଘେନି ।
ବୀରମୂକୁଟେ ପତ୍ର କରି ଦତ୍ତ । ବନ୍ୟସ୍ତ ଯେ ପ୍ରଦୀପେ କଲେ ହସ୍ତ ।
ବଇଦର୍ଭୀ ବୃତ୍ତିସ ପ୍ରକାଶିତ । ବକ୍ଷେ ସଂଯୋଗି ପତି ବିଦ୍ୟୁତ ॥

---

୧୨ଶ ପଦ—ବିଦଗ୍ଧ—ପଣ୍ଡିତ, ଚତୁର । ବିଳାସିନୀ—ସ୍ତ୍ରୀ ବା ଭାର୍ଯ୍ୟା । ଦୀପ ହୁତାଶନ—ଦୀପାଗ୍ନି ।

୧୪ଶ ପଦ—ବାର୍ତ୍ତାବହ—ଦୂତ । ବୀରମୂକୁଟେ—ବୀରଶ୍ରେଷ୍ଠ ରାମଚନ୍ଦ୍ରଙ୍କୁ ।

---

୧୨ଶ ପଦ—ତାହା ପରେ ଚତୁର ରାମଚନ୍ଦ୍ର କହିଲେ, "ହେ ପ୍ରିୟେ ! ମୋର ଏ ଦେହରେ ପ୍ରାଣ ଥିବାଯାଏ, ତୋ ବିନା ଅନ୍ୟ ସ୍ତ୍ରୀକୁ ଗ୍ରହିବି ନାହିଁ ।" ଏହା କହି ସେ ଦୀପର ଅଗ୍ନିକୁ ଛୁଇଁ ନିୟମ କଲେ ।

୧୩ଶ ପଦ—ରାମ ଏପରି ନିୟମ କରିବାରୁ ସୀତା ମୁଣ୍ଡର କେଶରୁ କେତକୀ ପାଖୁଡ଼ା କାଟି ତହିଁରୁ କସ୍ତୁରୀରେ ପୋଷ୍ଟ ଅକ୍ଷର ଲେଖିଲେ, "ଏତେଯାଏ ତ ମୋର ମନ ତୁମ୍ଭ ବିନା ଅନ୍ୟଠାରେ ବଳି ନାହିଁ । ପର ଜନ୍ମମାନଙ୍କରେ ମଧ୍ୟ ମୋ ଚିତ୍ତ ଅନ୍ୟ ପୁରୁଷଠାରେ ବଳାଇବ ନାହିଁ ।"

୧୪ଶ ପଦ—"ପରଜନ୍ମରେ ପିତା ବର ବରିଥିଲେ ବିବାହମଣ୍ଡପରେ ବସାଇ ଥିବେ, ମାତ୍ର ମୁଁ ରାଜି ନ ହେବାରୁ [ ଦ୍ୱାପର ଯୁଗରେ ରୁକ୍ମିଣୀ ଅବତାରର କଥା ] ସେ ବର ( ଶିଶୁପାଳ ) ମଣ୍ଡପରୁ ବାହୁଡ଼ି ଯିବ । ମୁଁ ଦୂତଦ୍ୱାରା ତୁମ୍ଭଙ୍କୁ ଖବର ଦେଇ କରି ନେବ ।" ଏହା ଲେଖି ସୀତା ସେ ପତ୍ର ରାମଙ୍କୁ ହୃଦ ନ କରି ପ୍ରଦୀପରେ ହସ୍ତ ଦେଲେ । ( ପ୍ରଦୀପ ଛୁଇଁ ନିୟମ କଲେ ) ।

୧୫ଶ ପଦ—ପତ୍ରରେ ପ୍ରକାଶିତ ସୀତାଙ୍କର ବାକ୍‌ବୃତ୍ତିକୁ ( ଅର୍ଥାତ୍ ତୁମ୍ଭେ ଏ ଜନ୍ମରେ ଅନ୍ୟ ସ୍ତ୍ରୀ କରି ନ ପାର, କିନ୍ତୁ ଅନ୍ୟ ଜନ୍ମରେ ମୋ ବ୍ୟତୀତ ଅନ୍ୟ ସ୍ତ୍ରୀ କରି ପାରିବ, ମାତ୍ର ମୁଁ ଜନ୍ମଜନ୍ମାନ୍ତରରେ ସୁଦ୍ଧା ତୁମ୍ଭ ବ୍ୟତୀତ ଅନ୍ୟ ପୁରୁଷକୁ ଗ୍ରହିବି ନାହିଁ ] ପାଠ କରି ରାମଚନ୍ଦ୍ର ବକ୍ଷଦେଶରେ ନାରାୟଣ ଶ୍ରୀବତ୍ସ ଚିହ୍ନ କହିଲ ପରି ତାହା ଧାରଣ କଲେ, ମାତ୍ର ପଦାକୁ କିଛି ପ୍ରକାଶ କଲେ ନାହିଁ ।

ବପ୍ରସାଦ ଚିହ୍ନ ପର ହୃଦରେ । ବାହ୍ୟେ ନ ଧରି ରଖିଲେ ଉଦରେ ॥
ବିଶଦତା ଚିତ୍ତ-ନଭେ ଉଦୟ । ବହିର୍ଗତ ହେଲା ଘନ ସଂଶୟ ।
ବିମଳତା ରସ ଖ୍ୟାତ ହୋଇଲା । ବିକାଶକୁ କାଶ ହାସ ପାଇଲା ।୧୬।
ବନଜିନୀ ଯେଉ ସରେ ରାଜିତା । ବଦେ ପୁଲକସଙ୍ଗେ ପ୍ରଫୁଲ୍ଲିତା ।
ବନ ସର୍ବତୋଭାବେ ଗଲା ଧରି । ବିଚଳିତ ନିର୍ମଳେ ହେଲୁ ଶଶୀ ।୧୭।
ବିସ୍ତୃତ ଯେ ହଂସଙ୍କର ନିଃସ୍ୱନ । ବିତପନ ନକ୍ଷତ୍ରମାଳା ପୁନ ।
ବ୍ୟୁପୃଷ୍ଠରେ ଯୁବତୀ ଋତୁମତୀ । ବର୍ଦ୍ଧନେ ଶରଦ ହେଲା ଖ୍ୟାତ ॥

---

୧୬ଶ ପଦ — ବିଶଦତା — ନିର୍ମଳତା । ନଭ — ଆକାଶ । ଘନ — ମେଘ । ରସ — ଜଳ, ଶୃଙ୍ଗାର ରସ ।

୧୭ଶ ପଦ — ବନଜିନୀ — ପଦ୍ମିନୀ । ସର — ପୁଷ୍କରିଣୀ, ସରୋବର ।

୧୮ଶ ପଦ — ହଂସକ — ହଂସ ପକ୍ଷୀ, ନୂପୁର । ନକ୍ଷତ୍ରମାଳ — ତାରକାସମୂହ, ମୁକ୍ତାମାଳା । ବ୍ୟୁପୃଷ୍ଠରେ — ଜାଣିବାରେ । ବର୍ଦ୍ଧନେ — ରତିକ୍ରୀଡାରେ ।

---

୧୬ଶ ପଦ — ଉଭୟେ ଉଭୟଙ୍କର ମନ କଥା ଜାଣି ପାରିବାରୁ ସେମାନଙ୍କ ଚିତ୍ତରୂପ ଆକାଶରୁ ସଂଶୟ ରୂପ ମେଘ ଦୂର ହୋଇଗଲା ଓ ନିର୍ମଳ ଭାବ ଉଦିତ ହେଲା । ବର୍ଷା ଋତୁ ପରେ ଶରତ ଋତୁ ପ୍ରବେଶ କଲେ ଆକାଶ ନିର୍ମଳ ହୁଏ, ଜଳ ସଫା ହୁଏ, କାଶତଣ୍ଡୀ ଫୁଲ ଫୁଟେ; ସେହିପରି ଉଭୟଙ୍କ ମନରୁ ସଂଶୟ ମେଘ ଦୂର ହେବାରୁ ଚିତ୍ତ ନିର୍ମଳ ହେଲା, ଶୃଙ୍ଗାର ରସ ପୂର୍ଣ୍ଣ ଭାବରେ ଖ୍ୟାତ ହେଲା ଏବଂ କାଶ ଫୁଲ ସମ ହାସ ପ୍ରକାଶିତ ହେଲା ।

୧୭ଶ ପଦ — ସୀତା ପଦ୍ମଫୁଲ ପ୍ରାୟ ହେଲେ, ଶଯ୍ୟା ସରୋବର ପ୍ରାୟ ହେଲା । ଶରତ୍ ସମୟରେ ସରୋବରରେ ପଦ୍ମ ବିକଶିତ ହେଲା ପରି ଶଯ୍ୟାରେ ସୀତା ରୋମାଞ୍ଚିତ ହୋଇ ଶୋଭା ପାଇଲେ । ସରୋବରରୁ ଜଳ ଶୁଖି ଗଲେ କର୍ଦ୍ଦମ ପ୍ରକାଶିତ ହେଲା ପ୍ରାୟ ଶଯ୍ୟା ସରୋବରରେ ଚତୁଃଷଷ୍ଟି କାମକଳା ପ୍ରକାଶିତ ହେଲା । ନିର୍ମଳ ଚନ୍ଦ୍ର ଶରତ୍ କାଳରେ ଦେଖା ଗଲା ପ୍ରାୟ ଏଠାରେ ଉତ୍ତମ ଭାବରେ ଚନ୍ଦ୍ର ତୁଳନା ହେଲା ।

୧୮ଶ ପଦ — ଶରତ କାଳରେ ସରୋବରମାନଙ୍କରେ ହଂସଙ୍କର ଶବ୍ଦ ଶୁଣାଗଲା ପରି, ଏଠାରେ ରତିକ୍ରୀଡା ଯୋଗୁ ନୂପୁର ଧ୍ୱନି ଶୁଣାଗଲା ଏବଂ ନକ୍ଷତ୍ରସବୁ ନିର୍ମଳ ଆକାଶ ଯୋଗୁ ସ୍ପଷ୍ଟ ଦେଖାଗଲା ପ୍ରାୟ କଣ୍ଠ ସ୍ଥିତ ମୁକ୍ତାମାଳା ଦେଖାଗଲା । ସ୍ତ୍ରୀମାନେ ଋତୁମତୀ ହୁଅନ୍ତି, ତେଣୁ ସୀତାଙ୍କୁ ଋତୁମତୀ ବର୍ଣ୍ଣନ କରି ତାଙ୍କ ରତିକୁ ଶରତ୍କାଳ ସହିତ ଖ୍ୟାତ କରାଗଲା ।

ବୀରେ ବିଖ୍ୟାତ ତୁ ସାରସଦୃଶା । ବଦନରେ ଜଡ଼ଜର ପ୍ରଶଂସା ।
ବିମ୍ବାଧରେ ତ ସଦନ ମଧୁର । ବକ୍ଷୋରୁହେ ଗିରିସମ ବିଗୁର ।୧୯
ବିଧୁ ଘନଜଘନା ବୋଲିବାର । ବ୍ୟବହାର ଖ୍ୟାତ ସର୍ବେ ଏଠାର ।
ବିନାଶନ ହେଲା ନିଶା ଏକାଳେ । ବେଶ୍ୟା ପ୍ରାୟେ ଗଗନ ବିରାଜିଲେ ॥
ବିଟ ବୋଲ ଦିଗ ବେଶ୍ୟା ତେଜିଲା । ବେଗେ ସବିତା ଭବନେ ମିଳିଲା ।
ବନଜିନୀ ଯେ କୁଳଟା ସ୍ୱଭାବେ । ବିଟଭିନ ଜିହ୍ମାସେ ଭୃଙ୍ଗ ଚୁମ୍ବେ ॥

---

୧୯ଶ ପଦ—ବିଖ୍ୟାତ—ବିଥିତ । ସାରସଦୃଶା—ପଦ୍ମଲୋଚନା । ଜଡ଼ଜର—ଚନ୍ଦ୍ର, ମୂର୍ଖ, ଶିଶିର । ମଧୁ—ବସନ୍ତ କାଳ । ବକ୍ଷୋରୁହ—ସ୍ତନ ।
୨୦ଶ ପଦ—ବେଶ୍ୟା—ବେଶ ହୋଇଥିବା ଲୋକ ।

---

୧୯ଶ ପଦ—ବୀର ରାମଚନ୍ଦ୍ର କହିଲେ, "ହେ ପଦ୍ମଲୋଚନେ ! ତୁମ୍ଭେ ତୁଷାର ସଦୃଶା ଅର୍ଥାତ୍ ହିମ ଋତୁ ପ୍ରାୟ ଅଟ । ( ତୁମ୍ଭର ଦେହ ତୁଷାର ସଦୃଶ ଶୀତଳ ) ତୁମ୍ଭର ଯେଉଁ ବଦନ ଜଡ଼ଜର ତୁଳନାରୁ ହୋଇ ଚନ୍ଦ୍ର ପ୍ରଶଂସା ପାଉଅଛି, ସେ ବଦନ ଶୀତଳ ହୋଇଥିବାରୁ ତାହା ଶୀତ କାଳ ପ୍ରାୟ ଅଟେ । ତୁମ୍ଭର ବିମ୍ବାଧର ଅମୃତର ଗୃହ ହୋଇଥିବାରୁ ତାହା ବସନ୍ତର ସ୍ଥାନ ହୋଇଅଛି । ତୁମ୍ଭର ସ୍ତନଯୁଗଳ ଗିରିସମ ଅର୍ଥାତ୍ ପର୍ବତ ସମାନ ହୋଇଥିବାରୁ ଗ୍ରୀଷ୍ମର ବିସ୍ତର ହେଲା ।" ( ଏଥିରେ ହେମନ୍ତ, ଶୀତ, ବସନ୍ତ ଓ ଗ୍ରୀଷ୍ମଋତୁର ସୂଚନା ଦିଆଗଲା ) ।

୨୦ଶ ପଦ—"ହେ ସୀତେ ! ତୁମ୍ଭଙ୍କୁ ଘନଜଘନା ବୋଲିବା ଉଚିତ" ( ଏଠାରେ ଘନ ବା ମେଘ ଶବ୍ଦର ବ୍ୟବହାରରେ ବର୍ଷା ଋତୁର ସୂଚନା ମିଳିଲା ) ବ୍ୟବହାରରେ ସୀତାଙ୍କଠାରେ ଶରଦାଦି ଋତୁସମୂହ ଖ୍ୟାତ ହେଲେ । ଏହି ସମୟରେ ରାତ୍ରି ଶେଷ ହେବାରୁ ଆକାଶ ବେଶ ହୋଇଥିବା ଲୋକ ପ୍ରାୟ ଶୋଭିତ ହେଲା ।

୨୧ଶ ପଦ—ପ୍ରଭାତ ହେବାରୁ ପୂର୍ବଦିଗରୂପ ବେଶ୍ୟା ଚନ୍ଦ୍ର ରୂପ ପୁରୁଷ ବୋଲକୁ ତ୍ୟାଗ କରି ସୂର୍ଯ୍ୟଙ୍କ ଭବନରେ ମିଳିଲା । ( ତେଣୁ ବେଶ୍ୟା ନାମରେ ଅଭିହିତ ) । ସ୍ୱଭାବରେ ପଦ୍ମିନୀ ଅସତୀ ଅଟଇ, କାରଣ ସୂର୍ଯ୍ୟ ତାକୁ ପ୍ରସ୍ଫୁଟିତ କଲେ, ମାତ୍ର ଭ୍ରମର ବିଟପୁରୁଷ ରୂପରେ ତାକୁ ଚୁମ୍ବନ ଦେଲା । [ ପ୍ରଭାତ ହେବାରୁ ପୂର୍ବଦିଗରେ ସୂର୍ଯ୍ୟ ଉଦିତ ହେଲେ, ପଦ୍ମ ଫୁଟିଲା ଓ ତହିଁରେ ଭ୍ରମର ମାନେ ଉଡ଼ି ବସିଲେ ] ।

ବଳିଭୁକ ସତ୍ୟବାଦ ରଟନା । ବିବୁଧେ ଯେ ସେ ବେଶ୍ୟାବଶ ସିନା ।
ବାୟସ ସାଧୁ ଭାବକୁ ପେଚକ । ବୃକ୍ଷକୋଟେ ଲୁଚେ ହୀନ ଘାତକ ॥
ବିଚକ୍ଷଣା କୁମୁଦିନୀ ଦେଖାଇ । ବିଧୁପଦ ମାତ୍ରେ ସତୀ ମୁହିଁ ।
ବସି ନ ପାରି ନ ରସି ଭ୍ରମର । ବ୍ୟର୍ଥ ବାଦ ଦେଇ କରେ ଝଙ୍କାର ॥
ବାୟୁ ମନ୍ଦ ଗୁଣକୁ ଅନ୍ବେଷ କରି । ବାସ ପୁଷ୍ପବତୀର ନେଲା ହରି ।
ବିଶ୍ବେ ସମୀର ହୋଇଲା ରଜକ । ବିଚାରୁଛି ଅନୁସ୍ବାରେ ଅଧିକ । ୨୪ ।

---

୨୨ଶ ପଦ—ବଳିଭୁକ—କାକ । ସତ୍ୟବାଦ—ସତ୍ୟ ବଚନ । ବିବୁଧେ—ଦେବତାମାନେ । ବାୟସ—କାକ ।

୨୩ଶ ପଦ—ବିଚକ୍ଷଣା—ବୁଦ୍ଧିମତୀ, ପଣ୍ଡିତା । କୁମୁଦିନୀ—କଇଁଲତା ।

---

୨୨ଶ ପଦ—କାକମାନେ ସତ୍ୟବଚନେପ୍ରକାଶ କରି ଗାଇ ବୁଲିଲେ, "ଦେବତାମାନେ ଯେ ବେଶ୍ୟାସକ୍ତ ଅଟନ୍ତି ଏହା ସତ୍ୟ । [ ଚନ୍ଦ୍ର ଓ ସୂର୍ଯ୍ୟ ଦିଗ୍-ବେଶ୍ୟାରେ ଅସକ୍ତ, ଏହା କାକମାନେ ରବ ଦେଇ କହି ବୁଲିଲେ ] । ପୁଣି କାକ ସାଧୁ ପ୍ରାପ୍ତ ହେଲେ । ତାଙ୍କ ଭାବକୁ ଶୁଣି ପେଚାମାନେ ହୀନ ଘାତକପ୍ରାୟ ବୃକ୍ଷ କୋଟରେ ଲୁଚିଲେ ।

୨୩ଶ ପଦ—ମୁଁ ଜାଣିପାରୁଛି, କଇଁ ପଣ୍ଡିତା ଅଟେ । ନିଜ କାନ୍ତ ଚନ୍ଦ୍ରର ଉଦୟରେ ସେ ପ୍ରଫୁଲ୍ଲିତ ଓ ଅସ୍ତରେ ମୁଦ୍ରିତ ହୁଏ, ତେଣୁ ସେ ସତୀ । ଭୃଙ୍ଗ କାମୁକପୁରୁଷ ପ୍ରାୟ ହୋଇ ତା ପାଖକୁ ଗଲା, ମାତ୍ର ତା ଉପରେ ବସି ନ ପାରି ବୃଥାରେ ଅପବାଦ ଦେଇ ଝଙ୍କାର କରୁଅଛି ।

୨୪ଶ ପଦ – ଧୀର ପବନ ବହୁଥିବାରୁ ଜଣାଗଲା, ପବନର ଯେ 'ମନ୍ଦଗତି' ତାହା ପବନର ମନ୍ଦଗୁଣକୁ ଆଶ୍ରୟ କରିଅଛି ; ମନ୍ଦଗୁଣ ବିଶିଷ୍ଟ ପୁରୁଷ ପୁଷ୍ପବତୀ ରମଣୀର ବସନ ହରଣ କଲା ପରି, ମନ୍ଦପବନ ପୁଷ୍ପବତୀ ଲତାରୁ ବାସ [ ସୁଗନ୍ଧ ] ହରଣ କରି ନେଉଅଛି । ଆଉ ମଧ୍ୟ ଏ ସଂସାରରେ ସେ ରଜକ ପ୍ରାୟ ହେଲା । ( ରଜକ ପୁଷ୍ପବତୀର ବାସ ନେଇ ସଫା କରେ ) । ମୁଁ ବିଚାରୁଛି, ରଜକରେ ଅନୁସ୍ବାର ମାତ୍ର ଅଧିକ ଥିବାରୁ ସେ ରଞ୍ଜକ ହୋଇଅଛି, ( ତେଣୁ ପୁଷ୍ପ ସୌରଭ ନେଇ ସମସ୍ତଙ୍କ ମନ ରଞ୍ଜନ କରୁଥାଏ ) ।

ବଲ୍ଲୀଠାରୁ କାମୁକୀ ବଳ ନାହିଁ । ବିନୋଦକୁ କୁସୁମେ ଯେଣୁ ଦେଇ ।
ବହଇ ଯେ ସମ୍ଭୋଗକୁ ମଧୁପ । ତେଣୁ ସବୁ କାଳରେ ଅନୁରୂପ ।୧୫।
ବେଶ୍ମେ ଦୀପ ମଳିନ ହେବା ଗୃହି । ବାହାରଲେ କାନ୍ତସଂଗୁ ବୈଦେହୀ ।
ବାମଦେବାରି ଯେ ହାରିଲ । ଭଜୟୁ ତା ରଥ କି ନେଉଥିଲ ॥
ବିଳମ୍ବିତ ଗତି ଅନ୍ଦୁ ବହୁତେ । ବାରଣ କି ଯୋଉଥିଲ ଏ ପ୍ରତେ ।
ବନ୍ଧୁ ଛିନ୍ନେ ସ୍ପଷ୍ଟେ ଲେଟେ ଚିକୁର । ବୈଜୟନ୍ତୀ ଅଧୋଗତ ପ୍ରକାର ॥
ବଳା ଅଳି ଝୁମ୍ପୁ ଝୁମ୍ପୁ ସ୍ୱନିତ । ବାଜେ ପରାଜୟ ତୂର ଯେମନ୍ତ ।
ବନ୍ଧେ ନୟନଛଳେ ନୀଳୋତ୍ପଳ । ବାମ ଦକ୍ଷିଣେ ଶର କି ଚଞ୍ଚଳ ।୧୮।

---

୧୫ଶ ପଦ—ବଲ୍ଲୀ—ଲତା । କୁସୁମେ—ପୁଷ୍ପକାଳରେ । ବିନୋଦ—ଆନନ୍ଦ ।

୧୬ଶ ପଦ—ବେଶ୍ମେ—ଘରେ । ବାମଦେବାରି—କନ୍ଦର୍ପ ।

୧୭ଶ ପଦ—ଅନ୍ଦୁ—ହସ୍ତୀର ପାଦବନ୍ଧନ ଶୃଙ୍ଖଳ, ପାଦଭୂଷଣ । ଚିକୁର—କେଶ । ବନ୍ଧୁ ଛିନ୍ନେ—ବନ୍ଧନ ରଜ୍ଜୁ ଛିନ୍ନ ହେବାରୁ ।

୧୮ଶ ପଦ—ତୂର—ବାଦ୍ୟବିଶେଷ, ତୂରୀ । ବଳା—ପାଦାଳଙ୍କାର ବିଶେଷ ।

---

୧୫ଶ ପଦ—ଲତାଠାରୁ ବଳି କାମୁକୀ ଆଉ କେହି ନାହିଁ କାରଣ, ସେ ପୁଷ୍ପବତୀ ସମୟରେ ମଧ୍ୟ କାଳି ଦଏ ଏବଂ ମଧୁପ ସହିତ ସମ୍ଭୋଗ ବିଧାନ କରେ । ମଧୁପ ସ୍ୱଭାବରେ ମଦ୍ୟପ ଅଟେ । କାମୁକୀ ଲତା ଓ ମଦ୍ୟପ ମଧୁପ ଉଭୟେ ସବୁ ସମୟରେ ପରସ୍ପରର ଅନୁରୂପ ଅଟନ୍ତି ।

୧୬ଶ ପଦ—ଗୃହରେ ଦୀପ ମଳିନ ହେବାର ଦେଖି ସୀତା କାନ୍ତ ପାଖରୁ ବାହାରିଲେ । ତାଙ୍କ ମନ୍ଥର ଗତି ଦେଖି ମନେହୁଏ, କନ୍ଦର୍ପ ରଣରେ ହାରିଯିବାରୁ ତାହାର ପରାଜିତ ରଥ ମନ୍ଥରଗତି ବହି ନେଉଥିଲା କି ?

୧୭ଶ ପଦ—ମନ୍ଥରଗତି ହେତୁ ଏପରି ପ୍ରତୀତ ହୁଏ, କନ୍ଦର୍ପ ସେ ରଥରେ ପାଦ ଶାଙ୍କୁଳି ଦେଇ ହସ୍ତୀକୁ ବାନ୍ଧିଥିଲା କି ? ପୁଣି ବନ୍ଧନ ଛିଣ୍ଡି ଯାଇଥିବାରୁ କେଶ ପିଠିରେ ଲୋଟୁଛି । ତା ଦେଖି ମନେ ହୁଏ, କନ୍ଦର୍ପର ପରାଜିତ ପତାକା ଅଧୋଗତେ ଲମ୍ବିଅଛି କି ? ପରାଜିତ ହେବାରୁ ପତାକା ଉପରକୁ ନ ଉଡ଼ି ତଳ ଦିଗକୁ ଲୋଟି ପଡ଼ିଅଛି କି ?

୧୮ଶ ପଦ—ପାଦର ବଳା ଅଳି ଝୁମ୍ପୁ ଝୁମ୍ପୁ ଶବ୍ଦ କରେ, ସେଥିରୁ ମନେହୁଏ, ପରାଜୟ ହେତୁ ତୂରୀ ମନ୍ଦ ମନ୍ଦ ବାଜୁଅଛି କି ? ସେହି ଗତବେଳେ ସୀତା ମନର ଚଞ୍ଚଳତା ହେତୁ ଏ ଦିଗ ସେ ଦିଗକୁ ବାରମ୍ବାର ଚାହୁଁଥିବାରୁ ମନେହୁଏ, କନ୍ଦର୍ପ ନୀଳୋତ୍ପଳ ଶରକୁ ବାମ ଓ ଦକ୍ଷିଣ ଦିଗକୁ ସବେଗରେ ଛାଡ଼ୁଅଛି କି ?

ବେଢ଼ିଗଲେ ସଜନୀ ଗୃହପାଶେ । ବିଧାନୀ ସେ ନୋହିଲେ ପରିହାସେ ।
ବିଳମ୍ବିଲେ ଜାଣିବେ ଗୁରୁଜନ । ବେଶ କଲେ ନୀତି ସାରି ବହନ ॥
ରସିଥିଲା ଯେ ଓଷ୍ଠେ ରଦପଦ । ବିଦ୍ରୁମରେ ଯେମନ୍ତ କୀଟଭେଦ ।
ବିଶେଷରେ ତାମ୍ବୂଳ ଭୁଞ୍ଜାଇଲେ । ବିଲୋପକୁ ଯେ ତା'ର ବିଜ୍ଞବରେ ॥
ଛପିଂସିଲେ ସେ ଶଙ୍କ ଗଣ୍ଡଦେଶୁ । ବହୁ ମକରୀ ଚିହ୍ନକ ସନ୍ତୋଷୁ ।
ବକ୍ଷୋଜରେ ସଞ୍ଚିତ ନଖକ୍ଷତ । ବିଧୁ ଅର୍ଦ୍ଧ ଶମ୍ଭୁଶିରେ ଯେମନ୍ତ ।୩୧।
ବେହାଇଣ ଚୋଳ ତା ଗୁପ୍ତ କରି । ବିଜେ ତାହାରେ ପୁଂସବର ଗୃହ ।
ବୋଲେ ଉପେନ୍ଦ୍ର ଭଞ୍ଜ ଏ ରସ । ବୁଝ ବୁଧମାନେ ପଦ ବତିଶ ।୩୨।

---

୩୦ଶ ପଦ—ରଦପଦ—ଦନ୍ତଚିହ୍ନ । ବିଦ୍ରୁମ—ପୋହଳା ।
୩୧ଶ ପଦ—ବକ୍ଷୋଜ—ସ୍ତନ । ବିଧୁଅର୍ଦ୍ଧ—ଅର୍ଦ୍ଧଚନ୍ଦ୍ର ।
୩୨ଶ ପଦ—ଚୋଳ—କାଞ୍ଚୁଲି । ବୁଧମାନେ—ପଣ୍ଡିତମାନେ ।

---

୨୯ଶ ପଦ—ସେହିକାଳରେ ସଖୀମାନେ ସୀତାଙ୍କର ଗୃହପାଖରେ ବେଢ଼ିଗଲେ, ସେମାନେ ସୀତାଙ୍କ ଅଙ୍ଗରେ କ୍ଷତ ଚିହ୍ନମାନ ଦେଖି ପରିହାସରେ ସମୟ ଅତୀତ କଲେ ନାହିଁ । ବିଳମ୍ବ ହେଲେ କାଳେ ଗୁରୁଜନମାନେ କ୍ଷତ ଚିହ୍ନମାନ ଦେଖିବେ, ତାହା ବି ସେମାନେ ଶୀଘ୍ର ନିତ୍ୟକର୍ମମାନ ସମାପ୍ତ କରି ସୀତାଙ୍କୁ ବେଶ ଭୂଷା କଲେ । ( ଏହାଦ୍ୱାରା ସଖୀମାନଙ୍କର ଗୃହିଣୀ ସୂଚିତ ହେଲା )।

୩୦ଶ ପଦ—ପ୍ରବାଳରେ କୀଟରେ ଦଂଶନ ଜନିତ କ୍ଷତ ଦେଖାଗଲା ପରି ସୀତାଙ୍କ ରକ୍ତିମ ଓଷ୍ଠରେ ଯେଉଁ ଦାଗଟି ଦେଖାଯାଉଥିଲା, ତାହାକୁ ଲୋପ କରିବାପାଇଁ ବିଜ୍ଞ ସଖୀମାନେ ବିଶେଷରୂପେ ତାଙ୍କୁ ପାନ ଭୁଞ୍ଜାଇଲେ ।

୩୧ଶ ଓ ୩୨ଶ ପଦ—ପୁଣି ସେହି ସଖୀମାନେ ସୀତାଙ୍କ ସନ୍ତୋଷ ଜନକ ନିମିତ୍ତ ମକରୀ ଚିହ୍ନ ଲେଖି ତାଙ୍କୁ ଗଣ୍ଡସ୍ଥଳରେ ହୋଇଥିବା କ୍ଷତ ଚିହ୍ନକୁ ଲୋପ କଲେ । ମହାଦେବଙ୍କ ଶିରରେ ଅର୍ଦ୍ଧଚନ୍ଦ୍ର ଯେପରି ଦେଖାଯାଏ, ସେହିପରି ଦେଖାଯାଉଥିବା ସ୍ତନଯୁଗଳୋପରି ନଖକ୍ଷତ ଚିହ୍ନକୁ କାଞ୍ଚୁଲି ବେହାଇ ଲୁଚାଇ ଦେଲେ । ରାମ ଲକ୍ଷ୍ମଣ, ଭରତ, ଶତ୍ରୁଘ୍ନ ଏହି ଚାରି ପୁରୁଷଶ୍ରେଷ୍ଠ ବାସର ଗୃହକୁ ଯାଇ ତାହାରେ ବିଜେ କଲେ । ଉପେନ୍ଦ୍ର ଭଞ୍ଜ ଏ ରସକୁ ବତିଶପଦରେ ବର୍ଣ୍ଣିଲେ। ହେ ପଣ୍ଡିତମାନେ ! ହୃଦୟଙ୍ଗମ କର ।

# ଷୋଡଶ ଛାନ୍ଦ

## ରାଗ—ନଳିନୀ ଗୌଡ଼ା

ବୈଦେହୀଶରଞ୍ଜନ ଭୋଜ୍ୟ ସମ୍ଭାର ଭିଆଇ ।
ବଳୋଇଲେ ଦଶରଥ ବନ୍ଧୁବର୍ଗ ନେଇ ଯେ ।୧।
ବସନ ରତ୍ନ ଭୂଷଣ କୁସୁମ ଚନ୍ଦନେ ।
ବନ୍ଦିଲେ ସତ୍ୱରେ ଅତି ଆନନ୍ଦିତ ମନେ ଯେ ।୨।
ବସାପୁରେ ବରକନ୍ୟା ଘେନି ଗଲବେଳେ ।
ବସାଇ କୋଳେ ଜନନୀମାନେ ଉଆଳିଲେ ଯେ ।୩।
ବୀରସୂ ସନ୍ନିଧେ ହେଉଁ ବଧୂ ଅଲୋକରେ ।
ବିରସୁଁ ଉଦ୍ଧର ହେଲେ ଥିଲେ ଏ ଲୋକରେ ଯେ ।୪।
ବରଙ୍କ ସୁଷମା ସମା କନ୍ୟା ଥିବେ କାହିଁ ।
ବିଗୁରୁଥିଲୁଁ ବହୁ ଭଲ ଥିଲା ବହୁ ଯେ ।୫।

---

୪ର୍ଥ ପଦ—ବୀରସୂ—ବୀରମାତା ।

---

# ଷୋଡଶ ଛାନ୍ଦ

୧ମ ପଦ—ବୈଦେହୀ ରଞ୍ଜନ ଜନକ ଭୋଜନ ସାମଗ୍ରୀ ଆୟୋଜନ ପୂର୍ବକ ଦଶରଥଙ୍କ ବନ୍ଧୁମାନଙ୍କୁ ଚର୍ଚ୍ଚା କଲେ ।

୨ୟ ପଦ—ତଦନନ୍ତର ଆନନ୍ଦିତ ଚିତ୍ତରେ ବନ୍ଧୁମାନଙ୍କୁ ବସନ ଭୂଷଣ କୁସୁମ ଚନ୍ଦନ ସତ୍କାର କଲେ ।

୩ୟ ପଦ—ବସାଘରକୁ ବର ଓ କନ୍ୟାମାନଙ୍କୁ ଘେନି ଯିବା ସମୟରେ ଜନନୀମାନେ କନ୍ୟାମାନଙ୍କୁ କୋଳରେ ବସାଇ ବହୁତ ଉଆଳ କହିଲେ । ( ବହୁତ ସଦୁପଦେଶ ଦେଲେ ) ।

୪ର୍ଥ ଓ ୫ମ ପଦ—ବୀରମାତା କୌଶଲ୍ୟାଦି ରାଣୀମାନଙ୍କ ନିକଟରେ ବଧୂମାନେ ପ୍ରବେଶ ହୁଅନ୍ତେ, ବଧୂମାନଙ୍କର ତେଜଶୋଭା ଦେଖି ସେମାନେ ବିରସ ଭାବକୁ ତ୍ୟାଗ କଲେ ଅର୍ଥାତ୍ ହର୍ଷ ହେଲେ । ( ବଧୂମାନଙ୍କୁ ନ ଦେଖି ବିରସ ହୋଇଥିଲେ; କାରଣ ) ସେମାନେ କୁହାକୁହି ହେଲେ, "ଆମେ ବିଗୁରୁଥିଲେ ଯେ, ଆମ ପୁତ୍ରମାନଙ୍କ ଶୋଭା ସମାନରେ କନ୍ୟା କେଉଁଠାରେ ଅବା ଥିବେ ? ମାତ୍ର ବିଧାତା ଉପଯୁକ୍ତ କନ୍ୟାମାନଙ୍କୁ ନିର୍ମାଣ କରିଅଛନ୍ତି ।"

ବର୍ତ୍ତମାନ ଭୂତ ଭବିଷ୍ୟରେ ଶୋଭାସାର ।
ବୋଲିବାର ସମ୍ଭବଇ ଏହାଙ୍କ ଠାବର ଯେ ।୬।
ବସୁମତୀ ଗର୍ଭୁଁ ଗ୍ରହ ଦୈତ୍ୟ ଜାତ ହୋଇ ।
ଭରିତ ତା ଗର୍ଭେ ସୀତା ହୋଇଥିଲେ କେହୁ ଯେ ।୭।
ବାରୁଣୀ ବିଷ ଅମୃତ ଯଥା ସିନ୍ଧୁଜାତ ।
ବିଶ୍ୱମ୍ଭରରୁ ଜାନକୀ ଜନିତ ସେମନ୍ତ ଯେ ।୮।
ବିଧି ଭଲ ବିଧି ଭଲ ଏ ଜାତ ହେବାରୁ ।
ବୋଲିଥିଲେ ଗନ୍ଧବତୀ ରତ୍ନଗର୍ଭା ତାକୁ ଯେ ।୯।

---

୭ମ ପଦ—ବସୁମତୀ—ପୃଥିବୀ । ଗ୍ରହ—ମଙ୍ଗଳଗ୍ରହ । ଦୈତ୍ୟ—ନାରକାସୁର । ଭୃତ—ପୋଷଣ ବା ଧାରଣ ।

୮ମ ପଦ— ବାରୁଣୀ—ମଦ୍ୟ ବିଶେଷ । ବିଶ୍ୱମ୍ଭରରୁ—ପୃଥିବୀରୁ ।

---

୬ଷ୍ଠ ପଦ—ବର୍ତ୍ତମାନ, ଭୂତ ଓ ଭବିଷ୍ୟତ—ଏହି ତିନି କାଳରେ ଶୋଭାଶ୍ରେଷ୍ଠା ବା ପରମା ସୁନ୍ଦରୀ ବୋଲିବା କେବଳ ଏହି କନ୍ୟା-ମାନଙ୍କଠାରେହିଁ ସମ୍ଭବ । ( ଅର୍ଥାତ୍ ଏହାଙ୍କ ପରି ସୁନ୍ଦରୀ ବର୍ତ୍ତମାନ କାଳରେ ନାହାନ୍ତି, ଅତୀତରେ ନ ଥିଲେ ବା ଭବିଷ୍ୟତରେ ହୋଇ ନ ପାରନ୍ତି ) ।

୭ମ ପଦ—ସ୍ୱର୍ଗୀମାନେ ଭାବିଲେ, ଯେଉଁ ପୃଥିବୀ ଗର୍ଭରୁ ( ବିରୂପ ) ମଙ୍ଗଳଗ୍ରହ ଓ ନାରକାସୁର ଜନ୍ମ ହୋଇଥିଲେ, ସେହି ପୃଥିବୀରୁ ଏ ପରମା ସୁନ୍ଦରୀ ସୀତା କିପରି ଜାତ ହେଲେ ?

୮ମ ପଦ—ମଦ୍ୟ, ବିଷ ଓ ଅମୃତ ଯେପରି ସମୁଦ୍ରରୁ ଜାତ ହେଲେ, ସେହିପରି ପୃଥିବୀରୁ ସୀତା ଉଦ୍ଭବ ହୋଇ ଅଛନ୍ତି । ( ସମୁଦ୍ରରୁ ମଦ୍ୟ ଓ ବିଷ ଜାତ ହେଲା ପରେ ଅମୃତ ଉଦ୍ଭବ ହୋଇଥିଲା; ସେହିପରି ପୃଥିବୀରୁ ମଙ୍ଗଳ ଓ ନାରକାସୁର ଜନ୍ମ ହେବା ପରେ ସୀତା ଜନ୍ମ ହେଲେ—ମନ୍ଦ ସ୍ଥାନରେ ଭଲ ରହିବା ଅସମ୍ଭବ ନୁହେଁ ) ।

୯ମ ପଦ—ବିଧାତା ଧନ୍ୟ ଓ ତାହାର ବିଧାନ ମଧ୍ୟ ଧନ୍ୟ । କାରଣ, ସେ ପୃଥିବୀକୁ ଯାହା ଗନ୍ଧବତୀ ଓ ରତ୍ନଗର୍ଭା ନାମ ଦେଇଥିଲେ, ତାହା ଏହି ସୁଲକ୍ଷମୟୀ ସୀତାଙ୍କ ଜନ୍ମ ହେତୁ ସାର୍ଥକ ହୋଇଅଛି ।

ବରବର୍ଣ୍ଣିନୀ ବରଙ୍କ ଚଉଠି ଉତ୍ସବ ।
ବରବର୍ଣ୍ଣିନୀ ନୀରକୁ ରଚିଲେ ବାନ୍ଧବ ଯେ । ୧୦ ।
ରଜନୀ ହରିତାଳେ କି ପ୍ରଳୟ କହାଇଲ ।
ବର୍ଣ୍ଣାଞ୍ଚିନ ଜନ ହେଲେ ସୁବର୍ଣ୍ଣଦିଚ୍ଛୁରା ଯେ । ୧୧ ।
ଛଣିଖଗସ୍ୱନ ଛଧି ପାଇଲେ ସମ୍ପୂର୍ଣ୍ଣକୁ ।
ବୋଲାଇଲେ ଅଜସୁତ ପୁର ଗମନକୁ ଯେ । ୧୨ ।
ନଇରଣ କର ଅଣି ବୁଝାଇ ଜନକ ।
ଦଳନାୟ ନୋହେ ଯେତେ ଦେଲେ ଯଉତୁକ ଯେ ।୧୩।
ବାତାୟୁଲୋମଜ କୁଜଶେୟ ଜବଦସ୍ତ ।
ବ୍ରହ୍ମାସ୍ତ୍ର ସମାନ ଭଲ ସମର୍ପିଲେ ଅସ୍ତ୍ର ଯେ । ୧୪ ।

---

୧୦ମ ପଦ—ବରବର୍ଣ୍ଣିନୀ—ଗୌରାଙ୍ଗୀ କନ୍ୟା । ବରବର୍ଣ୍ଣିନୀ—ହଳଦୀ ଅର୍ଥାତ୍ ହଳଦୀପାଣି ।

୧୧ଶ ପଦ—ରଜନୀ—ରଙ୍ଗ ।

୧୨ଶ ପଦ—ଅଜସୁତ—ଦଶରଥ ।

୧୪ଶ ପଦ—ବାତାୟୁ ଲୋମଜ—ମୃଗ ଲୋମରେ ନିର୍ମିତ । କୁଜଶେୟ—ପଟ୍ଟବସ୍ତ୍ର ।

---

୧୦ମ ପଦ—ଗୌରବର୍ଣ୍ଣ କନ୍ୟା ଓ ବରମାନଙ୍କର ଚଉଠୀ ଉତ୍ସବରେ ବନ୍ଧୁଜନମାନେ ହରିଦ୍ରା କେଳି କଲେ ( ଚଉଠୀ ଦିନ ହଳଦୀ ପାଣି ପକା ପକି ହେବାର ବିଧି ) ।

୧୧ଶ ପଦ—ହଳଦୀ ପାଣିରେ ବନ୍ଧୁବାନ୍ଧବମାନେ ରଞ୍ଜିତ ହେବାରୁ ମନେ ହୁଏ, ହରିତାଳ ବର୍ଣ୍ଣ ଛଳରେ ପ୍ରଳୟ ହେଲା କି ? ଶ୍ୟାମଳ ବର୍ଣ୍ଣ ବ୍ୟକ୍ତିମାନେ ହଳଦୀ ପାଣିରେ ରଞ୍ଜିତ ହେବାରୁ ସ୍ୱର୍ଣ୍ଣ ପିତ୍ତଳ ପ୍ରାୟ ଦେଖାଗଲେ ।

୧୨ଶ ପଦ—ବାଣ୍ଡିଗର ଅଙ୍ଗ ବିଧାନସବୁ ସମ୍ପୂର୍ଣ୍ଣ ହେଲା । ତାହା ପରେ ଦଶରଥ ଆପଣା ପୁରକୁ ଫିରାଯିବା ପାଇଁ ଜନକଙ୍କ ପାଖକୁ ଖବର ପଠାଇଲେ ।

୧୩ଶ ପଦ—ଜନକ ରାଜା ଏତିକା ପ୍ରଭୃତିରେ ପୂର୍ଣ୍ଣ କରି ବୁଝାଇ ଅଣି ଯେତେ ଯଉତୁକ ଦେଲେ—ତାହା ଅକଥନୀୟ ( ଅର୍ଥାତ୍ କଥାରେ ବର୍ଣ୍ଣନା କରି ହେବ ନାହିଁ ) ।

୧୪ଶ ପଦ—ମୃଗଚର୍ମ ଜାତ ଶାଲ, ପାଟବସ୍ତ୍ର ଜରୀବସ୍ତ୍ର ଓ ବ୍ରହ୍ମାସ୍ତ୍ର ସମାନ ଅସ୍ତ୍ର ସବୁ ଯୌତୁକ ସ୍ୱରୂପ ସମର୍ପଣ କଲେ ।

ବୃଷାହ୍ୱୟ ପର ହୟଚୟ, କଶ୍ୱ ତହିଁ ।
ବାସବ-ଗଜ-ତନୟ ନୟ ଉପୁଜଇ ଯେ । ୧୫ ।
ବାରିଂନିଧି ଶୂନ୍ୟ ଭଲ୍ଲ ପର ରତ୍ନ ଦଏ ।
ଦେଲବୃଷ୍ଣା ପାତ୍ରବର ଜ୍ୟୋତିର୍ବିଦ ପ୍ରାୟେ ଯେ । ୧୬ ।
ବହୁଙ୍କେ ଶୁକ ସାରିକା ଶ୍ଳୋକ ପଠା ହୋଇ ।
ବିଦ୍ୟାଧରୀ ବଳିତା ଦାସୀ ତ ଥିଲେ ଦେଇ ଯେ । ୧୭ ।
ବାଞ୍ଛାକଲେ ଗ୍ଲଣ ଯେ ମିଥିଳା-ନରେଶ୍ୱର ।
ବିଜୟେ ସୁଖାସନରେ ଗୁରୁ କନ୍ୟା ବର ଯେ । ୧୮ ।
ବଳ ସାଜି ଗମନ ବାଜନ୍ତେ ବାଦ୍ୟମାନ ।
ବଳପର ଆଦି ଦେବେ କରନ୍ତି ଲୋକନ ଯେ । ୧୯ ।

---

୧୫ଶ ପଦ—ବୃଷାହ୍ୱୟ—ଇନ୍ଦ୍ରଙ୍କର ଉଚ୍ଚୈଃଶ୍ରବା ଅଶ୍ୱ । ହୟଚୟ—ଅଶ୍ୱସମୂହ । ବାସବ ଗଜ ତନୟ—ଇନ୍ଦ୍ରଙ୍କ ଐରାବତ ହସ୍ତୀର ପୁଅ । ନୟ—ସଦୃଶ ।

୧୬ଶ ପଦ—ବାରିଂନିଧି—ସମୁଦ୍ର ।

୧୮ଶ ପଦ—ସୁଖାସନ—ଯାନ, ଏଠାରେ ପାଲିଙ୍କି ।

୧୯ଶ ପଦ—ବଳ - ସୈନ୍ୟ । ବଳପର—ଇନ୍ଦ୍ର ।

---

୧୫ଶ ପଦ—ଉଚ୍ଚୈଃଶ୍ରବା ପରି ଘୋଡ଼ା, ଐରାବତ ପୁତ୍ରଙ୍କ ସମାନ ଗଜ ସବୁ ଦେଲେ ।

୧୬ଶ ପଦ—ସମୁଦ୍ର ଶୂନ୍ୟ ହେଲା ପରି ରତ୍ନସବୁ (ଅପରିମିତ ରତ୍ନ) ପୁଣି ଜ୍ୟୋତିର୍ବିଦସମ ଦାଳଣ୍ଡ ପାତ୍ରମାନଙ୍କୁ ପ୍ରଦାନ କଲେ ।

୧୭ଶ ପଦ—ଶ୍ଳୋକ ପଢ଼ୁଥିବା ଶୁକ ସାରିକା ପକ୍ଷୀମାନଙ୍କୁ ଦେଲେ ଏବଂ ଅନ୍ତଃପୁରରୁ ବିଦ୍ୟାଧରୀଙ୍କ ଅପେକ୍ଷା ବେଶୀ ସୁନ୍ଦରୀ ଦାସୀ ଦେଇଥିଲେ ।

୧୮ଶ ପଦ—ଦଶରଥ ଅନୁକୂଳ ହେବାରୁ ମିଥିଳାରାଜ ଜନକ ତାଙ୍କୁ ଚଳାଇ ଦେବାକୁ ବାଞ୍ଛାକଲେ । ଗୁରୁ ବର ଓ ଗୁରୁ କନ୍ୟା ପାଲିଙ୍କି ଓ ଶିବିକା-ରୂପ ସୁଖାସନରେ ବସେଇ ଦେଲେ ।

୧୯ଶ ପଦ—ଦଶରଥ ସୈନ୍ୟମାନଙ୍କୁ ସଜ କରି ବାଦ୍ୟ ବଜାଇ ଗମନ କରନ୍ତେ, ଇନ୍ଦ୍ର ଆଦି ଦେବତାମାନେ ଶୂନ୍ୟରେ ରହି ତାହା ଦେଖିଲେ ।

ଷଣ୍ଢାଳ ଭୂପାଳ ମେଳ ହୋଇଲେ ପଥର ।
ବଂଶେ ମିତ୍ରର ଯେ ଜାତ ତେ ହୋଇବ ପର ତଯ । ୨୦ ।
ବୀରବାହୁ ଭୃଗୁପତି ତ୍ରାସ ଦେବାପାଇଁ ।
ବାସ କଲ ଗିରି ଭୃଗୁ ଚମକନ୍ତେ ତହିଁ ଯେ । ୨୧ ।
ବୀତହୋତ୍ର ସଦୃଶେ ସ୍ୱଭାବେ ତେଜୋବନ୍ତ ।
ବୀରତୂର ଘୃତାହୁତି ଲଭି ପ୍ରଜ୍ୱଳିତ ଯେ । ୨୨ ।
ନିହତ କାଷ୍ଠାବଳୀରେ ଲଗି ପାଣ୍ଡୁବର୍ଣ୍ଣେ ।
ବ୍ୟାକୁଳିତ ଦଶରଥ ହେଲେ ସେହୁ ତ୍ରାସେ ଯେ । ୨୩ ।
ବୋଇଲେ ପ୍ରଚଣ୍ଡାନଳ ଅସ୍ତ୍ରଅଛି ଜଳି ।
ବୁଦ୍ଧି ନ ଦିଶେ କ୍ଷମରେ ହେଲେ ତୃଣାବଳି ଯେ । ୨୪ ।

---

୨୦ଶ ପଦ—ଭୂପାଳ—ରାଜା । ମିତ୍ର—ସୂର୍ଯ୍ୟ । ପର—ଶତ୍ରୁ ।
୨୨ଶ ପଦ—ବୀତହୋତ୍ର—ଅଗ୍ନି ।
୨୩ଶ ପଦ—କାଷ୍ଠାବଳିରେ—ଦିଗମାନଙ୍କରେ, ବାଟରେ ।

---

୨୦ଶ ପଦ—ବଡ଼ ବଡ଼ ରାଜାମାନଙ୍କର ବାଟରେ ଭେଟ ହେଲା । ଯେଉଁ ଦଶରଥ ସୂର୍ଯ୍ୟ ବଂଶରେ ଜାତ, ତାଙ୍କର ଶତ୍ରୁ କା କିଏ ହେବ ? (ଅର୍ଥାତ୍ ବଡ଼ ବଡ଼ ରାଜାମାନେ ତାଙ୍କର ଅଧୀନ ଥିବାରୁ ବାଟରେ ଆସି ଯୋଗ ଦେଇଥିଲେ ) ।

୨୧ଶ ପଦ—ଭୃଗୁ ତୁଲ୍ୟ ବୀର ( କ୍ଷତ୍ରିୟ ଚନ୍ଦ୍ରମାନଙ୍କର ତ୍ରାସଦାୟୀ ପର୍ଶୁରାମଙ୍କ ନିବାସ ପର୍ବତର ସନ୍ନିକଟ ବାଦ୍ୟ ନାଦରେ ଚମକନ୍ତେ; ସେ କ୍ଷତ୍ରିୟମାନଙ୍କୁ ତ୍ରାସ ଦେବା ପାଇ ବାହାର ହୋଇ ପଡ଼ିଲେ ।

୨୨ଶ ପଦ—ସ୍ୱଭାବରେ ସେ ପର୍ଶୁରାମ ଅଗ୍ନି ପ୍ରାୟ ତେଜସ୍ୱୀ ଥିଲେ । ବୀରବାଦ୍ୟ ରୂପ ଘୃତାହୁତି ପାଇ ପ୍ରଜ୍ୱଳିତ ହୋଇ ଉଠିଲେ । ( ବୀରମାନେ ବୀରବାଦ୍ୟ ଶ୍ରବଣରେ ଉଲ୍ଲସିତ ହୁଅନ୍ତି ) ।

୨୩ଶ ପଦ—ତ ୦ ଷୋଡ଼ଶଙ୍କ ପରେ ପାଉଁଶ ଉଡ଼ି ଦିଗ ଆଚ୍ଛାଦନ ହେଲା ପରି ପର୍ଶୁରାମଙ୍କର କ୍ରୋଧୋନ୍ମତ୍ତ ଆଗମନରେ ଧୂଳି ଉଡ଼ି ଦିଗସବୁ ଢାଙ୍କି ହୋଇଗଲା । ସେହି ଭୟରେ ଦଶରଥ ବ୍ୟାକୁଳିତ ହେଲେ ।

୨୪ଶ ପଦ—ଭୟ ପାଇ ଦଶରଥ କହିଲେ, 'ପ୍ରଚଣ୍ଡ ଅଗ୍ନି ଜଳି ଅଛି, ମୋତେ ବୁଦ୍ଧି ଦିଶୁ ନାହିଁ । ମୋର ସୁତେ ତୃଣ ପରି ହୋଇ ଅଛନ୍ତି । ଅର୍ଥାତ୍ ତୃଣ ପ୍ରାୟ ସେ ପ୍ରଚଣ୍ଡ ଅଗ୍ନିରେ ପୋଡ଼ି ହୋଇଯିବେ ) ।

ବଶିଷ୍ଠେ ଶ୍ରବଣରେ କଲେ ପ୍ରତିଭାଷ ।
ବିନାଶ ତହିଁ ଉତ୍ପତ୍ତି ଯହିଁରୁ ନ ଘୋଷ ଯେ । ୨୫ ।
ବ୍ୟୋମ ଅଯୋଧ୍ୟାରେ ଉଦେ ମୁଦିର ସୁନ୍ଦର ।
ବହ୍ନି ତପନ କେମନ୍ତେ ରହିବ ତାହାର ଓପ । ୨୬ ।
ବାମଦେବ ବୋଇଲେ କରନ୍ତି ତୋତେ ରକ୍ଷା ।
ବାଞ୍ଛି ପୁତ୍ରଙ୍କ କଲ୍ୟାଣେ ଆସୁଅଛନ୍ତି ଦକ୍ଷ ଯେ । ୨୭ ।
ବଶିଷ୍ଠ ବୋଇଲେ ଗ୍ରହ ମଙ୍ଗଳ ବୋଲାଇ ।
ବିନା ଦାନେ ଶାନ୍ତି ନୋହେ ଅମଙ୍ଗଳଦାୟୀ ଯେ । ୨୮
ବୀରଶାର୍ଦ୍ଦୂଳ ଲୋକନେ ଭାଜନ୍ତି ସୈନ୍ୟମୃଗ ।
ବିନୟୀ ହେଲେ ନୃପତି ଅତ୍ୟନ୍ତ ଉଦ୍‌ବେଗ ଯେ । ୨୯ ।

---

୨୬ଶ ପଦ—ବ୍ୟୋମ—ଆକାଶ—ମୁଦିର—ମେଘ । ବହ୍ନି ତପନ—ଅଗ୍ନି ତେଜ ।

୨୯ଶ ପଦ—ବୀରଶାର୍ଦ୍ଦୂଳ—ବୀରଶ୍ରେଷ୍ଠ ।

---

୨୫ଶ ପଦ—ବଶିଷ୍ଠେ ଦଶରଥଙ୍କ ବ୍ୟାକୁଳ ବଚନ ଶୁଣି ଉତ୍ତର କଲେ, 'ଯହିଁରୁ ଯେ ଉତ୍ପନ୍ନ, ତହିଁରେ ତାର ବିନାଶ ହୁଏ । ଏ କଥା ବିଚାର କରୁ ନାହଁ କାହିଁକି ?' (ଅଗ୍ନି ଜଳରୁ ଉତ୍ପନ୍ନ ହୋଇ ପୁଣି ସେହି ଜଳରେ ବିନାଶ ହୁଏ) ।

୨୬ଶ ପଦ—'ଅଯୋଧ୍ୟା ଆକାଶରେ ଘନସୁନ୍ଦର ରାମ ଉଦିତ ହୋଇଅଛନ୍ତି । ଅଗ୍ନି ତ ମେଘର ଶତ୍ରୁ, ସେ କିପରି ରହିବ ? (ପରଶୁରାମଙ୍କ କ୍ରୋଧରୂପ ଅନଳ ରାମଚନ୍ଦ୍ରରୂପ ମେଘ ଦ୍ୱାରା ବିଲୁପ୍ତ ହେବ) ।

୨୭ଶ ପଦ—ତତ୍ପରେ ବାମଦେବ କହିଲେ, 'ପରଶୁରାମ ପୂର୍ବେ ତୁମ୍ଭଙ୍କୁ ରକ୍ଷା କରି ଅଛନ୍ତି । ସେ କଲ୍ୟାଣ କରିବାରେ ଦକ୍ଷ, ତେଣୁ ତୁମ୍ଭ ପୁତ୍ରମାନଙ୍କୁ କଲ୍ୟାଣ କରିବା ଇଚ୍ଛାରେ ଆସୁଅଛନ୍ତି । (ତେଣୁ ଭୟ କରିବା ଉଚିତ ନୁହେ) ।

୨ ଶ ପଦ—ବଶିଷ୍ଠ ତାହାପରେ କହିଲେ, 'ମଙ୍ଗଳ ଗ୍ରହ ମଙ୍ଗଳ ନାମ ବୋଲାଇଲେ ହେଁ ଅମଙ୍ଗଳକୁ ପ୍ରଦାନ କରେ । ଦାନାଦି ଦ୍ୱାରା ତାହାର ଅମଙ୍ଗଳ ନିବାରିତ ହୋଇଥାଏ । ସେହିପରି ପରଶୁରାମଙ୍କ ତେଜ ଅଶାନ୍ତିକାରକ, ତାହା 'ଦାନ' ଛେଦନ ନ ହେଲେ ସେ ଶାନ୍ତି ଲଭିବେ ନାହିଁ ।

୨୯ଶ ପଦ—ବୀର ଶାର୍ଦ୍ଦୂଳ ପରଶୁରାମଙ୍କୁ ଦର୍ଶନ କରି ସୈନ୍ୟ ମୃଗମାନେ ପଳାୟନ କଲେ । ତାହା ଦେଖି ନୃପତି ଦଶରଥ ଅତ୍ୟନ୍ତ ବ୍ୟାକୁଳ ମନରେ ପରଶୁରାମଙ୍କ ନିକଟରେ ବିନୟଯୁକ୍ତ ହେଲେ ।

ବୃଦ୍ଧକାଳେ ପୁତ୍ରଦାନ କଲେ ଋଷ୍ୟଶୃଙ୍ଗ ।
ବିବାହ ଉତ୍ସବ କରି ବାହୁଡ଼ୁଛୁ ନଗ୍ର ଯେ ।୩୦।
ବିଜେ କଲ କୃପାରେ ଏଠାକୁ ଭୃଗୁରାଜ ।
ବୃଦ୍ଧି ହେବ ଆୟୁ ତାଙ୍କୁ ଦିଅ ପାଦରଜ ହେ ।୩୧।
ବିଷ୍ଣୁର ଆବେଶ ଅବତାର ହୋଇ ତବ ।
ପ୍ରଜ୍ୱଳିତ କୋପେ ଉକ୍ତ ବକ୍ର ନ ଶୋଭଇ ହେ ।୩୨।
ବୋଲନ୍ତି ବୋଲିଲେ ଯେଉଁ ରାମ କହାଇ ପ୍ରକଟେ ।
ବୀର ବାଦ୍ୟ ବଜାଇ ଯାଉଛି ମୋ ନିକଟେ ଯେ ।୩୩।
ଜଣେ ନ ଜାଣେ କ୍ଷତ୍ରିୟବିମର୍ଦ୍ଦନକାରୀ ।
ବସୁଧାରେ ତାର ଶିର ଲୋଟାଇବି ସିନା ଯେ ।୩୪।
ବୋଲେ ନୃପ କ୍ଷୀରକଣ୍ଠ ମାରି କେଉଁ ଯଶ ।
ବିକ୍ରମିଣ ଗଲା ସେ ନ ଶୁଣି ରାଜା ଭାଷ ଯେ ।୩୫।

---

୩୦ଶ ପଦ—ଦଶରଥ ବିନୟ ସ୍ୱରରେ କହିଲେ, "ବୃଦ୍ଧ କାଳରେ ଋଷ୍ୟଶୃଙ୍ଗ ମୁନି ଦୟା ପୂର୍ବକ ପୁତ୍ରଦାନ କରି ଅଛନ୍ତି । ତାହାଙ୍କର ବିବାହ ଉତ୍ସବ କରି ମୁଁ ଏବେ ନଗରକୁ ଫେରି ଯାଉଅଛୁ ।"

୩୧ଶ ପଦ—"ହେ ଭୃଗୁବଂଶ ଶ୍ରେଷ୍ଠ! ଅନୁଗ୍ରହ ପୂର୍ବକ ତୁମ୍ଭେ ଏଠାକୁ ବିଜେ କଲ । ପୁତ୍ରମାନଙ୍କର ଆୟୁ ବୃଦ୍ଧି କାରଣ ସେମାନଙ୍କୁ ପଦଧୂଳି ପ୍ରଦାନ କର ।"

୩୨ଶ ପଦ—"ତୁମ୍ଭେ ବିଷ୍ଣୁଙ୍କର କଳାବତାର ଅଟ । କ୍ରୋଧାଗ୍ନିରେ ପ୍ରଜ୍ୱଳିତ ହୋଇ ଉକ୍ତ ବକ୍ର ଉଚ୍ଚାରଣ କରନ୍ତେ ନାହିଁ କି?"

୩୩ଶ ଓ ୩୪ଶ ପଦ— ଦଶରଥ ଏପରି ବିନୟ ବାଣୀ କହିବାରୁ ପର୍ଶୁରାମ କହିଲେ, "ଯେଉଁ ରାମ କହାଇ ପ୍ରକଟ କରି ବୀରବାଦ୍ୟ ବଜାଇ ମୋ ନିକଟରେ ଯାଉଅଛି, ସେ କଣ ମୋର ସଂସାରରେ କ୍ଷତ୍ରିୟ ବିମର୍ଦ୍ଦନକାରୀ ଉଭୁଛି ବୋଲି ଜାଣେ ନାହିଁ? ତାହାର ଶିର ଅବା ବସୁଧାରେ ଲୋଟାଇ ଦେବି । (ତାହାର ମସ୍ତକ ଛେଦନ କରିବି)"

୩୫ଶ ପଦ—ଏହା ଶୁଣି ଦଶରଥ କହିଲେ, "ଏ କ୍ଷୀରକଣ୍ଠ ଶିଶୁକୁ ମାରି କେଉଁ ଯଶ ଲାଭ କରିବ?" ରାଜାଙ୍କର ଏ ବାଣୀ ନ ଶୁଣି ପର୍ଶୁରାମ ବିକ୍ରମ ପ୍ରକାଶ କରି ରାମଙ୍କ ନିକଟକୁ ଗଲେ ।

ବକ୍ରା ଲକ୍ଷ୍ମଣ କାହାକୁ ପଚାରିଲା ପ୍ରାୟେ ।
ବାଉଳେ କାହୁଁ ପ୍ରବେଶ ଆମ୍ଭ ସେନେ ହୁଏ ଯେ ।୩୬।
ବ୍ୟାଳେ ଲେଷ୍ଟୁ ଛୁଆଁଇଲା ପ୍ରାୟ ଭୃଗୁ କହି ।
ବିଷକଣ୍ଠେ କ୍ଷୀରକଣ୍ଠ ବୋଲୁଥିଲା କେହି ଯେ ।୩୭।
ବିଷକଣ୍ଠ ଯେବେ ଭବଗୁରୁ ହେବା ସ୍ତବ ।
କରିବ କି ଆସିଅଛ କହୁଁ କହେ ଜବ ଯେ ।୩୮।
ବଂଶଧନୁ କୀଟଭେଦ ଯୋଗୁଁ ଥିଲା ହୋଇ ।
ବିଭଞ୍ଜିଲେ ତାହା ମହାବୀର କେ ବୋଲାଇ ଯେ ।୩୯।
ବଧ ଆଗ ତାକୁ କରିବା ପଛେ ତୁହି ।
ବୋଲେ ଅନ୍ଧମତେ ଚନ୍ଦ୍ର ସୂର୍ଯ୍ୟ ଯଥା ନାହିଁ ଯେ ।୪୦।

---

୩୭ଶ ପଦ—ବ୍ୟାଳ—ସର୍ପ । ଲେଷ୍ଟୁ—ଢେଲା । ବିଷକଣ୍ଠ—ସର୍ପ । କ୍ଷୀରକଣ୍ଠ—ଶିଶୁ ।

---

୩୬ଶ ପଦ—ଗର୍ବୋନ୍ମତ୍ତ ଓ କ୍ରୁଦ୍ଧ ପର୍ଶୁରାମଙ୍କୁ ଦେଖି ଲକ୍ଷ୍ମଣ ଅନ୍ୟ କାହାକୁ ପଚାରିଲା ପ୍ରାୟ କହିଲେ, "ପାଗଳଟିଏ କାହିଁ ଆସି ଆମ୍ଭ ସେନା ମଧ୍ୟରେ ପ୍ରବେଶ କଲା ?"

୩୭ଶ ପଦ—ଲକ୍ଷ୍ମଣଙ୍କ ଉପହାସ ବଚନ ଶୁଣି ସର୍ପକୁ ଢେଲା ପକାଇଲା ପ୍ରାୟ ପର୍ଶୁରାମ ଗର୍ଜନ କରି କହିଲେ, "ଏମାନେ ତ ବିଷକଣ୍ଠ (ସର୍ପ) ଅଟନ୍ତି; କିଏ ଏହାଙ୍କୁ କ୍ଷୀରକଣ୍ଠ ବୋଲି କହୁଥିଲା ?"

୩୮ଶ ପଦ—ଲକ୍ଷ୍ମଣ ଉତ୍ତର ଦେଲେ, "ଯେବେ ଆମ୍ଭକୁ ବିଷକଣ୍ଠ ବୋଲି କହୁଛ (ବିଷକଣ୍ଠ ତ ମହାଦେବ) ତୁମ୍ଭର ଆମ୍ଭେ ଗୁରୁ ହେଲୁଁ । ତେଣୁ ସ୍ତୁତି କରିବାକୁ ଆସିଅଛ କି ?" ଏହା ଶୁଣି ପର୍ଶୁରାମ କୋପରେ କହିଲେ ;—

୩୯ଶ ଓ ୪୦ଶ ପଦ—"ବହୁଦିନରୁ ଅହୋଇ ରହି ଥିବାରୁ ବାଉଁଶରେ ଧନୁ ପୋକସ ହୋଇଥିଲା । ତାହାକୁ ଭାଙ୍ଗି ଯେ ମହାବୀର ବୋଲାଉଛି ତାହାକୁ ଆଗ ବଧ କରିବା, ତୁହି ପରେ ବଧ ହେବୁ ।" ଏହା ଶ୍ରବଣ କରି ଲକ୍ଷ୍ମଣ କହିଲେ, "ଅନ୍ଧ ଯେପରି ମନେକରେ ଚନ୍ଦ୍ର ସୂର୍ଯ୍ୟ ନାହାନ୍ତି, ସେହିପରି ତୁମ୍ଭେ କହୁଛ ଯେ, ଅନ୍ୟ ବଳିଷ୍ଠ କେହି ନାହାନ୍ତି । ଯେପରି ଅନ୍ଧ ନ ଜାଣିଲେ ସୁଦ୍ଧା ଚନ୍ଦ୍ର ସୂର୍ଯ୍ୟ ଅଛନ୍ତି, ସେହିପରି ତୁମ୍ଭେ ଜାଣି ନ ପାରିଲେ ହେଁ ବଳିଷ୍ଠ ବୀରମାନେ ଅଛନ୍ତି ।

ବିଭ୍ରାଜି ପରଶୁରାମ ଶ୍ରୀରାମ ଭେଟିଲା ।
ବିବାଦୀ ତାହାଙ୍କୁ ସେହୁ ସେ କାଳେ ଦିଶିଲା ।ଯେ ।୪୧।
ବିଷମ ସମସ୍ୟା ଦେବା ପୂରଣ ଏଠାରେ ।
ବିଦିତ ଖଣ୍ଡେନ୍ଦୁ କିବା ପୂର୍ଣ୍ଣେନ୍ଦୁ ଅଗରେ ଯେ ।୪୨।
ବିଧୁ ଅବତାର ଦୁହିଙ୍କର ସେହିପରି ।
ବିନ୍ୟସ୍ତ ଦ୍ୱିତୀୟା ଆଗେ ପଛେ ରାକା କରି ଯେ ।୪୩।
ବୋଇଲେ ରଘୁନନ୍ଦନ ଅହେ ବିପ୍ରବର ।
ବାହୁଜ ରୂପରେ କିମ୍ପା ଆଇଲ ଏଠାର ଯେ ।୪୪।
ବ୍ୟାଜ ଏ ଶଙ୍କର ଚାପେ କୁଠାରେ ତ ବଳ ।
ବୃତ୍ତି କରୁଛ ସମିଧ ବନ୍ୟରୁ କି କହ ହେ ?

---

୪୩ଶ ପଦ—ବିଧୁ—ଚନ୍ଦ୍ର, ବିଷ୍ଣୁ । ରାକା— ପୂର୍ଣ୍ଣିମା ତିଥି ।
୪୪ଶ ପଦ —ବାହୁଜ—କ୍ଷତ୍ରିୟ ।
୪୫ଶ ପଦ—ବ୍ୟାଜ—ଛଳ, କପଟ । ସମିଧ—କାଠ ।

---

୪୧ଶ ପଦ—ଦୀପ୍ତିମନ୍ତ ହୋଇ ପରଶୁରାମ ଶ୍ରୀରାମଙ୍କୁ ଭେଟିଲେ । ସେ ସମୟରେ ସେହି ଏକା ତାହାଙ୍କର ବିବାଦୀ ହେବାର ଦେଖାଗଲା । ( ବିଷ୍ଣୁ ବିଷ୍ଣୁଙ୍କର ବିବାଦୀ ହେଲେ ।)

୪୨ଶ ପଦ—ଏଠାରେ ବିଷମ ସମସ୍ୟା ପୂରଣ ହେଲା । ପୂର୍ଣ୍ଣଚନ୍ଦ୍ର ଆଗରେ ଖଣ୍ଡଚନ୍ଦ୍ର ପ୍ରକାଶିତ ହେଲା କି ? ( ରାମଚନ୍ଦ୍ର ପୂର୍ଣ୍ଣାବତାର ଓ ପରଶୁରାମ ଅଂଶାବତାର, ତେଣୁ ରାମଚନ୍ଦ୍ର ପୂର୍ଣ୍ଣଚନ୍ଦ୍ର ଓ ପରଶୁରାମ ଖଣ୍ଡଚନ୍ଦ୍ର ) ।

୪୩ଶ ପଦ—ବିଷ୍ଣୁ ଓ ଚନ୍ଦ୍ର ଦୁହିଙ୍କର ଅବତାର ଏକାପରି ହୋଇଅଛି । ଆଗ ଦ୍ୱିତୀୟା ଚନ୍ଦ୍ର, ଦେଖାଦେଇ ପଛେ ପୂର୍ଣ୍ଣଚନ୍ଦ୍ର ପ୍ରକାଶିତ ହେଲାପରି ଆଗ ଅଂଶାବତାର ପରଶୁରାମ ଜାତ ପରେ ପୂର୍ଣ୍ଣାବତାର ରାମଚନ୍ଦ୍ର ଜନ୍ମ ଗ୍ରହଣ କଲେ ।

୪୪ଶ ପଦ—ପରଶୁରାମଙ୍କୁ ସମ୍ମୁଖରେ ଦେଖି ରାମଚନ୍ଦ୍ର କହିଲେ, "ଅହେ ଦ୍ୱିଜ ଶ୍ରେଷ୍ଠ ! କ୍ଷତ୍ରିୟ ରୂପରେ କାହିଁକି ଏଠାକୁ ଆସିଲ ?" (ଅର୍ଥାତ୍ ତୁମ୍ଭେ ତ କ୍ଷତ୍ରିୟ ନୁହଁ ) ।

୪୫ଶ ପଦ—ପରଶୁରାମ କୁଠାର ଧରିଥିବାର ଦେଖି ବକ୍ରୋକ୍ତି କରି ରାମ କହିଲେ, "ତୁମ୍ଭର କ୍ଷତ୍ରିୟ ବୃତ୍ତି ମଧ୍ୟ ଛଳ ପୂର୍ଣ୍ଣ । ତୁମ୍ଭେ ଶଙ୍କର ଧନୁ କୁରାଢ଼ୀ ଗୋଟିଏ ତ ବହୁଅଛ । ହୋମ କାଷ୍ଠ ବିକ୍ରୟ କରି ଜୀବିକା ଚଳାଅ କି ? ସତ କଥା କହ ।"

ବିଷ୍ଟର କରକ ପାଣି ବହିବାକୁ ଦେବା ।
ବ୍ରହ୍ମଣ୍ୟ ! ଅମ୍ଭେ ତୁମ୍ଭଙ୍କୁ ପୂଜନ କରିବା ହେ ।୪୬।
ବାଲ୍ମୀକ ଖଣ୍ଡ ବୃତ୍ତିକ ଅଶ୍ରେ କରିଥିଲେ ।
ବନ୍ଦ୍ୟ ଜଗତେ ସେ ସାଧୁ ଦର୍ଶନେ ହୋଇଲେ ଯେ ।୪୭।
ବଗୃର ଏମନ୍ତ ଅପେକ୍ଷିଲେ ଭଲ କଥା ।
ବ୍ୟଥା ଇବ ରୈଣୁକେୟ ବୋଇଲେ ଏ ବୃଥା ଯେ ।୪୮।
ବନେ ପଶି ସ୍ତ୍ରୀଏ ତାଡ଼କା ନାମେ ହାଣି ।
ବହୁତ କାଳରୁ ଥୁଆ ଧନୁ ଭାଙ୍ଗି ପୁଣି ଯେ ।୪୯।
ବୀରତ୍ୱ ପ୍ରକାଶୁଅଛୁ ମୋର ଧନୁ ଧର ।
ବଳହି କି ଅରମ୍ଭିବା ଦାଶରଥି ଠାର ଯେ ।୫୦।

---

୪୬ଶ ପଦ—ବିଷ୍ଟର - କୁଶାସନ । କରକ—କମଣ୍ଡଳୁ ।
୪୭ଶ ପଦ—ବନ୍ଦ୍ୟ—ପୂଜ୍ୟ— ।
୪୮ଶ ପଦ—ରୈଣୁକେୟ—ପରଶୁରାମ ।

---

୪୬ଶ ପଦ—"ହେ ବ୍ରହ୍ମନ୍ ! ଅମ୍ଭେ ତୁମ୍ଭଙ୍କୁ କୁଶ, କମଣ୍ଡଳୁ, ତମ୍ବା ପାଣି ବହନ କରିବାକୁ ଦେବା; ତୁମ୍ଭେ ଏ ତୁବଡ଼ୀ ବହିବା ଛାଡ଼ । ଅମ୍ଭେ ତୁମ୍ଭଙ୍କୁ ବ୍ରାହ୍ମଣ ରୂପେ ପୂଜା କରିବା ।"

୪୭ଶ ଓ ୪୮ଶ ପଦ—ପୂର୍ବେ ବାଲ୍ମୀକ ଖଣ୍ଡବୃତ୍ତିକ ଆଶ୍ରୟ କରିଥିଲେ । ସେ ପରେ ସାଧୁଙ୍କ ଦର୍ଶନରେ ସଂସାରରେ ପୂଜନୀୟ ହେଲେ । ତୁମ୍ଭେ ଯଦି ସେହିପରି ଆଶା କରି ଅର୍ଥାତ୍ ଆମ୍ଭ ଦର୍ଶନରେ ପୂଜନୀୟ ହେବ ବୋଲି ଇଚ୍ଛା କରି ଆସିଥାଅ, ତେବେ ଭଲ କଥା । "ରାମଙ୍କ ବକ୍ରୋକ୍ତି ଶୁଣି ରେଣୁକା ପୁତ୍ର ପରଶୁରାମ ଦୁଃଖ ଲଭି କହିଲେ, "ସେ ସବୁ ବୃଥା କଥା ।"

୪୯ ଓ ୫୦ତମ ପଦ —"ବନରେ ପଶି ତାଡ଼କା ନାମକ ଗୋଟିଏ ସ୍ତ୍ରୀକୁ ହାଣି, ପୁଣି ବହୁ ଦିନୁ ଥୁଆ ହୋଇଥିବା ପୋକଖିଆ ଓ ଅସାର ଧନୁ ଭାଙ୍ଗି ବୀରପଣିଆ ପ୍ରକାଶ କରୁଅଛୁ । ଏବେ ମୋର ଧନୁକୁ ଧାରଣ କର । ତୁ ତ ଦଶରଥର ପୁତ୍ର; ତୋ ସହିତ କି ଯୁଦ୍ଧ କଳହ ଆରମ୍ଭ କରିବା ? (ମୋର ଦିଗ୍ବିଜୟ ସମୟରେ ଦଶରଥ ରାଣୀମାନଙ୍କ ପଣତ ଉହାଡ଼ରେ ଲୁଚିଥିଲେ, ମୁଁ ତାଙ୍କୁ ଖାତର କରେ ନାହିଁ, ତୁ ତ ତାଙ୍କ ପୁଅ, ତୋତେ ବା ପଚାରେ କିଏ ?) ଅନ୍ୟାର୍ଥ:—ତୁ ତ ଦାଶରଥି ଅର୍ଥାତ କୈବର୍ତ୍ତ ଶ୍ରେଷ୍ଠ ତୋ ସହିତ ବିବାଦ କରିବା ଅଶୋଭନୀୟ ।

ବାମକର ବଢ଼ାଇଲେ ରାମ ଶୁଣି କରି
ଟଢ଼ାଇ ଦେଇଁ ସେ ଧନୁ ବସ୍ତୁ ତେଜହରି ଯେ । ୫୧ ।
ବିମନା ଜାନକୀ ଯେ ସପତ୍ନୀ ଭୟୁ ଗୁଣି ।
ବିଭଞ୍ଜାଇ ଋଷି ଏ ତ ପୁଣି ଗୁପେ ଆଣି ଯେ । ୫୨ ।
ବୋଧିଲେ ବକ୍ଷଶ୍ରୀ କାନ୍ତ କର୍ଣ୍ଣପାଶେ କହି ।
ବଳ ଜପେ ବିବାହଭାର୍ଯ୍ୟା ଏ ନୋହେ ସଖି ଗୋ । ୫୩ ।
ବସିବା ଠାବରେ ଗୁଣ ଦେଇ ସନ୍ଧି ଶର ।
ବିନ୍ଧିବା କାହିଁକି ବୋଲି ପଚାରିଲେ ବୀର ଯେ । ୫୪ ।
ବୋଲେ ପରଶୁରାମ ମୋ ପାପଭାର ଛେଦ ।
ବିଚ୍ଛେଦିଲେ ରାମଚନ୍ଦ୍ର ହେଲେ ପ୍ରମୋଦ ଯେ । ୫୫ ।

---

୫୧ଶତ୍ ପଦ—ରାମ ପର୍ଶୁରାମଙ୍କ ବଚନ ଶୁଣି ବାମକର ବଢ଼ାଇଲେ । ପର୍ଶୁରାମ ଧନୁ ବଢ଼ାଇ ଦେବାରୁ ସେ ଧନୁ ସହିତ ତାଙ୍କର ବସ୍ତୁ ତେଜକୁ ହରଣ କରି ନେଲେ ।

୫୨ଶତ୍ ପଦ—ଏହା ଦେଖି ଜାନକୀ ତାଙ୍କର ଆଉ ଏକ ସଉତୁଣୀ ହେବା ଆଶଙ୍କାରେ ଦୁଃଖିତ ହୋଇ ଭାବିଲେ, 'ଜନକ ଋଷିଙ୍କର ଗୋଟିଏ ଧନୁ ଭଙ୍ଗି ରାମଚନ୍ଦ୍ର ମୋତେ ବିଭା କଲେ । ପୁଣି ଆଉ ଏକ ଋଷି ଗୋଟିଏ ଧନୁ ଆଣି ଭଙ୍ଗାଉ ଅଛନ୍ତି, ତାଙ୍କ ଝିଅଙ୍କୁ ନିଶ୍ଚୟ ବିବାହ ହେବେ ।'

୫୩ଶତ୍ ପଦ—ସୀତାଙ୍କର ମନ ଦୁଃଖ ଜାଣି ପାରି ରାମଚନ୍ଦ୍ର ପ୍ରିୟାର କାନରେ ଏହା କହି ବୋଧକଲେ, "ହେ ସଖି ! ଏ ଧନୁଭଙ୍ଗ ବିବାହ ପାଇଁ ନୁହେ । ଏହାଦ୍ୱାରା ଏ ଋଷି ଆମ୍ଭର ବଳ ପରୀକ୍ଷା କରୁଅଛନ୍ତି । ତୁମ୍ଭେ ଦୁଃଖିତ ହେବାର କାରଣ କିଛି ନାହିଁ ।"

୫୪ଶତ୍ ପଦ—ବୀର ରାମ ରାମଚନ୍ଦ୍ର ବସିବା ଅବସ୍ଥାରେ ଧନୁରେ ଗୁଣ ଦେଇ, ତହିଁରେ ଶର ସନ୍ଧାନ କରି ପର୍ଶୁରାମଙ୍କୁ ପଚାରିଲେ, 'କାହାକୁ ବିନ୍ଧିବା କହ ।'' (ଏହାଦ୍ୱାରା ପର୍ଶୁରାମଙ୍କର ଦର୍ପ ଚୂର୍ଣ୍ଣ ଓ ରାମଚନ୍ଦ୍ରଙ୍କର ବୀରତ୍ୱ ପ୍ରକାଶ, ଉଭୟ ସୂଚିତ ହେଲା ) ।

୫୫ଶତ୍ ପଦ—ରାମଙ୍କର ବଚନ ଶୁଣି ପର୍ଶୁରାମ ନମ୍ର ହୋଇ କହିଲେ, "ମୋର ପାପଭାରକୁ ଛେଦନ କର ।" ରାମଚନ୍ଦ୍ର ତାଙ୍କର ପାପଭାରକୁ ଶର ଦ୍ୱାରା ଖଣ୍ଡନ କଲେ । ପର୍ଶୁରାମ ଆନନ୍ଦ ହେଲେ ।

ବାହୁଡ଼ନ୍ତେ ପ୍ରଦକ୍ଷିଣ କରି ଦେବବୃନ୍ଦି ।
ବାଜିଲ ବିବିଧ ବାଦ୍ୟ ବିଜେ କୃପାନିଧି ଯେ । ୫୬ ।
ବଳଗଣ୍ଡି ଠାରେ ରହି ଯଥା ଜଗନ୍ନାଥ ।
ବିଜେ ପୁଣି ଜନକ ସନ୍ତୋଷେ ଚଳି ରଥ ଯେ । ୫୭ ।
ବିସ୍ତାରିତ ଜୟ ଶବ୍ଦ ହେଲା ଦଣ୍ଡଦଗ ।
ବଡ଼ ଦେଉଳ ସାକେତେ ହେଲେ ପରବେଶ ଯେ । ୫୮ ।
ବର୍ଣ୍ଣିତବ୍ୟ ବେନି ମହୋତ୍ସବ ଅବଲୋକ ।
ବୃନ୍ଦାରକେ ଏହା ନିବେଦନରେ ନିବେଦ ଯେ । ୫୯ ।
ବଚନ ନାହିଁ ଯହିଁର ଉପମା ତାକୁ ସେ ।
ବଇକୁଣ୍ଠ ମର୍ତ୍ତ୍ୟ ସେହି ପୁରେ ବିଳସେ ଯେ । ୬୦ ।

---

୫୬ଶତ ପଦ—ବୈଷ୍ଣବଧନୁ ଧରିବା ସମର୍ଥ ହେବାରୁ ପଶୁରାମ ରାମଚନ୍ଦ୍ରଙ୍କୁ ସ୍ୱୟଂ ବିଷ୍ଣୁ ବୋଲି ଜାଣି ପାରି, ତାଙ୍କୁ ପ୍ରଦକ୍ଷିଣ କରି ବାହୁଡ଼ି ଗଲେ । ତତ୍ପରେ ନାନା ପ୍ରକାର ବାଦ୍ୟ ବାଜିଲା, କୃପାନିଧି ରାମ ବିଜେ କଲେ ।

୫୭ଶତ ପଦ—ଯେପରି ଜଗନ୍ନାଥ ବଳଗଣ୍ଡି ଠାରେ ରହି ଲୋକମାନଙ୍କର ସନ୍ତୋଷ ବିଧାନ କରି ପରେ ରଥ ଚଳାଇ ବିଜେ କରନ୍ତି, ସେହିପରି ରାମଚନ୍ଦ୍ର କିଛି ସମୟ ରହି ପଶୁରାମଙ୍କୁ ଜିଣିବାଦ୍ୱାରା ଜନକ ଦଶରଥଙ୍କୁ ସନ୍ତୋଷ ପ୍ରଦାନ କରି ପରେ ରଥ ଚଳାଇ ଗଲେ ।

୫୮ଶତ ପଦ—ଜୟଧ୍ୱନି ଦଣ୍ଡଦଗରେ ବିସ୍ତାରିତ ହେଲା । ବଡ଼ ଦେଉଳ ସଦୃଶ ଅଯୋଧ୍ୟା ନଗରୀରେ ରାମଚନ୍ଦ୍ର ପ୍ରବେଶ ହେଲେ । ( ବାହୁଡ଼ା ସମୟରେ ଜୟଶବ୍ଦ ଦ୍ୱାରା ଦଣ୍ଡଦଗ ପୂର୍ଣ୍ଣ କରି ଜଗନ୍ନାଥ ବଡ଼ ଦେଉଳରେ ପ୍ରବେଶ କରନ୍ତି । ସେହିପରି ରାମଚନ୍ଦ୍ର ଅଯୋଧ୍ୟା ନଗରୀରେ ଜୟ କୋଳାହଳ ମଧ୍ୟରେ ପ୍ରବେଶ କଲେ ।

୫୯ତମ ପଦ—ଦେବନଗରେ ଏହି ଦୁଇ ମହୋତ୍ସବ [ ଜଗନ୍ନାଥଙ୍କ ବାହୁଡ଼ା ମହୋତ୍ସବ ଓ ରାମଚନ୍ଦ୍ରଙ୍କ ବିବାହ ମହୋତ୍ସବ ] ଦେବତାମାନେ ଓ ଶ୍ରେଷ୍ଠ ଲୋକମାନେ ବର୍ଣ୍ଣନ କରୁ ଅଛନ୍ତି । ଅତଏବ ଏ ଦୁଇ ମହୋତ୍ସବର ସେ ସମାନତା ଅଛି—ଏହା ନିବେଦିତ ହେଉଅଛି ।

୬୦ତମ ପଦ—ଭଗବାନ ରାମଚନ୍ଦ୍ର ଯେଉଁ ପୁରରେ ବିହାର କରନ୍ତି, ସେହି ମର୍ତ୍ତ୍ୟ ବୈକୁଣ୍ଠ ରୂପ ଅଯୋଧ୍ୟାର ଶୋଭାକୁ କଥାରେ ବର୍ଣ୍ଣନା କରି ହେବ ନାହିଁ, ତାର ଉପମା କେବଳ ସେହି । ( ଯେଉଁ ମର୍ତ୍ତ୍ୟବୈକୁଣ୍ଠ ନୀଳାଚଳରେ ଜଗନ୍ନାଥ ବିହାର କରନ୍ତି, ତାର ଉପମା କେବଳ ସେହି । ତାର ଶୋଭା ବର୍ଣ୍ଣନା କରି ହେବ ନାହିଁ ) ।

ବଳେ ଛଡ଼ାଇ ଚନ୍ଦ୍ର ସେ ସୁଧାକର ପଦ ।
ବିଶଦ ହାସେ ଉଡ଼ାଇ ରଖେ ବିଧୁପଦ ଯେ ।୨୧।
ବସ୍ତୁ ପଦ ସମ୍ପଦ ଲୁଟିଣ ରତ୍ନମୟେ ।
ବଢ଼ାଇ ପତାକା କର ଅଣିଷର ପ୍ରାପ୍ୟେ ଯେ ।୨୨।
ବାଟିକା ଯହିଁର କରେ ନନ୍ଦନ ନିନ୍ଦନ ।
ବଲ୍ଲିକା କୁସୁମ ପାରିଜାତର ବନ୍ଦନ ଯେ ।୨୩।
ବାଦେ ଜିଣେ କଳ୍ପଦ୍ରୁମ ଯହିଁ ବୃକ୍ଷପନ୍ତି ।
ଅଦୃଶ୍ୟ ଫଳ ସେ ଦୃଶ୍ୟ ଫଳେ ଏ ନମନ୍ତି ସେ ।୨୪।
ବହୁଳ କ୍ଳେଶେ ଲଭ୍ୟ ସେ ଏ ଲଭ୍ୟ ଅକ୍ଳେଶେ ।
ବିଦ୍ୟାଧରୁ ବଳି ପିକ ସପ୍ତସ୍ୱର ଘୋଷେ ଯେ ।୨୫।

---

୨୧ତମ ପଦ—ସୁଧାକର—ଚନ୍ଦ୍ର । ବିଶଦ—ଶୁଭ୍ର । ବିଧୁପଦ—ଆକାଶ ।

୨୩ତମ ପଦ—ବାଟିକା—ପୁଷ୍ପୋଦ୍ୟାନ । ବଲ୍ଲିକା—ଲତାସମୂହ ।

---

୨୧ତମ ପଦ—ସେ ନଗରର ଅଟ୍ଟାଳିକାଗୁଡ଼ିକ ବଳାତ୍କାରରେ ଚନ୍ଦ୍ରଠାରୁ ସୁଧାକର ପଦକୁ ଛଡ଼ାଇ ଆଣିଅଛି ଏବଂ ଶୁଭ୍ର ହାସରେ ଚନ୍ଦ୍ରକୁ ଉଡ଼ାଇ ନେଇ ଆକାଶ ମଧ୍ୟରେ ରଖିଦେଇଛି । ( ଅଟ୍ଟାଳିକାଗୁଡ଼ିକ ଚୂନଲିପା ହୋଇଥିବାରୁ ଶୁଭ୍ରତରେ ଚନ୍ଦ୍ରର ଜ୍ୟୋତ୍ସ୍ନାକୁ ବଳି ପଡ଼ିଅଛି ) ।

୨୨ତମ ପଦ—ସେ ପୁର ପତାକା ରୂପ କରକୁ ବଢ଼ାଇ ଯେପରି ସ୍ୱର୍ଗର ସମସ୍ତ ସମ୍ପତ୍ତି ଲୁଟି କରି ଆଣି ନିଜେ ରତ୍ନପୂର୍ଣ୍ଣା ହୋଇଅଛି । ( ପୁରସ୍ଥ ଅଟ୍ଟାଳିକାମାନଙ୍କର ପତାକା ବହୁତ ଉଚ୍ଚରେ ଉଡ଼ୁଅଛି ଓ ସେ ପୁରରେ ବହୁତ ଧନରତ୍ନ ରହିଅଛି ) ।

୨୩ତମ ପଦ—ସେହି ପୁରର ପୁଷ୍ପଉଦ୍ୟାନ ସ୍ୱର୍ଗର ନନ୍ଦନବନକୁ ନିନ୍ଦା କରେ ଓ ତନ୍ମଧ୍ୟସ୍ଥ ଲତାମାନଙ୍କରେ ଫୁଟିଥିବା ପୁଷ୍ପ ପାରିଜାତ କୁସୁମ ଦ୍ୱାରା ବନ୍ଦିତ ହୋଇଅଛି, ( ଲତାପୁଷ୍ପ ପାରିଜାତ ଅପେକ୍ଷା ସୌରଭଯୁକ୍ତ ଓ ସୁନ୍ଦର ) ।

୨୪ତମ ପଦ—ସେହି ପୁରର ବୃକ୍ଷସମୂହ ବିବାଦରେ କଳ୍ପଦ୍ରୁମକୁ ଜୟ କରି ଅଛି, କାରଣ କଳ୍ପଦ୍ରୁମସବୁ ଅଦୃଶ୍ୟ ଫଳ ଦ୍ୱାରା ଶୋଭିତ ହୁଅନ୍ତି, ମାତ୍ର ସେହି ପୁରର ବୃକ୍ଷମାନେ ଦେଖା ଯାଉଥିବା ଫଳରେ ଅନତ ହୋଇ ପଡ଼ନ୍ତି ।

୨୫ତମ ପଦ—ସେହି କଳ୍ପଦ୍ରୁମର ଫଳ ବହୁ କଷ୍ଟରେ ମିଳିଥାଏ, ମାତ୍ର ଏ ନଗରସ୍ଥ ବୃକ୍ଷମାନଙ୍କର ଫଳ ଅକ୍ଳେଶରେ ପ୍ରାପ୍ତ ହୁଏ । ନନ୍ଦନବନରେ ବିଦ୍ୟାଧରମାନେ ସପ୍ତସ୍ୱରରେ ଗାନ କରୁଥାନ୍ତି, ମାତ୍ର ଏ ନଗରସ୍ଥ ଉଦ୍ୟାନରେ ତାଙ୍କଠାରୁ ଶ୍ରେଷ୍ଠ କୋକିଳମାନେ ସପ୍ତସ୍ୱରରେ ଗାନ କରନ୍ତି ।

ବୀଣା ତେଜିବେ ନାରଦ ଶୁକପଢ଼ା ଶୁଣି ।
ବାହ୍ୟବନ୍ତ ତହିଁ ସୀତା ସେନ ରଘୁମଣି ଯେ ।୨୬।
ବକ୍ଷ ଅଣୀକ ଅଣନ୍ତ ଜାନୁରେ ବସାଇ ।
ବାଙ୍କ ଗଙ୍ଗା ଛବି ଲଭେ କୋଳାକୋଳି ହୋଇ ଯେ ।୨୭।
ବକ୍ଷେ ହସ୍ତ କଣ୍ଠରେ କରାଇଁ ଶୟନ ।
ବିଦ୍ୟୁତବେଳି ଉଜ୍ଜ୍ୱଳ ଜଳଦ ଲଞ୍ଛନ ଯେ ।୨୮।
ବନ୍ଧୁକ ଭୃଙ୍ଗ ବନ୍ଧୁତା ଓଷ୍ଠପାନବେଳେ ।
ବୃଷଧ୍ୱଜ ଦୂଜନ ଜିରଜେ ଜର ଦେଲେ ଯେ ।୨୯।

---

୨୮ତମ ପଦ—ବକ୍ଷେ—ବକ୍ଷରେ ।

୨୯ତମ ପଦ—ବନ୍ଧୁକ—ବନ୍ଧୁଲି ପୁଷ୍ପ । ଭୃଙ୍ଗ—ଭ୍ରମର । ବୃଷଧ୍ୱଜ—ଶିବ ।

---

୨୬ତମ ପଦ—ଯେଉଁ ପୁରର ଉଟିମ୍ବରେ ଥିବା ଶୁକମାନଙ୍କର ପଢ଼ା ଶୁଣିଲେ ନାରଦ ବୀଣାକୁ ତ୍ୟାଗ କରିବେ, ଏହିପରି ଯେ ଅଯୋଧ୍ୟାପୁରୀ ( ସର୍ବ ଶୋଭାର ଆଧାର ) ତହିଁରେ ରାମଚନ୍ଦ୍ର ସୀତାଙ୍କୁ ସେନ ବିହାର କରନ୍ତି ।

୨୭ତମ—ରାମଚନ୍ଦ୍ର ସୀତାଙ୍କୁ କୋଳରେ ବସାଇବା ସମୟରେ, ବିଷ୍ଣୁ ଲକ୍ଷ୍ମୀଙ୍କୁ କୋଳରେ ଧାରଣ କରି ଯେପରି ଶୋଭା ପାଆନ୍ତି, ସେହିପରି ଶୋଭିବନ୍ତ ଦେଖାଗଲେ । ପୁଣି ରାମ ସୀତା ପରସ୍ପର ଆଲିଙ୍ଗନ କରିବା ସମୟରେ ସମୁଦ୍ର ଗଙ୍ଗାଙ୍କୁ ଆଲିଙ୍ଗନ କରି ଯେପରି ଦେଖାଯାନ୍ତି, ସେହି ଶୋଭା ଧାରଣ କଲେ ।

୨୮ତମ ପଦ—ରାମଚନ୍ଦ୍ର ଉତ୍ସୁକ ଭାବରେ ବକ୍ଷସ୍ଥଳରେ ସୀତାଙ୍କୁ ଶୟନ କରାଇଲାବେଳେ, ମେଘରେ ଖେଳି କରୁଥିବା ବିଦ୍ୟୁତର ଉଜ୍ଜ୍ୱଳତାକୁ ଲଞ୍ଛନ କଲେ । ( ମେଘ କକ୍ଷରେ ବିଜୁଳି ଚମକିଲେ ଯେପରି ସୁନ୍ଦର ଦିଶେ—ତା ଅପେକ୍ଷା ବେଶି ସୁନ୍ଦର ଦିଶିଲେ ) ।

୨୯ତମ ପଦ—ରାମଚନ୍ଦ୍ର ସୀତାଙ୍କର ଅଧର ଚୁମ୍ବନ କଲାବେଳେ ଭୃଙ୍ଗ ବନ୍ଧୁଲି ଫୁଲରୁ ମଧୁପାନ କରିବା ଶୋଭାକୁ ଧାରଣ କଲେ । ସୀତାଙ୍କ ସ୍ତନ ଦ୍ୱୟରେ ହସ୍ତ ଦେଲାବେଳେ ଶମ୍ଭୁଙ୍କୁ ପୂଜା କଲାପ୍ରାୟ ବୋଧ ହେଲା ।

ବନଜେ ନୀଳଉତ୍ପଳ ପବନେ କି ଢଳେ ।
ବିମଳ ଗଣ୍ଡ ଚୁମ୍ବନେ ସେ ସ୍ୱାନ୍ତ ବହୁଲେ ଯେ ।୭୦।
ବାହୁ କରେ ଧରି ହେଳେଁ ଆରାମପ୍ରବେଶୀ ।
ବାରିଦେ ପଶିଲା ପ୍ରାୟେ ଏକ ତାରା ଶଶୀ ଯେ ।୭୧।
ବାଗ୍‌ଦେବୀ ଗଣେଶ ଦ୍ୱନ୍ଦ୍ୱରେ ବାଦକୃତ ।
ବ୍ରତତିରେ ଯୁକ୍ତ ପ୍ରତିଉକ୍ତିରେ କେମନ୍ତ ଯେ ।୭୨।
ବିଧାତା ବଶରେ ଦିତ୍ତୁଦିବସ ପ୍ରବେଶ ।
ବନେ ମୃଗୟା ଗମନ ଜନକ ଆଦେଶ ଯେ ।୭୩।
ବଣା ସେ ଖଡ୍‌ଗୀନ ହୋଇ ଖଡ୍‌ଗୀନ ସଙ୍ଗତ ।
ବନ୍ଧାଇଲେ ଗୃଧ୍ର ଶବରେଶ ସଙ୍ଗେ ମିତ ଯେ ।୭୪।

---

୭୦ ତମ ପଦ—ନୀଳୋତ୍ପଳ—ନୀଳକଇଁ । ବନଜ—ପଦ୍ମ ।
୭୪ ତମ ପଦ—ଖଡ୍‌ଗୀତ—ଗଣ୍ଡାପଶୁ, ଖଡ୍‌ଗଧାରୀ ।

---

୭୦ ତମ ପଦ—ନୀଳକଇଁ ପବନ ଯୋଗେ ପଦ୍ମ ଉପରେ ଢଳିଲେ ଯେପରି ଦେଖାଯାଏ ରାମଚନ୍ଦ୍ର ସୀତାଙ୍କର ନିର୍ମଳ ଗଣ୍ଡ ଚୁମ୍ବିଲାବେଳେ ସେହିପରି ଦେଖାଗଲେ । ( ରାମଚନ୍ଦ୍ର ନୀଳବର୍ଣ୍ଣ ହେତୁ ନୀଳକଇଁ ସଦୃଶ, ସୀତା ପଦ୍ମ ସଦୃଶ ) ।

୭୧ ତମ ପଦ—ସୀତାଙ୍କ ବାହୁ ହସ୍ତରେ ଧରି ରାମଚନ୍ଦ୍ର ଉପବନ ମଧ୍ୟରେ ପ୍ରବେଶ କଲାବେଳେ, ଚନ୍ଦ୍ର ଗୋଟିଏ ତାରକା ସହିତ ମେଘ ମଧ୍ୟରେ ପଶିଲା ପ୍ରାୟ ଦେଖାଗଲେ ।

୭୨ ତମ ପଦ—ଉପବନର ଲତା ବୃକ୍ଷରେ ବସି ରାମ ଓ ସୀତା ଉକ୍ତି ପ୍ରତ୍ୟୁକ୍ତି କଲାବେଳେ, ଗଣେଶ ଓ ସରସ୍ୱତୀ ତାଙ୍କ ଦ୍ୱନ୍ଦ୍ୱରେ ବିବାଦ କଲା ପ୍ରାୟ ବୋଧ ହେଲା ।

୭୩ ତମ ପଦ—ଏହିପରି କିଛିଦିନ ପରେ ଦୈବଯୋଗରେ [illegible] ପ୍ରବେଶ ହୁଅନ୍ତେ, ରାମଚନ୍ଦ୍ର ପିତାଙ୍କ ଆଦେଶ ପାଇ ମୃଗୟା କରିବାକୁ ବନକୁ ଗମନ କଲେ ।

୭୪ତମ ପଦ—ଖଡ୍‌ଗଧାରୀ ରାମଚନ୍ଦ୍ର ଖଡ୍‌ଗୀନ ଅର୍ଥାତ୍ ଗଣ୍ଡା [illegible] ହୋଇ ଅରଣ୍ୟ ମଧ୍ୟରୁ ଗଲେ ଓ ଗୃଧ୍ର ନାମକ ଶବରରାଜ ସହିତ ମିତ୍ରତା [illegible] ହେଲେ ।

ବାହୁଡ଼ି ନଗରେ ଲଭେ ଲାଭେଶ ହୋଇ ସେ ।
ବିଦେହ ଗମନ କଲେ ଜନକ ଏ ଶେଷେ ଯେ ।୭୫।
ବିଲୋକନ ଅର୍ଥରେ ଭରତ ଶତ୍ରୁଘନ ।
ବପ୍ତା ବୈଦେହୀର ଲଭଲେ ତୋଷମନ ଯେ ।୭୬।
ବାସିତା-ସୀତାଙ୍କୁ ସେଣ ନିକାଳ ବନ୍ଧନ ।
ବିଦରଭ ବଗନ୍ତରେ କଳକଣ୍ଠ ସ୍ୱନ ଯେ ।୭୭।
ବିରୋଚନ ସ୍ତୁଖଦାନ ଦରଶନ କରେ ।
ବନେ ବେଲକୃତ ଲଭ ଅଦର ଲଣାରେ ଯେ ।୭୮।

---

୭୬ତମ ପଦ—ବପ୍ତା—ପିତା ।

୭୭ତମ ପଦ—ବାସିତା—ସୌରଭାନ୍ୱିତା, ଗୃହିଣୀ, ବସ୍ତ୍ରାଚ୍ଛାଦିତା । କଳକଣ୍ଠ—କୋକିଳ, ମୟୂର ବା ହଂସ, କପୋତ ।

୭୮ତମ ପଦ—ବିରୋଚନ—ଚନ୍ଦ୍ର, ସୂର୍ଯ୍ୟ, ଅଗ୍ନି । ବନ—ଜଳ, ଅରଣ୍ୟ, ଗୃହ । ଲଣା—ହ୍ଳାଦଣୀ, ସ୍ୱର୍ଣ୍ଣ, ରେଖାଳି ।

---

୭୫ତମ ପଦ—ରାମଚନ୍ଦ୍ର ମୃଗାଦି ପଶୁଙ୍କଠାରେ ଯମ ପ୍ରାୟ ନାଶକର୍ତ୍ତା ହୋଇ ସ୍ୱରକୁ ବାହୁଡ଼ିଲେ । ଶ୍ରାଦ୍ଧବିଧି ଶେଷ ହୁଅନ୍ତେ ମିଥିଳାରାଜ ଜନକ (ଶ୍ରାଦ୍ଧ ପାଇଁ ନିମନ୍ତ୍ରିତ ହୋଇ ଆସିଥିବା) ସ୍ୱଦେଶ ବିଦେହକୁ ଗମନ କଲେ । କିମ୍ବା ରାମଚନ୍ଦ୍ର ଯମ ସଦୃଶ ପର୍ବତରେ ବିହାର କରି ଜୀବମାନଙ୍କୁ 'ବିଦେହ' ବିନାଶ କରି ସେଠାରୁ ବାହୁଡ଼ି ଆସନ୍ତେ 'ଜନକ' ପିତା ଦଶରଥ ଶ୍ରାଦ୍ଧ କର୍ମ ସମାପନ କଲେ ।

୭୬ତମ ପଦ—ବୈଦେହୀଙ୍କ ପିତା ଭରତ ଶତ୍ରୁଘ୍ନ ଦୁହିଁଙ୍କି ଦେଖିବା ନିମିତ୍ତ ଆନନ୍ଦ ମନରେ ନିଜ ନଗରକୁ ନେଇ ଗଲେ ।

୭୭ତମ ପଦ—'କଳକଣ୍ଠ' କୋକିଳ ସ୍ୱନ ସର୍ବତ୍ରରେ ଶୁଭୁଥିଲା, ଏଥିରୁ ଜଣା ପଡ଼ୁଥିଲା 'କଳକଣ୍ଠ' ହଂସମାନଙ୍କର ସ୍ୱନରେ ସର୍ବ ଦିଗ ପୂର୍ଣ୍ଣ ହୋଇଥିଲା, ଏଥିରୁ ଜଣା ପଡ଼ୁଥିଲା ଏବଂ କଳକଣ୍ଠ ପାରାମାନଙ୍କ ସ୍ୱନରେ ଉପବନ ପୂର୍ଣ୍ଣ ହୋଇଥିଲା, ଏଥିରୁ ଜଣା ଶୀତକାଳ;—ଏହି ସମୟରେ ରାମଚନ୍ଦ୍ର ଶୋଭନାଙ୍ଗୀ ସୀତାଙ୍କ ସହିତ ବିହାର କଲେ ।

୭୮ତମ ପଦ—'ବିରୋଚନ' ଚନ୍ଦ୍ର ଦର୍ଶନରେ ସର୍ବଙ୍କୁ ସୁଖ ଦାନ କରେ, ଏଥିରୁ ଜଣା ଯାଉଛି, 'ବିରୋଚନ' ସୂର୍ଯ୍ୟ ଦର୍ଶନ ସମୟରେ

ହେମନ୍ତ ଶୀତର କାଳ ହିମ ତହେଁ ଉଷ୍ଣ ।
ବସନ୍ତ ଗ୍ରୀଷମେ ଅତି ଶୀତଳ ତ ବର୍ଣ୍ଣ ସେ ।୭୯।
ବରଷା ଶରଦେ ତୁଲ ମତ ଥାଇ ବହି ।
ଏତଦ୍ଧିହେମାଙ୍ଗୀ ଜଗସାରବାସୀ ସେହି ଯେ ।୮୦।
ବ୍ୟାପାର ଋତୁମାନଙ୍କେ ଲେଖା ନ ବସଇ ।
ସମୋହିତ ଋତୁରେ କେବଳ ତାଙ୍କୁ ଦେଇ ସେ ।୮୧।

---

୭୯ତମ ପଦ—ବର୍ଣ୍ଣ—ଦେହ ।
୮୦ତମ ପଦ—ଜଗ—ଶୀତକାଳ । ବର୍ଣ୍ଣ—ଦେହ ।
୮୧ତମ ପଦ—ଋତୁରେ—ପୁଷ୍ପବତୀ ସମୟରେ ।

---

ଯେଉଁ ସୁଖ, ତାକୁ ଦାନ ଅର୍ଥାତ୍ ଛେଦନ କରେ ( ଆକାଶ ମେଘାଚ୍ଛନ୍ନ ଥିବାରୁ ସୂର୍ଯ୍ୟ ଦର୍ଶନ ହୁଏ ନାହିଁ ) ଏପରି ଯେ ବର୍ଷାକାଳ ଏବଂ 'ବୈଶ୍ୱାନର' ଅଗ୍ନି ଦର୍ଶନରେ ସୁଖ ପ୍ରାପ୍ତ ହୁଏ, ଏପରି ଯେ ଶୀତକାଳ; ପୁଣି ଉପବନରେ କେଳି କରିବାକୁ ମାନସ ହୁଏ, ନଗରେ ହୁଲସ୍ୱରର ଆଦର କରାଏ, ଏପରି ଯେ ବସନ୍ତକାଳ; ଜଳରେ ନୌକାରେ ବିହାର କରିବାକୁ ଇଚ୍ଛା ହୁଏ, ସ୍ୱେଦରେ ସୁଖ ପ୍ରଦାନ କରେ, ଏପରି ଯେ ବର୍ଷାକାଳ; ପୁଣି ଗୃହରେ କ୍ରୀଡା କରିବାକୁ ଇଚ୍ଛା କଲେ, 'ନଗରେ' ତୁଳା ଶେଯରେ ଆଦର କରାଏ, ଏପରି ଯେ ଶୀତକାଳ;—ଏହି ଋତୁକାଳ ସମସ୍ତଙ୍କୁ, ସୀତାଙ୍କ ସହିତ ବିହାର କଲେ ।

୭୯ ଓ ୮୦ତମ ପଦ—ସୀତାଙ୍କ ଦେହରୁ ହେମନ୍ତ ଓ ଶୀତ ଏ ଦୁଇକାଳରେ ଉଷ୍ଣ ଜାତ ହୁଏ; ବସନ୍ତ ଓ ଗ୍ରୀଷ୍ମ ଏ ଦୁଇକାଳରେ ତାଙ୍କ ଦେହ ଅତି ଶୀତଳ ହୋଇଥାଏ ଏବଂ ବର୍ଷା ଓ ଶରତ୍ ଏ ଦୁଇକାଳରେ ତୁଲ୍ୟମତ ଯଥା—ଉଷ୍ଣ ଓ ଶୀତଳ ହୋଇଥାଏ । କାରଣ, ସେ ଚମ୍ପକବର୍ଣ୍ଣା (ଏହାଦ୍ୱାରା ଉଷ୍ଣତ୍ୱ ସୂଚିତ ହେଲା) ପୁଣି କର୍ପୂର ଓ ଚନ୍ଦନ ସୁବାସିତା (ଏହାଦ୍ୱାରା ଶୀତଳତ୍ୱ ପ୍ରକାଶିତ ହେଲା) ଅଟନ୍ତି ।

୮୧ତମ ପଦ—ଏହିସବୁ କାରଣ ହେତୁ ସୀତାଙ୍କ ଯୋଗ୍ୟ ସମସ୍ତ ଋତୁମାନଙ୍କର ବ୍ୟାପାର—ଯେଉଁ ଋତୁରେ ଯାହାସବୁ କରିବାର, ତାହା ଲେଖିଲେ ନାହିଁ । କେବଳ ପୁଷ୍ପବତୀ ସମୟରେ ରତି ହେତୁ ଯାହା ସମସ୍ତଙ୍କ ବାଂଛିତ ହୋଇଥିଲେ ।

ବୀରବର ଉପଇନ୍ଦ୍ର ଭଞ୍ଜ କହେ ରସ ।
ବସ୍ତ୍ରାଣୀପଦେ ପଣ୍ଡିତେ ଏ ସ୍ଥାନରେ ରସ ହେ ।୮୨।

---

## ସପ୍ତଦଶ ଛାନ୍ଦ

### ରାଗ—ଧନାଶ୍ରୀ

ବସି ବଶିଷ୍ଠ ଜାବାଳି ବାମଦେବ କଶ୍ୟପ ସୁମନ୍ତ୍ର ଯୋଗେ ।
ବୋଲେ ଦଶରଥ ମୋର ମନୋରଥ ମଣ୍ଡାଇବ ରାଜଧାନୀ ।
ବୀରବୃନ୍ଦରେ ଇନ୍ଦ୍ର ।
ବସୁ ନୃପପଦେ ରାମଚନ୍ଦ୍ର ।୧।
ବ୍ରହ୍ମା ସର୍ଜନାରେ ବ୍ରହ୍ମାଣ୍ଡ କାହିଁଛି ଅଜ ମୋ ତନୟ ସର ।
ବାମେ ବାମଦେବ ଧନୁକୁ ଭାଙ୍ଗିଲ ବାମେ ଭୃଗୁପତି ହାର ।
ବସୁପତି ସମସ୍ତ ।
ବସୁଁ ସେବିବେ ସେବକ ମତ ।୨।

---

୮୨ତମ ପଦ—ବୀରବର ଉପେନ୍ଦ୍ର ଭଞ୍ଜ ବସ୍ତ୍ରାଣୀଙ୍କ ପଦରେ ଏ ରସ କହୁଛେ । ହେ ପଣ୍ଡିତମାନେ ! ଏ ସ୍ଥାନରେ ମନ୍ତ୍ର ।

---

## ସପ୍ତଦଶ ଛାନ୍ଦ

୧ମ ପଦ—ବଶିଷ୍ଠ, ଜାବାଳି, ବାମଦେବ, କଶ୍ୟପ, ସୁମନ୍ତ୍ର, ଏମାନଙ୍କ ଯୋଗ ସଙ୍ଗରେ ବସି ଦଶରଥ କହିଲେ, "ମୋର ଇଚ୍ଛା, ବୀରମାନଙ୍କ ମଧ୍ୟରେ ଶ୍ରେଷ୍ଠ ରାମଚନ୍ଦ୍ର ସିଂହାସନର ବସୁ, ସେଥିପାଇଁ ନଗର ମଣ୍ଡାଇବା ।"

୨ୟ ପଦ—"ସଂସାରମଧ୍ୟରେ ବିଧାତା ସର୍ଜନା ଭିତରେ ମୋ ପୁତ୍ର ସମାନରେ ଆଉ କଏ ଅଛି କି ? (ଅଉ କେହି ନାହିଁ) ସେ ବାମହସ୍ତରେ ଶିବଧନୁ ଭାଙ୍ଗିଲେ, ପରଶୁରାମ ଦୁର୍ବଳ ହୋଇ ତା ପାଖରେ ହାରିଗଲେ । ନୃପତି ହେବେ କହିଲେ, ସମସ୍ତ ରାଜା ସେବକ ହୋଇ ତାଙ୍କୁ ସେବା କରିବେ ।"

ବୋଇଲେ ସୁମନ୍ତ ସେ ପୁଣି ଏମନ୍ତ ସୁଝିବେଟି ଚିହ୍ନଲଣ ।
ବଧକାରକ ଅନରଣ୍ୟ ରାଜାର ବଧରେ ହେବେ ନିପୁଣ ।
ବେଧାବଧାନ ପୁଣି ।
ଦୈବେସ୍ମତବଣୀ ତୋଷ ଶୁଣି । ୩ ।
ବୁଝିଲେ ଲଗ୍ନ ମଗ୍ନ ହୋଇ ସୁଝଲେ ମଙ୍ଗଳ ସ୍ଥାନରେ ତହୁଁ ।
ବୃହସ୍ପତ ରାଶି ଅଷ୍ଟମେ ବଳାରୀ ନୃପତ ହୋଇବେ କେହୁ ।
ବାମଦେବ ଉତ୍ତର ॥
ବକ୍ତା ବଶିଷ୍ଠ ହେବେ ଈଶ୍ୱର । ୪ ।
ବଢେ କି ପୃଚ୍ଛି ରାଜା ଧୀର୍ଯ୍ୟେ କହିଲେ ହେବେ ଦିବ୍ୟଭୂତ ଭୋଗୀ ।
ବଇଶ୍ରବଣଙ୍କୁ ଜିଣିବେ ପୁଷ୍ପକ ମଣ୍ଡନେ ହୋଇ ସରାଗୀ ।
ବୋଲୁଅଛୁଁ ଏମନ୍ତ ।
ବୋଧ ନରଦେବ ଦେବଗଣନ୍ତ । ୫ ।

---

୫ମ ପଦ—ଦିବ୍ୟଭୂତଭୋଗୀ—ଐଶ୍ୱର୍ଯ୍ୟଭୋଗୀ, ଉତ୍ସଭୋଗୀ । ବଇଶ୍ରବଣ—କୁବେର, ରାବଣ । ପୁଷ୍ପକ—ଦେବଯାନ ବିଶେଷ, ରତ୍ନକଙ୍କଣ । ନରଦେବ—ରାଜା । ଦେବଗଣ—ଦେବତାମାନଙ୍କର ଗଣ ।

---

୩ୟ ପଦ—ସୁମନ୍ତ ଏହା ଶୁଣି କହିଲେ, "ତୁମ୍ଭ ପୂର୍ବ ପୁରୁଷ ଅନରଣ୍ୟ ରାଜାର ବଧକାରକ ରାବଣକୁ ମାରିବା ପାଇଁ ସେ [ପୁଣି] ସମର୍ଥ ହେବେ । ଏହାପରି ସେ ପରିଚ୍ଛଣ ସୁଝିବେଟି କି ? ଏ ତ ବିଧାତାର ବିଧାନ ।" ଏହା ଶୁଣି ଦଶରଥ ତୋଷ ହେଲେ ।

୪ର୍ଥ ପଦ—ସେ ସ୍ଥାନରେ ବସି ବଶିଷ୍ଠାଦି ଋଷିମାନେ ନବକ୍ଷ ଗଣନରେ ଶୁଭ ଲଗ୍ନ ବୁଝିଲେ । ମଙ୍ଗଳ କ୍ୟାସ୍ତରେ ଥିବାର ଦେଖିଲେ ( ମଙ୍ଗଳକୁ ଗଣି ଦେଖି ସୁଝିଲେ ) । ରାଶିର ଅଷ୍ଟମରେ ବୃହସ୍ପତ ହେଲ୍ଲୀ ହୋଇ ରହିଅଛନ୍ତି । ସେ ରାଜା କପରି ହେବେ ? ( ରାମଚନ୍ଦ୍ରଙ୍କର ଧନୁରାଶି, ତାହାର ଅଷ୍ଟମ କର୍କଟ ରାଶି, ତହିଁରେ ବୃହସ୍ପତ ଅଛନ୍ତି । ତେଣୁ ଜନ୍ମ ବୃହସ୍ପତ ହେଲା, ଏ ଲଗ୍ନରେ ରାଜା ହୋଇ ପାରିବେ ନାହିଁ ) । ବାମଦେବ ଏପରି କହନ୍ତେ, ବଶିଷ୍ଠ ହେପରେ ଉତ୍ତର ଦେଲେ, "ସେ ରାଜା ନ ହୋଇ 'ଈଶ୍ୱର' ଜଗତ ଜନ୍ତୁ ଧାତୀ ଓ ବିଭୂତ ଭୁକ୍ତି ହେବେ ।"

୫ମ ପଦ—ବାମଦେବ ଓ ବଶିଷ୍ଠାଦି ଏପରି କଥାବାର୍ତ୍ତା ହୁଅନ୍ତେ ରାଜା ଦଶରଥ ପୃଚ୍ଛା କଲେ, "କଥା କଣ ?" ବଶିଷ୍ଠ ଉଚ୍ଚ ସ୍ୱରରେ କହିଲେ, "ରାମଚନ୍ଦ୍ର ପ୍ରଭୁ ହୋଇ ଦିବ୍ୟ ସମସ୍ତ ଭୋଗ କରିବେ । ସମ୍ପଦରେ କୁବେରକୁ ଜିଣିବେ, ରତ୍ନକଙ୍କଣ ଭୂଷଣରେ ସ୍ନେହୀ ହେବେ ।" ଏହା ଦଶରଥ ବୁଝିଲେ,

ବାଞ୍ଛା ସାର ମାତାମାନେ ହରଷିତା ସୀତା ତୋଷ ନୁହେ କହି ।
ବିଧୁ ଦର୍ଶନେ ଯଥା ସିନ୍ଧୁ କଲ୍ଲୋଳ ଅଧିକରେ କେଳି ବହି ।
ବେଶ ଅଭିଷେକର ।
ବେଳ ଦେଖି ହେବା ସେ ପ୍ରକାର । ୬ ।
ଅଶ୍ୱରନ୍ତ ତହୁଁ ଗଜନ୍ତ ମହନ୍ତ ରଥୀ ପଦାତିଏ ମିଶି ।
ବସିଲେ ରାମ ସିଂହାସନେ ଦ୍ୱିଗୁଣେ ଅମ୍ଭ ଗୁଣେ ଯିବେ ଦିଶି ।
ଭବେଦ ଏ ପ୍ରକାର ।
ବଡ଼ ସୁଖ ଜନ୍ମୁଛି ଅମ୍ଭର । ୭ ।
ବନ୍ଦୀ କେବଳ ଇତ୍ୟାଦି ଭଟ୍ଟ ମେଳ ଆଉ ମାଗି ନ ଜାଣିବା ।
ବ୍ରାହ୍ମଣଙ୍କର ଆକୁଳ ଛୁଟିଲା ଇଚ୍ଛିତେ ଯାଚିବ ଦେବା ।
ରାଜା ହେଲେ ଦେବତା ।
ଅଗ୍ରବଳେ ହୋଇବା ପୂଜିତା । ୮ ।

---

୮ମ ପଦ—ବନ୍ଦୀ—ସ୍ତୁତିପାଠକ ବା ଭାଟ । ମେଳକ—ମେଳାମାନେ ।

---

ମାଗଧ ବନ୍ଦୀଙ୍କ କଥାର ମର୍ମ ଅନ୍ୟ ପ୍ରକାର, ଯଥା—ରାମଚନ୍ଦ୍ର ମହାଦେବଙ୍କ ସମାନ ଉତ୍ତମ ଭକ୍ତ ବୋଲି ହେବେ, ରାବଣକୁ ଜିଣିବେ, ପୁଷ୍ପକଯାନରେ ସଗଣ ସହିତ ଭ୍ରମିବେ । ବନ୍ଦୀଙ୍କ ବାକ୍ୟ ଶୁଣି ପ୍ରଥମ ଅର୍ଥ ବୁଝି ନରପତି ଦଶରଥ ସନ୍ତୁଷ୍ଟ ହେଲେ ଓ ଦ୍ୱିତୀୟ ଅର୍ଥ ବୁଝିପାରି ଦେବତାମାନେ ଆନନ୍ଦିତ ହେଲେ ।

୬ଷ୍ଠ ପଦ—'ରାମଚନ୍ଦ୍ରଙ୍କର ଅଭିଷେକ ହେବ'—ଏହା ଜାଣିପାରି ମାତାମାନେ ଆନନ୍ଦିତା ହେଲେ । ସୀତାଙ୍କର ହର୍ଷ କଥାରେ କହି ହେବ ନାହିଁ । 'ଚନ୍ଦ୍ର ଦର୍ଶନରେ ଯେପରି ସମୁଦ୍ରର ଲହରୀ ଅଧିକ ଉଚ୍ଚ ଉଠେ, ସେହିପରି ରାମଙ୍କ ଅଭିଷେକ ବେଳର ବେଶ ଦେଖି ଆମେ ଉଲ୍ଲସିତା ହେବା' ମାତାମାନେ ଏହା ଭାବିଲେ ।

୭ମ ପଦ—ସେହି ନଗରୀର ଅଶ୍ୱାରୋହୀ, ଗଜାରୋହୀ, ରଥାରୋହୀ, ପଦାତିକ ସୈନ୍ୟମାନେ ମିଶି ବିଚାର କଲେ, "ରାମ ସିଂହାସନରେ ବସିଲେ ଆମ୍ଭର ଗୁଣ ଦ୍ୱିଗୁଣ ଦେଖାଯିବ; (ରାମ ଅତ୍ୟନ୍ତ ଗୁଣଗ୍ରାହକ ହେତୁ ଆମ୍ଭ ଗୁଣକୁ ଭଲରୂପେ ଚିହ୍ନି ପାରିବେ ।" ପ୍ରଜାମାନେ ବିଚାର କଲେ "ଆମ୍ଭର ବଡ଼ ଆନନ୍ଦ ହେଉଛି । ( ରାମ ରାଜା ହେଲେ ଆମ୍ଭଙ୍କୁ ସୁଖରେ ପାଳିବେ ) ।"

୮ମ ପଦ—ଭାଟ, ମେଳା ପ୍ରଭୃତି ବନ୍ଦୀମାନେ ମେଳ ହୋଇ ବିଚାର କଲେ "ଆମ୍ଭେମାନେ ତ ଆଉ ମାଗି ଜାଣିବା ନାହିଁ; ( ରାମଚନ୍ଦ୍ର ମହାଦାତା, ସେ ଯାଚିକରି ଧନ ଦେବେ) । ବ୍ରାହ୍ମଣମାନେ ଧନ ଅଭାବକୁ ଯାଞ୍ଚ କରି ନ ପାରି ଯେଉଁ ନୈରାଶ୍ୟ ଭାବ ହୃଦୟରେ ରଖିଥିଲେ, ସେ ବ୍ୟାକୁଳତା ଛୁଟିଗଲା । ସେମାନେ

ବନ୍ଧରେ ଗାଣ୍ଠିଲେ ସୁଲଭେ ଧେନୁ ଯେ ହେବେ ଅମ୍ଭ କ୍ଷୀରବତୀ ।
ବାସବାଦି ଦେବେ ଅମ୍ଭ ବାଧା ଏବେ ନାଶ ନୋହୁଲା ଏ ମତି ।
ବ୍ରହ୍ମା ସମୀପେ ଗଲେ ।
ବିଭ୍ରମ ସେ କୈକେୟୀଙ୍କି କଲେ । ୯ ।
ବପଣୀରେ ଶୁଣି ରାମ ରଜା ବାଣୀ ବାହୁଡ଼େ ମନ୍ଥରା ଭୃସା ।
ବାର ଭର ପଚ୍ଛ ନଯୁନଯୁଗଳେ ଗଳେ ପ୍ରାଣଥିଲା ପସା ।
ବୃକ୍ଷ କାଟିଲା ପ୍ରାୟେ ।
ବିପତିତ ତା ଅଗ୍ରତେ ହୁଏ । ୧୦ ।
ବୋଲେ କେକୟ ଏ କି ଭରତଜନନୀ ! ବସୁଅଛୁ ତତୁଁ ଜବ ।
ବଡ଼ ସୁଭାଗୀ ବୋଲାଉ ରେ ଶୋଭାଙ୍ଗି ଭାଙ୍ଗିଗଲା ତୋ ଗରବ ।
ବେର କି ହୁଏ ତୋର ।
ବିଷ ପ୍ରାୟେ ବାରେ ମୋ ଶରୀର । ୧୧ ।

---

୯ମ ପଦ—ବଲ୍ଲବେ—ଗୋପାଳମାନେ ।
୧୦ମ ପଦ—ବିପଣୀ—ବଜାର ।
୧୧ଶ ପଦ—ଜବ—ଶୀଘ୍ର ! ବେର—ଶରୀର, ଦେହ ।

---

ଭାବିଲେ, 'ଅମେ ପ୍ରଚୁର ଧନ ପାଇ ଅଳଙ୍କରେ ଯାଙ୍କାଳ ହୋଇ ପାରିବା (ଯାଗ କରି ପାରିବା)' ; ଅପୂଜ୍ୟ ଦେବତାସବୁ ବିଚାର କଲେ, "ଅମ୍ଭେ ପୂଜା ପାଇବା" (ଏଥିଦ୍ୱାରା ରାମଚନ୍ଦ୍ର ଦାନପ୍ରିୟ, ବ୍ରାହ୍ମଣପ୍ରିୟ ଓ ଦେବପ୍ରିୟ ବୋଲି ଜଣାଗଲା )।

୯ମ ପଦ—ଗୋପାଳମାନେ ଭାବିଲେ, "ଆମର ଗାଈମାନେ ବହୁତ ଦୁଧ ଦେବେ ।" ବାସବାଦି ଦେବତାମାନେ ଭାବିଲେ, "ଆମର ଶତ୍ରୁ ରାବଣ ତ ଆଉ ବିନାଶ ହେବ ନାହିଁ ।" ଏହା ଭାବି ସେମାନେ ବ୍ରହ୍ମାଙ୍କ ପାଖକୁ ଗଲେ । ବ୍ରହ୍ମା ବାସବଙ୍କଠାରୁ ସମ୍ବାଦ ଶୁଣି କୈକେୟୀଙ୍କ ଚିତ୍ତ ବିଭ୍ରମ କଲେ ।

୧୦ମ ପଦ—ରାମ ରାଜା ହେବା ସମ୍ବାଦ ବଜାରରେ ଶୁଣି ମନ୍ଥରା ଶୀଘ୍ର ଫେରି ଆସିଲା । ନେତ୍ର ଦ୍ୱୟରେ ସ୍ରୋତବଳ ଦୃଷ୍ଟିକରି କଣ୍ଠଗତପ୍ରାଣ ହୋଇ ଆସି କୈକେୟୀଙ୍କ ଅଗ୍ରତରେ ଛିନ୍ନବୃକ୍ଷ ପ୍ରାୟ ପତିତ ହେଲା ।

୧୧ଶ ପଦ—ଭରତ ଜନନୀ କୈକେୟୀ ତାକୁ ଦେଖି ଉଠାଇ କହିଲେ, "କଥା କଣ ?" ଏହାଶୁଣି ସେ ବେଗରେ କହିଲା, "ରେ ଶୋଭାଙ୍ଗି ତୁ ସବୁ ସଂସାର ବଡ଼ ସୁଅଗୀ ବୋଲାଉ, ତୋର ସେ ଗର୍ବ (ସେ ସୁଅଗୀପଣ) ଏବେ ଭାଙ୍ଗିଗଲା । ତୋ ଦେହ କଅଣ ହୁଏ, ତା ତୁ ଜାଣୁ, ମାତ୍ର ମୋ ଦେହ ବିଷ ଖାଇଲା ପରି ବାରି ହେଉଛି ।"

ବିବେକୀ ଧାର୍ମିକ ଶୋଭା ପ୍ରଶଂସାରେ ସଂସାରେ ଜଣେ ନ ଗଣ ।
ହାଟୁଲି ଯାହାର ବଜ୍ରରୁ ଅଧିକ କି ବର୍ଣ୍ଣିବା ତାର ବାଣ ।
ଈଦୃଶ ସେ ନନ୍ଦନ ।
ବୋଲିବୁ ତା ବୟସରେ ସାନ । ୧୨ ।
ବଳିଷ୍ଠ ଦାନବେ ପୂର୍ବଦେବ କହି ଅନୁଜ ଦେବତା ଇନ୍ଦ୍ର ।
ବୋଲାଇ ସପତ୍ନୀ ଯେ ଯାହାର ପ୍ରୀତି କେହି ହୋଇନାହିଁ ସାନ୍ଦ୍ର ।
ବସା କର ନୃପତି ।
ବୁଦ୍ଧି ଥିଲେ ବୋଧି କ୍ଷିତିପତି । ୧୩ ।
ବିହ୍ୱଳିତ ମତି କୃତବେ ଅହଲ୍ୟା ଦୂଷଣ ଲଭିଲା ପର ।
ବଦନ ମାଡ଼ି ଶୟନ ସଦନରେ ନୟନରେ ପୂରି ବାରି ।
ବିଜେ ନୃପ ଏକାଳେ ।
ବନ୍ଧୁ ବନ୍ଧୁ ବୋଲିଣ ଡାକଲେ । ୧୪ ।

---

୧୩ଶ ପଦ—ପୂର୍ବଦେବ—ଅସୁରମାନେ । ଅନୁଜ—କନିଷ୍ଠ । କ୍ଷିତିପତି—ରାଜା ।

୧୪ଶ ପଦ—କୃତବ—କପଟ । ଦୂଷଣ—ନିନ୍ଦା ।

---

୧୨ଶ ପଦ:—"ତୋର ପୁତ୍ର ବିଚାରବନ୍ତ, ଧାର୍ମିକ ଅଟେ । ତା ସମାନ ସୁନ୍ଦର ଏ ସଂସାରରେ ଆଉ ଜଣେ ଅଛି ବୋଲି ମୁଁ ଗଣନା କରୁନାହିଁ । ଯାହାର ହାଟୁଲି ବଜ୍ରରୁ ବେଶି ଟାଣ, ତାର ଶରକଥା ବା କଣ ବର୍ଣ୍ଣନା କରିବ ? ସେ ପୁତ୍ର ତୁହିକି ଲଭିଅଛୁ । ତୁ ତା କହିବୁ ସେ ବୟସରେ ସାନ ଅଟେ; ମାତ୍ର ତାହା ଦୋଷଯୁକ୍ତ ନୁହେ ।"

୧୩ଶ ପଦ—"ବଳିଷ୍ଠ ଦୈତ୍ୟମାନେ ଅଗ୍ରଜ ହେଲେହେଁ ସାନଭାଇ ଦେବତା ଇନ୍ଦ୍ର ଅର୍ଥାତ୍ ସ୍ୱର୍ଗର ରାଜା ହେଲେ । ସେହିପରି ତୋ ପୁତ୍ର ସାନ ହେଲେ ମଧ୍ୟ ରାଜା ହୋଇ ପାରେ । ସଉତୁଣୀମାନେ କେବେହେଲେ ସ୍ନେହର ଗାଢ଼ ବନ୍ଧନରେ ଏକତ୍ର ରହି ପାରନ୍ତି ନାହିଁ । ତୋର ବୁଦ୍ଧି ଥିଲେ ତୁ ରାଜାଙ୍କୁ ମନାଇ ପୁତ୍ରକୁ ସିଂହାସନରେ ବସା ।"

୧୪ଶ ପଦ—ଗୌତମ ପତ୍ନୀ ଅହଲ୍ୟା ଇନ୍ଦ୍ରର ମନ୍ତ୍ରଣାରେ ପଡ଼ି ବିଚଳିତ ମତି ହୋଇ ନିନ୍ଦା ପାଇଲା ପ୍ରାୟ, କେକେୟୀଙ୍କ ବୁଦ୍ଧି ମନ୍ଥରାର ମନ୍ତ୍ରଣାରେ ବିଚଳିତ ହେଲା । (ପରେ ସେ ନିନ୍ଦା ପାଇବେ) । ସେ ଗୃହ ମଧ୍ୟରେ ଲୋତକପୂର୍ଣ୍ଣ ଚକ୍ଷୁରେ ମୁହଁ ତଳେ ମାଡ଼ି କ୍ରନ୍ଦନ କଲେ । ସେହି ସମୟରେ ନୃପତି ବିଜେ କରି 'ବନ୍ଧୁରେ ବନ୍ଧୁ' ବୋଲି ଡାକିଲେ ।

ବିଷବୈଦ୍ୟ ପଦ ନ ମାନିଲା ପ୍ରାୟେ ସର୍ପିଣୀ ଭୋଗିନୀ ସେହୁ ।
ବନ୍ଦି ସେନେହରେ ପଲଙ୍କ ପ୍ରକାରେ ପାଶେ ପରବେଶ ନହୁଁ ।
ବୋଧେ ଚିବୁକ ଧରି ।
ବିନା ଦୋଷେ ପ୍ରଣୟିନି ଗୋରି । ୧୫ ।
ବିପ୍ରେ ଇନ୍ଧନଦେବୀ ମନ୍ତ୍ରେ ପୂଜିଲେ ସେ ଯଥା ନ କହେ କଥା ।
ବଇଦ ହୋଇଲା ପ୍ରାୟେ ସ୍ୱପନରେ ବସି ନ ଟେକିଲା ମଥା ।
ବୋଲେ ମୋତେ ତୁ କହ ।
ବନ୍ଧୁ ଦେବି ମୁଁ ମାଗିବୁ ଯାହା । ୧୬ ।
ବୋଲନ୍ତି ନରପତି ବୋଇଲା ଯୁବତୀ ତିନିବାର ସତ୍ୟ କଲେ ।
ବୃତ୍ରାସୁର ତାହା କରି ନିଜ ଶିରେ ଯଥା ଦେଲା ହର ବୋଲେ ।

---

୧୫ଶ ପଦ—ବିଷବୈଦ୍ୟ—ଗୁଣିଆ । ଭୋଗିନୀ—ସର୍ପିଣୀ, ପଟ୍ଟମହିଷୀ-ବ୍ୟତୀତ ରାଜାଙ୍କର ଅନ୍ୟ ସ୍ତ୍ରୀ । ବନ୍ଦି—ନଇଁ ।
୧୬ଶ ପଦ—ଇନ୍ଧନଦେବୀ—କାଷ୍ଠ ନିର୍ମିତ ଦେବୀ ।

---

୧୫ଶ ପଦ—'ଭୋଗିନୀ' ସର୍ପିଣୀ ସାପୁଆ ଗୁଣିଆର ମନ୍ତ୍ରପଦକୁ ନ ଶୁଣିଲା ପରି ସେ 'ଭୋଗିନୀ' ରାଜରାଣୀ କୈକେୟୀ ଦଶରଥଙ୍କ ଡାକ ଶୁଣିଲେ ନାହିଁ । ଅନ୍ତିକୁ ସ୍ନେହ କରି ପଲଙ୍କ ଉହ୍ନେରେ ପ୍ରବେଶ କଲା ପ୍ରାୟେ ରାଜା ତାଙ୍କ ପାଖରେ ପ୍ରବେଶ ହେଲେ । (ପତଙ୍ଗ ଅଗ୍ନିରେ ପଡ଼ି ବିନାଶ ହୁଏ, ରାଜା ଉକ୍ତପଂତରେ ସେହି କୈକେୟୀ ଯୋଗୁ ବିନାଶ ହେବେ) । ପରେ କୈକେୟୀଙ୍କ ଚିବୁକ ଧରି କହିଲେ, "ହେ ପ୍ରଣୟିନି ! ହେ ଗୋରି ! ବିନା ଦୋଷରେ ଏ ଅଭିମାନ କାହିଁକି ?" (ଅଥବା ହେ ଗୋରି ! ଦୋଷ କରିଥିଲେ ମଧ୍ୟ ତୁ ପ୍ରଣୟିନୀ ହୋଇଛୁ, ଏବେ ବିନା ଦୋଷରେ ତୁମ୍ଭେ ହୋଇଛୁ କାହିଁକି ?)

୧୬ଶ ପଦ—ବ୍ରାହ୍ମଣମାନେ କାଷ୍ଠର ଦେବୀ ପ୍ରତିମାକୁ ମନ୍ତ୍ର ପଢ଼ି ପୂଜା କଲେ, ସେ ଯେପରି କଥା କହେ ନାହିଁ ଏବଂ ସ୍ୱପ୍ନରେ ବର ଦାନ କରିଥାଏ, ସେହିପରି କୈକେୟୀ ଉଠି ବସିଲେ, ମାତ୍ର ମସ୍ତକ ଟେକିଲେ ନାହିଁ । ତାହା ଦେଖି ରାଜା କହିଲେ, "ରେ ବନ୍ଧୁ ! ଥରେ ମୋତେ ତୁ କହ । ତୁ ଯାହା ମାଗିବୁ ମୁଁ ତାହା ଦେବି ।"

୧୭ଶ ପଦ—ଦଶରଥ ଏପରି କହନ୍ତେ, ଯୁବତୀ କୈକେୟୀ କହିଲେ, "ସତ୍ୟକର ।" ନୃପତି ତିନିଥର ସତ୍ୟ କଲେ । ଯେପରି ହରଙ୍କ କଥା ମାନି ବୃତ୍ରାସୁର ଆପଣା ମସ୍ତକରେ ନିଜର କର ଦେଇ, (ବୃତ୍ରାସୁର ମହାଦେବଙ୍କଠାରୁ

ବଧି କଲେ ନୃପତି
ବଶ୍ୟମୋହନୀ ନାରୀଙ୍କ ପ୍ରୀତି । ୧୭ ।
ବାହୁଲି ରଥ ସ୍ତ୍ରିଶ୍ରୁ ହୋଇ ଶମ୍ବର ସମରେ ନାହିଁ କି ମନ ।
ବହୁଲ ସତ୍ୟ ସୂତ ହୋଇ ତୋଷିଲୁ ତୋ ସୁତ ହେବ ସ୍ୱଜନ ।
ବାଳ ବାଲିକା ଖେଳ ।
ବଚନରେ ତ ଅନ ତୁମ୍ଭ ବୋଲ । ୧୮ ।
ବସୁଧାପତି ପଦ ରାମେ ଉଚିତ ନୋହେ ସେ ଜାମାତା ତାର ।
ବନେ ହୁଅନ୍ତୁ ଧନ ଚଉଦବରଷପୂର୍ଣ୍ଣ ରଜା ହେଉ ମୋର ।
ବାମା ବଚନ ଶୁଣି ।
ବଜ୍ଜାନ ସେ ଜ୍ଞାନେ କହେ ବାଣୀ । ୧୯ ।

---

୧୮ଶ ପଦ—ସୂତ—ସାରଥି ।
୧୯ଶ ପଦ—ବସୁଧାପତିପଦ—ରାଜପଦ । ଜାମାତା—ଜ୍ୱାଇଁ । ବଜ୍ଜାନ
—ଜ୍ଞାନଶୂନ୍ୟ । ଜ୍ଞାନେ—ଅଜ୍ଞପରି ।

---

ବର ପାଇଥିଲା ଯେ, ସେ ଯାହା ମୁଣ୍ଡରେ ହାତ ଦେବ, ସେ ଭସ୍ମ ହୋଇଯିବ; ବିଷ୍ଣୁଙ୍କ କୌଶଳରେ ନିଜେ ନିଜ ମୁଣ୍ଡରେ ହାତ ଦେଇ ଭସ୍ମ ହୋଇଥିଲା ) କୈକେୟୀ ବୋଲରେ ଦଶରଥ ସେହିପରି କଲେ ( ନିଜେ ମରିବାର କାର୍ଯ୍ୟ କଲେ) ରମଣୀମାନଙ୍କ ପ୍ରୀତି ବଶ୍ୟମୋହନୀ ଅଟେ ।

୧୮ଶ ପଦ—ଦଶରଥ ସତ୍ୟ କରିବାରୁ କୈକେୟୀ କହିଲେ, "ସମ୍ବରାସୁରର ଯୁଦ୍ଧରେ ମୁଁ ସ୍ତ୍ରୀ ହୋଇ ସୁଦ୍ଧା ସୂତ ରୂପେ ତୁମ୍ଭର ରଥ ଚଳାଇଲି; ତା କଣ ମନେ ନାହିଁ ? ତୁମ୍ଭେ ସେତେବେଳେ ସତ୍ୟ କରିଥିଲ, ତୁ 'ସୂତ' ସାରଥି ହୋଇ ମତେ ସେ କହୁଅଛୁ, ତୋର 'ସୁତ' ପୁତ୍ର ରଜା ହେବ । ପିଲାଙ୍କର ଦୁଇଘର ଖେଳ ସମାନରେ ତୁମ୍ଭ ସତ୍ୟ ଅନ୍ୟଥା ହେଲା । ( ମୋ ପାଖରେ ସତ୍ୟ କରି ରାମଙ୍କୁ ରଜା କରୁଅଛ ।)"

୧୯ଶ ପଦ—"ତୁମ୍ଭେ ମହୀପତି ହେବା ରାମ ପକ୍ଷରେ ଉଚିତ ନୁହେ । କାରଣ ରାମ ପୃଥିବୀର ଜାମାତା (ସୀତା ପୃଥିବୀରୁ ଜାତ,—ଝିଅରି ହୋଇ ଶ୍ୱଶୁର ପଦ କିପରି ହେବ ?) । ସେ ଚଉଦ ବର୍ଷ ବନରେ ବନ କଟାଉ, ମୋର ପୁତ୍ର ରଜା ହେଉ ।" କୈକେୟୀଙ୍କର ଏହି ବଚନ ଶୁଣି ରଜା ଅଜ୍ଞାନ ହୋଇ ପଡ଼ିଲେ । ପରେ ଜ୍ଞାନ ଲଭି କହି କହିଲେ :—

ବିରେଚନ ନାସ୍ତି ଛଦ୍ମେ ହୋଇ ହରି ତା ଜୀବ ଯେମନ୍ତ ହରି ।
ତଥି ସ୍ପୃହ କରି ମୋର ସେହିରୂପେ ତୁହି ଥିଲୁ ଅବତରି ।
ବୋଲି ଏତେ ମଉନ ।
ବିଭୋଜନେ ହରିଲେ ସେ ଦିନ । ୨୦ ।
ବେଳାକୁ ନ ଲଙ୍ଘେ ସତ୍ୟେ ପାରାବାର ଯଥା ତାକୁ ନ ଲଙ୍ଘିଲା ।
ବିଷଭକ୍ଷଣେ ବିରୂପାକ୍ଷ ପ୍ରାୟେ ମୂକେ ସମ୍ମତ ଦର୍ଶିଲା ।
ବଡ଼ ସନ୍ତୋଷ ରାଣୀ ।
ବଞ୍ଚ ଶ୍ରୀରାମ ଡକାଇ ଆଣି । ୨୧ ।
ବଦିଲା ପ୍ରଥମେ ପିତାର ସତ୍ୟକୁ ରଖିବ କି ନାହିଁ ସାଧୁ ।
ବଂଶେ ଯାହାର ଭଗୀରଥ ସମ୍ଭବ ଉଦ୍ଧରିଲେ ପିତୃ ଦଗ୍ଧ ।
ବୋଲେ ରାମ ବଚନ ।
ବିଷୟ କି କର ଅବଧାନ । ୨୨ ।

---

୨୦ଶ ପଦ—ଛଦ୍ମେ—କପଟରେ । ସ୍ପୃହ—ଇଚ୍ଛା ବା କାମନା । ବିଭୋଜନେ—ଅନାହାରରେ ।

୨୧ଶ ପଦ—ପାରାବାର—ସମୁଦ୍ର । ବେଳା—ତଟଭୂମି । ବିରୂପାକ୍ଷ—ମହାଦେବ ।

---

୨୦ଶ ପଦ—"ଯେପରି ବିଷ୍ଣୁ କପଟରେ ବିରେଚନ ରାକ୍ଷସର ନାସ୍ତି ହୋଇ ତାର ପ୍ରାଣ ବିନାଶ କରିଥିଲେ, ସେହିପରି ତୁ ମୋର ମୃତ୍ୟୁର ସ୍ପୃହା କରି ଜନ୍ମ ହୋଇଥିଲୁ ।" ଏତେ କହି ସେ ମୌନ ହେଲେ । ସେ ଦିନ ଉପବାସରେ ରହିଲେ ।

୨୧ଶ ପଦ ସମୁଦ୍ର ଯେପରି ସତ୍ୟରେ କୂଳକୁ ଲଙ୍ଘେ ନାହିଁ, ସେହିପରି ରାଜା ସତ୍ୟକୁ ଲଙ୍ଘିଲେ ନାହିଁ । ମହାଦେବ ବିଷ ଭକ୍ଷଣ ସମୟରେ ମୌନ ହୋଇ ରହିଲା ପରି ( ମୌନ ରହିବାରୁ ବିଷ ଭକ୍ଷିବାକୁ ସମ୍ମତ ଥିବାର ପ୍ରକାଶ ପାଇଲା ) ଦଶରଥ ତୁନି ହୋଇ ରହିବାରୁ ତାଙ୍କର ସମ୍ମତ ପ୍ରକାଶ ପାଇଲା । ରାଣୀ ତାହା ଜାଣିପାରି ବଡ଼ ସନ୍ତୋଷ ହେଲେ ଏବଂ ଖଳ ରାମଚନ୍ଦ୍ରଙ୍କୁ ଡକାଇ ଆଣିଲେ ।

୨୨ଶ ପଦ—ରାମଚନ୍ଦ୍ର ଆସିବାରୁ କୈକେୟୀ ପ୍ରଥମରୁ କହିଲେ, "ହେ ସାଧୁ ! ତୁମ୍ଭେ ପିତାଙ୍କ ସତ୍ୟକୁ ରଖିବ କି ନାହିଁ ? ଯାହାର ବଂଶରେ ଭଗୀରଥ ଜାତ ହୋଇ ( କପିଳମୁନିଙ୍କ କୋପାନଳରେ ) ଦଗ୍ଧ ହୋଇଥିବା ପିତୃଲୋକଙ୍କୁ ଉଦ୍ଧରିଥିଲେ, ତୁମ୍ଭେ ସେହି ବଂଶରେ ଜନ୍ମ ହୋଇଅଛ ।" ଏହା ଶୁଣି ରାମ ଚକିତ କହିଲେ, "କଥା କିଅଛି ? ମୋତେ କୁହ ।"

ବନେ ତୁମ୍ଭେ ଯିବ ଭରତ ହୋଇବ କୋଶଳପତି କ୍ଷଣକେ ।
ବେଶକୁ ଇଙ୍ଗୁଦୀ ରୁଦ୍ରାକ୍ଷ ବିଭୂତି ଥୋଇଦେଲା ଅଣି ତକେ ।
ବାଳିଶା ନୟ ମନ୍ତୁରୀ ।
ବେଗେ ଶ୍ରୀରାମ ସମ୍ମତି କରି । ୧୩ ।
ବୈଦେହୀ ଲକ୍ଷ୍ମଣ ପ୍ରବେଶ ତକ୍ଷଣ ସଙ୍ଗେ ଯିବାକୁ ଆତୁରେ ।
ବଶିଷ୍ଠାଦି ପାନେ ପ୍ରବେଶ ହୋଇଣ ଦଶରଥଙ୍କୁ ପଚାରେ ।
ବିଭାବରୀ ପ୍ରାନ୍ତରେ ।
ବିଭୁ ହୁଅନ୍ତେ ପର ରାଜ୍ୟରେ । ୧୪ ।
ବିଭାକରକୁଳେ ନାସତ୍ୟ ହୋଇଲି ସତ୍ୟ କରିବାରେ ମୁହିଁ ।
ବିବେକ ମୋର କୈକେୟୀ ପୂର୍ବଜନ୍ମେ ପିଶାଚୀ ଥିଲା କି ହୋଇ ।
ବାକ୍ୟ ଯେମନ୍ତ ମୁଖରେ ।
ବୈଶ୍ୱାନରହିଁ ଜଳେ ତହିଁରେ । ୧୫ ।

---

୧୩ଶ ପଦ—କୋଶଳପତି—ଅଯୋଧ୍ୟାରାଜା । ଇଙ୍ଗୁଦୀ—ତୈଳପ୍ରସୂ ବୃକ୍ଷ ବିଶେଷ ।

୧୪ଶ ପଦ—ବିଭାବରୀ—ରାତି । ପ୍ରାନ୍ତରେ—ଶେଷରେ । ବିଭୁ—ରାଜା ।

୧୫ଶ ପଦ—ବିଭାକରକୁଳେ—ସୂର୍ଯ୍ୟବଂଶରେ । ନାସତ୍ୟ—ଅଶ୍ୱିନୀକୁମାର ଅର୍ଥାତ୍ ଘୋଡାମୁହାଁ ପୁଅ । ବୈଶ୍ୱାନର—ଅଗ୍ନି ।

---

୧୩ଶ ପଦ—ରାମଙ୍କ ପ୍ରଶ୍ନ ଶୁଣି କୈକେୟୀ ଉତ୍ତର ଦେଲେ, "ତୁମ୍ଭେ ବନକୁ ଯିବ, ଭରତ କୁଶଳରେ ଅଯୋଧ୍ୟାର ରାଜା ହେବ ।" ସେହି ସମୟରେ ପାପିଷ୍ଠା ମନ୍ଥରା ତପସ୍ୱୀ ବେଶ ହେବା ନିମିତ୍ତ ଇଙ୍ଗୁଦୀ ଓ ରୁଦ୍ରାକ୍ଷର ମାଳା, ଭସ୍ମ ଅଣି ତକେ ଥୋଇଦେଲା । ଶ୍ରୀରାମ ସମ୍ମତି ପ୍ରକାଶ କଲେ ଅର୍ଥାତ୍ ସେ ମାଳା ଓ ଭସ୍ମ ଗ୍ରହଣ କଲେ ।

୧୪ଶ ପଦ—ରାମଚନ୍ଦ୍ର ବନକୁ ଯିବା ଶୁଣି ସୀତା ଓ ଲକ୍ଷ୍ମଣ ବୁଝେହିଁ ତାଙ୍କ ସହିତ ବନକୁ ଯିବା ପାଇଁ ବ୍ୟାକୁଳ ଭାବରେ ସେଠାରେ ପ୍ରବେଶ କଲେ । ସେହି ସମୟରେ ବଶିଷ୍ଠାଦି ପାତ୍ରମାନେ ପଶିଆସି ଦଶରଥଙ୍କୁ ପଚାରିଲେ, "ରାତିର ଶେଷରେ ରାମ ରାଜ୍ୟରେ ପ୍ରଭୁ ହେବେ ପରା ?" ( ଏ ତପସ୍ୱୀ ବେଶ କାହିଁକି ହେଲେ ? )

୧୫ଶ ପଦ—ରାଜା ଉତ୍ତର ଦେଲେ, "ସୂର୍ଯ୍ୟବଂଶରେ ମୁଁ ସତ୍ୟ କରିବାରେ 'ଅଶ୍ୱିନୀକୁମାର' ଅର୍ଥାତ୍ ଘୋଡାମୁହାଁ ହେଲି ( କୁଳ ନାଶ କଲେ ଘୋଡାମୁହାଁ ପୁଅ ଜାତ ) । ମୋର ମନେ ହୁଏ, ପୂର୍ବ ଜନ୍ମରେ କୈକେୟୀ

ବହୁଶେ ଧୀରେ ରାଜା ଛିରେ କହିଲେ ଏ କଥା ପ୍ରମାଣ ହେବ ।
ବାହ୍ମଣବ୍ରତ ଫଳକ ଧର୍ମଦତ୍ତ ଦେବ ଦରଶନେ ଥିବ ।
ବଇକୁଣ୍ଠ ପଟ୍ଟମ ।
ବସନ୍ତରେ ଦେବୀ ହେଲେ କ୍ଷେମ । ୧୨ ।
ବଧୂର ପ୍ରାଣେ ଯହିଁ ଲଗ୍ନ ଅବେଶ ତହିଁ ସେ ତାହିଁ ନ ରସେ ।
ବହନ ଗହନଗାମୀ ହେଉ ରାମ ଶିଶୁପାଠ ପରି ଘୋଷେ ।
ବଳାଭୁକ ଯେସନ ।
ବନପ୍ରିୟମଧ୍ୟେ କରେ ସ୍ୱନ । ୧୩ ।
ବଂଶନଳୀରେ ରଖି ଟେଲଖି ବସନ ଦେଲେ ସୀତା ପାଇଁ ଆଣି ।
ବହିଲେ ସେ ପାଣ ଲକ୍ଷ୍ମଣ ଇକ୍ଷ୍ୱାକୁକୁଳର ଯେ ଚୂଡ଼ାମଣି ।

---

୧୨ଶ ପଦ—ବହୁଶେ—ପଣ୍ଡିତମାନେ ।

୧୩ଶ ପଦ—ଗହନଗାମୀ—ବନଗାମୀ । ବଳଭୁକ—କୁଆ । ବନପ୍ରିୟ—କୋକିଳ ।

---

ପିଶାଚୀ ହୋଇଥିଲ । ପିଶାଚୀ ମୁଖରୁ ଅଗ୍ନି ନିର୍ଗତ ହେଲା ପ୍ରାୟ କୈକେୟୀ ମୁଖରୁ ଯେତେ କଥା ବାହାରେ, ତହିଁରେ ଅଗ୍ନି ଜଳୁଅଛି । ( ସେ କଥା ଅଗ୍ନି ପ୍ରାୟ ଦଗ୍ଧ କରୁଅଛି ) ।"

୧୨ଶ ପଦ—ରାଜାଙ୍କ କଥା ଶୁଣି ପଣ୍ଡିତମାନେ (ବଶିଷ୍ଠାଦି ପାତ୍ରମାନେ) ଧୀର ଭାବରେ କହିଲେ, "ଏ ଯାହା କହିଲ, ତା ପ୍ରମାଣ । ଧର୍ମଦତ୍ତ ବ୍ରାହ୍ମଣ ଦେବ ଦର୍ଶନକୁ ଗଲବେଳେ କାର୍ତ୍ତିକବ୍ରତ ଫଳ ପିଶାଚୀକୁ ଦାନ କରିଥିଲେ । ବୋଧହୁଏ ସେହି ଫଳ ଲଭ ହେତୁ କୈକେୟୀ ବୈକୁଣ୍ଠ ସଦୃଶ ଅଯୋଧ୍ୟା ନଗରୀରେ କୁଶଳରେ ବାସ କଲ ।"

୧୩ଶ ପଦ—ଯେପରି ବଧୂର ସ୍ତ୍ରୀର ମନ ଯେଉଁ ଥିରେ ଲାଗିଥାଏ, ସେ ସେହି ବିଷୟରେ ରତ ଥାଏ, ଅଉ କାହିଁରେ ରସେ ନାହିଁ, ସେହିପରି କୈକେୟୀ 'ରାମ ଶୀଘ୍ର ବନକୁ ଯାଉ' କେବଳ ଏହି କଥା ଶିଶୁ ପାଠ ଘୋଷିଲା ପ୍ରାୟ କାକ ଯେପରି କୋକିଳଙ୍କ ମଧ୍ୟରେ ରାବ କରେ ସେହିପରି ସଉତୁଣୀଙ୍କ ମଧ୍ୟରେ ଘୋଷି ହେଲା ।

୧୪ଶ ପଦ—କୈକେୟୀ ବାଉଁଶ ନଳରେ ରଖି ସୀତାଙ୍କର ପିନ୍ଧିବା ପାଇଁ ଚଉଦବର୍ଣ୍ଣ ଲଗି ଲୁଗାମାନ ଆଣି ଦେଲେ । ଇକ୍ଷ୍ୱାକୁବଂଶର ଶିରୋମଣି ରାମଚନ୍ଦ୍ର ଓ ଲକ୍ଷ୍ମଣଙ୍କ 'ଇକ୍ଷ୍ୱାକୁପାଟ' କୁମ୍ଭାପାଟ ଓ ଲୁଗା ଥିବା ବାଉଁଶ ନଳୀ

ବାହାରିଲେ ସେ ବନ ।
କହୁଁ ବୋଧନ୍ତି ରାମଜନନୀ । ୨୮ ।
ଅଟବିରେ ପୀନଉରଜା ଅପୂର୍ବ ଦ୍ରବ୍ୟ ଦେଖି ନ ମାଗିବୁ ।
ବେନି ସହୋଦର ମଧ୍ୟରେ ଆଦର ଦୁର୍ଗପଥରେ କରିଥିବୁ ।
ଛାଟେସ୍ତ୍ରେ ଚଳନ୍ତିଲା ଭର ।
ବାଣୀ ନ ସ୍ଫୁରେ କଣ୍ଠୁ ଆକର । ୨୯ ।
ବୋଇଲେ ସୁମିତ୍ରା ପୁତେ ସେବଥିବୁ ଶ୍ରୀରାମ ମାନସ ଜାଣି ।
ବନଦେ ସର୍ବ ଶର୍ବରୀ ହବୁ ହୋଇ ଧନୁଶରପାଣି ।
ବଧୂ ଯାଉଛନ୍ତି ସଙ୍ଗେ ।
ବନ ମାୟାବୀ ରାକ୍ଷସପୁଙ୍ଗେ । ୩୦ ।
ଏମାନେ ବସାଇ ନେବାରେ ସୁମନ୍ତ ଯିବାରେ ଦେଖିଲେ ଜନେ ।
ବିସ୍ମୟ ହୋଇଲେ ପଛେ ଗୋଡ଼ାଇଲେ ନିନ୍ଦା ବିହିଲେ ନୃଜନେ ।

---

୨୮ଶ ପଦେ—ପୀନଉରଜା—ପୃଥିବୀ ସମ୍ଭୂତା ।
୩୦ଶ ପଦ—ଶର୍ବରୀ—ରାତ୍ରି । ମାୟାବୀ—କପଟୀ । ରାକ୍ଷସପୁଙ୍ଗେ—ରାକ୍ଷସ ସମୂହ ।
୩୧ଶ ପଦ— ବାମା—ସ୍ତ୍ରୀ, ଭାର୍ଯ୍ୟା । ଅନୁକମ୍ପା—ଦୟା ।

---

ଧଇଲେ । ରାମ, ଲକ୍ଷ୍ମଣ ଓ ସୀତା ବନକୁ ବନକୁ ଯିବାକୁ ବାହାରିଲେ । ତାହା ଦେଖି ରାମଙ୍କ ମାତା କୌଶଲ୍ୟା ବଧୂ ସୀତାଙ୍କୁ ବୋଧ କରି କହିଲେ;—

୨୯ଶ ପଦ —"ଗୋ ପୃଥିବୀସମ୍ଭୂତା ସୀତେ ! ଅରଣ୍ୟ ମଧ୍ୟରେ ଅପୂର୍ବ ପଦାର୍ଥ ଦେଖିଲେ ମାଗିବୁ ନାହିଁ । (କୌଣସି ଅପୂର୍ବ ଜିନିଷ ଲୋଭ ଆଶା କରିବୁ ନାହିଁ ] । ଦୁର୍ଗମ ପଥରେ ଗଲାବେଳେ ରାମ ଓ ଲକ୍ଷ୍ମଣ ବେନି ସହୋଦରଙ୍କ ମଧ୍ୟରେ ଯିବୁ । ( ତାଙ୍କ ପାଖରୁ ଅଲଗା ହେବୁ ନାହିଁ )।" ଏହା କହୁ କହୁ ଲୋତକରେ ତାଙ୍କର କଣ୍ଠ ରୁନ୍ଧିଗଲା । ଶୋକର ପ୍ରାବଲ୍ୟ ହେତୁ ପାଟିରୁ କଥା ବାହାରିଲା ନାହିଁ ।

୩୦ଶ ପଦ—ସୁମିତ୍ରା ତାଙ୍କ ପୁତ୍ର ଲକ୍ଷ୍ମଣଙ୍କୁ କହିଲେ, "ରାମର ମନ ଜାଣି ସେବାଥିବୁ । ସମସ୍ତ ରାତି ଅନିଦ୍ରାରେ ରହି ଧନୁରେ ଧରି ଜଗି ରହିଥିବୁ । ବଧୂ ସୀତା ସଙ୍ଗରେ ଯାଉଛନ୍ତି । ବନରେ ବହୁ ମାୟାବୀ ରାକ୍ଷସମାନେ ଅଛନ୍ତି । ( ତେଣୁ ସର୍ବଦା ଧନୁଶର ଧରି ଜଗି ରହିଥିବୁ )।

୩୧ଶ ପଦ—ତତ୍ପରେ ସୁମନ୍ତ ମନ୍ତ୍ରୀ ରାମ, ଲକ୍ଷ୍ମଣ ଓ ସୀତାଙ୍କୁ ରଥରେ ବସାଇ ବନକୁ ନେଉଛନ୍ତି ଲୋକମାନେ ତାହା ବିସ୍ମିତ ହୋଇ ଦେଖିଲେ । ରଥ

ବୃଦ୍ଧଙ୍କୁ ସମସ୍ତେ କହି ।
ବାମାଠାରେ ଏତେ ଅନୁରକ୍ତି ॥ ୩୧ ॥
ବୈଶାଖ ଦେଖାଇଲା ମନ୍ଥରା ଅଯୋଧ୍ୟା-ଭାଣ୍ଡେ ଥିଲା କ୍ଷୀର ଦୂରେ ।
ବଲ୍ଲବୀ କୈକେୟୀ ମନ୍ଥନରୁ ନବନୀତ ବଡ଼ଶେଷ ବାହାରେ ।
ବନବାସିଙ୍କି ଦେଇ ।
ବହୁଲୋଚନ ଅଶନ ପାଇଁ ॥ ୩୨ ॥
ତାଙ୍କ ମନ୍ଦପଣ ଜନିତକ ଥୋଇ ହୃଦ ପିଣ୍ଡରେ ଅସକ୍ତେ ।
ବ୍ୟକ୍ତ ଲୋକରେ ଶ୍ରବଣେ ପାନ କରି ଛି ଛି ତ କରିବେ ଭକ୍ତେ ।
ବୋଲବୋଲି ଏମନ୍ତ ।
ହରକରେ ସମସ୍ତ ଶୋକତ ॥ ୩୩

୩୨ଶ ପଦ—ବୈଶାଖ—ଖୁଅଦଣ୍ଡ ବା ମନ୍ଥନ ଦଣ୍ଡ । ବଲ୍ଲବୀ—ଗୋପାଙ୍ଗଣୀ ନବନୀତ—ଲହୁଣୀ । ଅଶନ—ଭୋଜନ ।
୩୩ ପଦ—ଭକ୍ତଚକ୍ର—ଗୋଲଦାହ ସମୂହ ।

ପଛରେ ଗୋଡ଼ାଇ ଗୋଡ଼ାଇ ଯାଇ ରାଜାଙ୍କୁ ନିନ୍ଦା କରି କହିଲେ, "ଏ ବୁଢ଼ା ଦଶରଥ ରାଜାର ସ୍ତ୍ରୀଠାରେ ଏତେ ଅନୁରକ୍ତ କାହିଁକି ହେଲା ?"

୩୨ଶ ପଦ—"କୈକେୟୀ ଗୋପାଙ୍ଗନା ରୂପରେ ମନ୍ଥରା ରୂପ ଖୁଅଦଣ୍ଡ ଦ୍ୱାରା ଅଯୋଧ୍ୟା ଭାଣ୍ଡରେ ଥିବା ସ୍ନେହ ସୌହାର୍ଦ୍ଦ୍ୟରୂପ କ୍ଷୀରକୁ ମନ୍ଥନ କରି ତହିଁରୁ ଉଦ୍ଭବ ରାମ ଲକ୍ଷ୍ମଣ ସୀତା ରୂପ ଲହୁଣୀକୁ ବନବାସୀ ଋଷିମାନଙ୍କୁ ବହୁଲୋଚନରେ ଭୋଜନ କରିବା ନିମନ୍ତେ ଦେଲା । ( ଋଷିମାନେ ବହୁ ଲୋଚନରେ ଦେଖି ସୁଖୀ ହେବେ; ଏ ଭାଗ୍ୟ ତାଙ୍କର ଅଛି ମାତ୍ର ଅଯୋଧ୍ୟାବାସୀଙ୍କର ନାହିଁ )

ଅନ୍ୟାର୍ଥ—'ବହୁଲୋଚନ' ଇନ୍ଦ୍ର, ଶିବ, ବ୍ରହ୍ମାଦି ଦେବତାମାନଙ୍କର 'ଅଶ' ଅମଙ୍ଗଳ ନ ହେବା ପାଇଁ ଅର୍ଥାତ୍ ରାବଣ ବଧ ପାଇଁ ବନକୁ ପଠାଇଲା ।

୩୩ଶ ପଦ—"ଅକଥିତ ମନ୍ଦସ୍ୱଭାବରୂପ ଗୋଳ ଦାହକୁ ଅଯୋଧ୍ୟା ଲୋକଙ୍କ ହୃଦୟରୂପ ପିତ୍ତଳ ପାତ୍ରରେ ଗୋଡ଼ାଇ ଥୋଇଦେଲେ ; ତାଙ୍କ ପିତ୍ତଳ ପାତ୍ରରେ ରହି ଉଠୁଥିବା ହ୍ରାସ ଯେତେ ପାନ କଲେ ଛିଟା ଛିଟା । ତେଣୁ ସେମାନେ ତାହା ଛି ଛି କରିବେ । ( ଲହୁଣୀ ବନକୁ ଗଲା, କୈକେୟୀର ଏହି ମନ୍ଦପଣ ଅଯୋଧ୍ୟାରେ ରହିଲା, ଲୋକେ ସବୁ ଦିନ ତାହା ଶୁଣି ତାକୁ ଛି ଛି କରି ଧିକ୍କାରୁ ଥିବେ )। ଏମନ୍ତ ଦଶରଥ ଭବନେ ବୋଲବୋଲି ହୋଇ ସମସ୍ତେ ଶୋକାକୁଳ ହୋଇ ପଡ଼ିଲେ ।

ବୃକ୍ଷଧ୍ୱଜ ପରି ସାକେତ ନଗରୀ କରି ଅଲକ୍ଷ୍ମୀ ଆଶ୍ରିତ ।
ତାର ରବାର କୈକେୟୀ ଅଯୁକ୍ତିରୁ ଅସ୍ପରଣ ହେଲା ମତ ।
ଚଳ ଦଳ ତଜନ ।
ତଣ ମନ୍ଦୁସ୍-ଭର୍ଣ୍ଣୀ ମନ । ୩୪ ।
ବଳ ତାମସୀ ନଦୀର ବନେ ପଶି ସେ ଦିନ ତହିଁ ରହିଲେ ।
ବାର୍ତ୍ତା ପାଇ ଶୃଙ୍ଗବେରପତି ମିଳେ ପୃଚ୍ଛନ୍ତି ସୁମନ୍ତ କହିଲେ ।
ବୋଲେ ଶବରଈଶ ।
ବାଣ୍ଟି ନ ଦେଲେ କର୍ପାଇ ଦେଶ ? ୩୫ ।
ବାଣ୍ଟିଲେ ଯେ ଛଳେ ଏ ବନ ନଗରେ ଭବନ ନଗରେ ସେହି ।
ବ୍ୟକ୍ତ ବ୍ୟକ୍ତ ହୋଇ ସାନୁଜ ଯୁଗଳ ଅନୁସରଣକୁ ବହି ।

---

୩୪ଶ ପଦ—ବୃକ୍ଷଧ୍ୱଜ—ଅଶ୍ୱତ୍ଥ । ସାକେତନଗରୀ—ଅଯୋଧ୍ୟାପୁରୀ ।
୩୫ଶ ପଦ—ଶୃଙ୍ଗବେରପତି—ଗୁହକଶବର । ଶବରଈଶ—ଶବରରାଜ ।

---

୩୪ଶ ପଦ—ଅଯୋଧ୍ୟା ନଗରୀ ଅଶ୍ୱତ୍ଥ ବୃକ୍ଷ ପ୍ରାୟ ହେଲା । ଅଶ୍ୱତ୍ଥ ବୃକ୍ଷରେ ଅଲକ୍ଷ୍ମୀ ଆଶ୍ରୟ କରି ରହିଥିବାରୁ ତାହା ରବିବାର ଦିନ ଅସ୍ପୃଶ୍ୟ ଅଟେ । ସେହିପରି ଅଯୋଧ୍ୟା ନଗରକୁ କୈକେୟୀ ରୂପୀ ରବିବାର ଆଶ୍ରୟ କରି ରହି ଥିବାରୁ ତାହା ଅସ୍ପୃଶ୍ୟ ଅଟେ । ( ଅଯୋଧ୍ୟାରେ ଆଉ ରହିବାକୁ କେହି ଇଚ୍ଛା କରୁ ନାହାନ୍ତି,—ରଥ ପଛରେ ଗୋଡ଼ାଉ ଅଛନ୍ତି) । ଅଶ୍ୱତ୍ଥପତ୍ର ଚଳିଲେ ବୃନ୍ତଟି ଯେପରି ଲଗି ରହେ, ସେହିପରି ରାମଙ୍କ ବନଗମନ ସମୟରେ ସୈନ୍ୟବଳ ସବୁ ଅଯୋଧ୍ୟାରେ ନ ରହି ରଥ ପଛରେ ଗୋଡ଼ାଇବାରୁ ମନ୍ତ୍ରର ଅନନ୍ଦତା ହେଲା ।

୩୫ଶ ପଦ—ତମସା ନଦୀର କୂଳ ଯାଇ ସୁମନ୍ତ୍ର ରାମ, ଲକ୍ଷ୍ମଣ ଓ ସୀତା ସହିତ ବନରେ ପଶି ସେ ରାତ୍ରରେ ସେଠାରେ ରହିଲେ । ଶୃଙ୍ଗବେର ରାଜା ଗୁହ ଶବର ଖବର ପାଇ ଆସି ସେଠାରେ ପହଞ୍ଚିଲେ । ସେ ପଚାରିବାରୁ ସୁମନ୍ତ୍ର ସବୁ କଥା ବୁଝାଇ କହିଲେ । ତାହା ଶୁଣି ଶବରରାଜ କହିଲେ, "ରାଜା ଦେଶକୁ ବାଣ୍ଟି ନ ଦେଲେ କାହିଁକି ?" ( ଦେଶ ଭାଇମାନଙ୍କୁ ବାଣ୍ଟି ଦେଇଥିଲେ ରାମ ତ ବନକୁ ଯାଆନ୍ତେ ନାହିଁ ) ।

୩୬ଶ ପଦ—ସୁମନ୍ତ୍ର ଗୁହ ବାକ୍ୟରେ ଉତ୍ତର ଦେଲେ, "ରାଜା ଦେଶକୁ ଭାଇମାନଙ୍କ ମଧ୍ୟରେ ବାଣ୍ଟି ଦେଲେ ତ । ରାମଚନ୍ଦ୍ର ପଦସେବକ

ବଞ୍ଚିଲେ ସେ ଶର୍ବରୀ ।
ବେଢ଼ି ସୈନ୍ୟ ରାଜଧାନୀପରି । ୩୬ ।
ବିଂଶ ଅବତାରେ ଏକ କପିଳ ପୁଣି ସେ ରୂପ ଲମ୍ପଟ ।
ବଟକ୍ଷୀରେ ଜଟ କରି ଗରଭଟ ପିନ୍ଧିଲେ ବଲ୍କଳପଟ ॥
ବାହେ ଇନ୍ଦ୍ରାକ୍ଷମାଳ ।
ବହେ କର୍ଣ୍ଣେ ରୁଦ୍ରାକ୍ଷ କୁଣ୍ଡଳ । ୩୭ ।
ବୋଳି ହେଲେ ଭସ୍ମ ନର ନାରାୟଣ ପ୍ରାୟ ବେନିଭାଇ ଦକ୍ଷେ ।
ବଦରିକା ବନ ଭାବକୁ ସେ ବନ ସେବନ କଲେ ରଭସେ ।
ବକଳିତ ରଞ୍ଜନ ।
ବିକଳିତ ଦେଖି ହେଲେ ଜନ । ୩୮ ।
ବାହୁଡ଼ ନଗରକୁ ବୋଲି ଯେ ପେଷିଲେ ବେଳି ଶତ ଅଭ ତ୍ୱସ ।
ବସନ୍ତଶ୍ରେଣୀରୁ ଏକାନ୍ତବନେ କି ଯାହା ଅନୁଗତ ପ୍ରଜ ।

---

୩୮ଶ ପଦ—ରଭସେ—ଶୀଘ୍ର । ବକଳିତ—ଯାହା କଳନା କରି ହେବ ନାହିଁ ।

---

ଅରଣ୍ୟ ସ୍ଥଳରେ ରହିବେ, ଭରତ ଗୃହପୂର୍ଣ୍ଣ ନଗରରେ ରହିବେ । ସାନ ଭାଇଙ୍କ ଅର୍ଥାତ୍ ଲକ୍ଷ୍ମଣ ଓ ଶତ୍ରୁଘ୍ନ ଉଭୟ ଜଣ ହୋଇ ଦୁହିଙ୍କ ପାଖରେ ଅନୁସରଣ କରି ରହିବେ ।" ରାମଲକ୍ଷ୍ମଣାଦି ସେ ରାତ୍ର ସେଠାରେ କଟାଇଲେ ଓ ରାଜଧାନୀରେ ସୈନ୍ୟ ବେଢ଼ି ରହିବାପରି ସେଠାରେ ସୈନ୍ୟମାନେ ବେଢ଼ି ରହିଲେ ।

୩୭ଶ ପଦ—ବିଷ୍ଣୁଙ୍କର ବିଂଶ ଅବତାର ମଧ୍ୟରେ କପିଳ ଅବତାର ଗୋଟିଏ । ରାମଚନ୍ଦ୍ର ସେହି ଅବତାରରେ ଅର୍ଥାତ୍ କପିଳ ଋଷିଙ୍କ ବେଶରେ ଆସକ୍ତ ହୋଇ ବଟକ୍ଷୀରରେ ଜଟା ବାନ୍ଧିଲେ ଓ ବୃକ୍ଷର ବଲ୍କଳ ରୂପ ବସ୍ତ୍ର ପିନ୍ଧିଲେ । ଇନ୍ଦ୍ରାକ୍ଷମାଳ ବାହୁରେ ବାନ୍ଧି ରୁଦ୍ରାକ୍ଷ କୁଣ୍ଡଳକୁ କର୍ଣ୍ଣରେ ବହିଲେ ।

୩୮ଶ ପଦ—ଅନନ୍ତର ରାମଲକ୍ଷ୍ମଣ ବେନି ଭାଇ ଭସ୍ମ ବୋଳି ହେଲେ, ତେଣୁ ନରନାରାୟଣ ଋଷି ପ୍ରାୟ ଦେଖାଗଲେ । ତତ୍ପଶ୍ଚାତ୍ ସେ ବନ ବଦରିକାଶ୍ରମର ଭାବକୁ ପ୍ରାପ୍ତ ହେଲା । (ବଦରିକାଶ୍ରମରେ ନରନାରାୟଣ ଋଷି ଅବସ୍ଥାନ କରିଥାନ୍ତି) । ରାମ ଲକ୍ଷ୍ମଣଙ୍କର ଶୋଭା ସେ ସମୟରେ କଳି ହେଉ ନାହିଁ ସେ ଅତ୍ୟନ୍ତ ସୁନ୍ଦର ଦିଶିଲେ, ଲୋକମାନେ ତାହା ଦେଖି ବ୍ୟାକୁଳିତ ହେଲେ ।

୩୯ଶ ପଦ—ଶ୍ରୀରାମଚନ୍ଦ୍ର ପ୍ରଜାଙ୍କୁ "ନଗରକୁ ଫେରିଯାଅ" ଏହା କହନ୍ତେ, ସେମାନେ ତାହା ଶୁଣିଲେ ନାହିଁ । ରଥକୁ ସେହି ଲୋକ ଗହଳରେ

ବିଧୁଚୂଡ଼ ଗଉରୀ ।
ଦିଶିଲେ ରାମ ସୀତା ପର । ୩୯ ।
ଅଲେପନ ଭୂତି ଏଣୁ ଶୁଭ୍ରକାନ୍ତି ଚନ୍ଦ୍ରାର୍ଦ୍ଧ ଛବି ମୁକୁଟ ।
ବରବର୍ଣ୍ଣିନୀ ନାନାରତ୍ନଭୂଷଣୀ ପାର୍ଶ୍ୱରେ ଝଟ ଝଟ ।
ବାହକ ଯେ ସୁମନ୍ତ ।
ବ୍ରହ୍ମର୍ଷି ଲକ୍ଷ୍ମଣ ବିନତ । ୪୦ ।
ବିଶ୍ରାମନ୍ତେ କଚ୍ଛତୁରେ କହେ ନରେ ବନରେ ରଚିବା ପୁର ।
କଷ୍ଟା ଦେଇଛନ୍ତି ଦଣ୍ଡକାରେ ପୂର୍ବେ ନ ଥିଲ କି ଦଣ୍ଡଧର ।

---

୩୯ଶ ପଦ—ବସନ୍ତଗୁଣ୍ଡିଚା—ଚୈତ୍ର ଗୁଣ୍ଡିଚା । ଏକାମ୍ରବନେ—ଭୁବନେଶ୍ୱରରେ । ବିଧୁଚୂଡ଼—ମହାଦେବ । ଗଉରୀ—ପାର୍ବତୀ । ଦିଶିଲେ—ଶୋଭି ।

---

ଗମନ କରନ୍ତେ ତାହା ଭୁବନେଶ୍ୱରର ଅଶୋକାଷ୍ଟମୀ ଯାତ୍ରା ପରି ଶୋଭା ପାଇଲା । (ଅଶୋକାଷ୍ଟମୀ ଯାତ୍ରାରେ ରଥ ଚାଲିଲେ ତାହାର ଚତୁଃପାର୍ଶ୍ୱେ ଅଦ୍ଭୁତ ଯାତ୍ରୀ ଲୋକ ଚାଲୁଥାନ୍ତି) । ରାମ ଓ ସୀତା ମହାଦେବ ଓ ପାର୍ବତୀ ପରି ସେ ରଥରେ ଶୋଭା ପାଇଲେ ।

୪୦ଶ ପଦ—ମହାଦେବ ଶୁକ୍ଳକାନ୍ତି ବିଶିଷ୍ଟ, ଭସ୍ମ ବିଲେପିତ ଓ ଶିରରେ ଅର୍ଦ୍ଧଚନ୍ଦ୍ରର ମୁକୁଟ ଧାରଣ କରିଥାଆନ୍ତି, ସେହିପରି ରାମ ଭସ୍ମ ବୋଳି-ହୋଇ ଥିବାରୁ ଶୁଭ୍ରକାନ୍ତି ବିଶିଷ୍ଟ ହୋଇଅଛନ୍ତି ଓ ତାହାଙ୍କ ଶିରରେ ଅର୍ଦ୍ଧ-ଚନ୍ଦ୍ରାକୃତି ମୁକୁଟ ଶୋଭା ପାଉଅଛି । ସୁବର୍ଣ୍ଣବର୍ଣ୍ଣା ନାନା ରତ୍ନାଳଙ୍କାରଭୂଷିତା ପାର୍ବତୀ ଶିବଙ୍କ ପାର୍ଶ୍ୱରେ ଝଟ ଝଟ ଦିଶିଲାପରି ଉତ୍ତମବର୍ଣ୍ଣା ବିବିଧ ରତ୍ନାଳଙ୍କାର-ମଣ୍ଡିତା ସୀତା ରାମଙ୍କ ପାର୍ଶ୍ୱରେ ଶୋଭା ପାଉଅଛନ୍ତି । ଶିବଙ୍କ ରଥବାହକ 'ସୁମନ୍ତ' ଅର୍ଥାତ୍ ରଥଚାଳନ ମନ୍ତ୍ରଜ୍ଞାନେ ଦକ୍ଷ ଓ ଏ ରଥ ଚାଳକ ସୁମନ୍ତ ମନ୍ତ୍ରୀ । ଶିବଙ୍କ ପାଶରେ ବ୍ରହ୍ମର୍ଷିମାନେ ଅନନ୍ତ ହେଲା ପ୍ରାୟ ରାମଙ୍କ ସମୀପରେ ବ୍ରହ୍ମର୍ଷି ଲକ୍ଷ୍ମଣ ବିଦ୍ୟମାନ ।

୪୧ଶ ପଦ—କଚ୍ଛତୁର ଖାଇ ବନରେ ବିଶ୍ରାମ କରିବାରୁ ଲୋକମାନେ କହିଲେ, 'ଏ ବନରେ ନଗର ନିର୍ମାଣ କରିବା । ପୂର୍ବେ ଦଣ୍ଡକାରଣ୍ୟରେ କଣ ରାଜା ନ ଥିଲେ ? (ନିଶ୍ଚୟ ଥିଲେ) ମାତ୍ର ବର୍ତ୍ତମାନ ରାଜା ନ ଥିବାରୁ ତୁମ୍ଭ ପିତା ତୁମ୍ଭଙ୍କୁ ଏ ଅରଣ୍ୟ ଦେଇଅଛନ୍ତି । ତୁମ୍ଭେ ତାଙ୍କ କଥା ମାନି ଏଠାରେ ରାଜା

ବୋଲ ଶାଙ୍କର ମାନ ।
ତଣ୍ଡି ଅମ୍ଭେ ହୋଇ ପ୍ରଜାଜନ । ୪୧ ।
ବକ୍ତବ୍ୟ ରାଘବ ଏଥି ଅନୁରୂପ ପ୍ରଜା ଚତୁରଙ୍ଗ ଛନ୍ତି ।
ବସ୍ତକସନ୍ଧ ସୁରଭି ପୟୋଧର ବ୍ରଜବ୍ରଜ ଝଟକନ୍ତି ।
ବୃକ୍ଷ ସୁନାଶୀରସ୍ଥ ।
ବିହରନ୍ତି କେତେ ତନୁବାସ୍ତ । ୪୨ ।
ବ୍ୟାଘସନ ରଥ ଗନ୍ଧର୍ବ ଉଟଜେ କରବାର ବିହାରକୁ ।
ବାଧ୍ୟରେ ଶାଖୀ ଫଳକଧାରୀ ଓଶାଗ୍ରି ଅମ୍ଭ ପର୍ଣ୍ଣପାଳନକୁ ।

---

୪୨ଶ ପଦ—ବସ୍ତକ ସନ୍ଧ—କାତୁରୀ ସହିତ, କଣମଲ୍ଲୀ ସହିତ । ସୁରଭୀ—ଗାଈ, ଚମ୍ପାଗଛ । ପୟୋଧର—ନଡ଼ିଆ, କ୍ଷୀରଧାରୀ । ବ୍ରଜବ୍ରଜ—ଗୋପାଳସମୂହ । ସୁନାଶୀରସ୍ଥ—ସୁନାଶୀ ଗଛସମୂହ, ବଣିଆସବୁ । ତନୁବାସ୍ତ—ତନ୍ତୀ, ବୁଢ଼ୀଆଣି ।

୪୩ଶ ପଦ—ରଥ—ଯାନବିଶେଷ, କେତକୀବୃକ୍ଷ । ଗନ୍ଧର୍ବ—ଘୋଡ଼ା ମୃଗ । ଉଟଜ—ଓଟ, ପର୍ଣ୍ଣଶାଳା । କରବାର—ହସ୍ତସମୂହ, କରତା ପାଇଁ । ଶାଖୀ—ପଦାତି, ବୃକ୍ଷ । ଫଳଧାରୀ—ଖଡ୍ଗଧାରୀ, ଫଳବନ୍ତ ।

---

ହୁଅ । ଅମ୍ଭେ ପ୍ରଜା ହୋଇ ଏଠାରେ ରହିବୁ । ତୁମ୍ଭଙ୍କ ସଙ୍ଗେ ଅମ୍ଭେ ଅଯୋଧ୍ୟାକୁ ଯିବୁ ନାହିଁ ) ।"

୪୨ଶ ପଦ—ଲୋକମାନଙ୍କ କଥା ଶୁଣି ରାମଚନ୍ଦ୍ର କହିଲେ, ଏଠାରେ ବନ ସଦୃଶ ପ୍ରଜା ଓ ଚତୁରଙ୍ଗ ବଳ ଅଛନ୍ତି, ଏଠାରେ 'ବସ୍ତକ' କଣମଲ୍ଲିକା ସହିତ 'ସୁରଭି' ଚମ୍ପକ ଓ ନଡ଼ିଆ ବୃକ୍ଷ ରାଜ୍ୟରେ ବସ୍ତ୍ରସନ୍ଧ ଧେନୁ ରହିଥିବା ପ୍ରାୟ ରହିଅଛନ୍ତି । 'ପୟୋଧରବ୍ରଜ' ନାରିକେଳ ବୃକ୍ଷସମୂହ 'ପୟୋଧର ବ୍ରଜ ଦୁଗ୍ଧ ବହନକାରୀ ଗୋପାଳଙ୍କ ପରି ବିଦ୍ୟମାନ ଅଛନ୍ତି । ସୁନାଶୀ ବୃକ୍ଷସବୁ ସ୍ୱର୍ଣ୍ଣକାରଙ୍କ ପରି ବନକୁ ବେଢ଼ି ରହିଅଛନ୍ତି । ଏଥିରେ ଜହ୍ନ 'ତନୁବାସ୍ତ' ମାଙ୍କଡ଼ସା ରାଜ୍ୟର ତନ୍ତୀ ପ୍ରାୟ ବିହାର କରନ୍ତି । ( ଏ ବନରେ ସବୁ ପ୍ରକାର ପ୍ରଜା ଅଛନ୍ତି, ତୁମ୍ଭର ରହିବା ପ୍ରୟୋଜନ ନାହିଁ ) ।"

୪୩ଶ ପଦ—'ଏଠାରେ ମୋର ବିହାରକରିବାପାଇଁ ଉଟଜପର୍ଣ୍ଣଶାଳା ରୂପ ଓଟ, ହସ୍ତୀସମୂହ, 'ରଥ' କେତକୀବୃକ୍ଷରୂପ ରଥସବୁ ବିଦ୍ୟମାନ ଅଛନ୍ତି । ମୋହର ରକ୍ଷା କରିବା ପାଇଁ ଏଠାରେ ଫଳବନ୍ତ ବୃକ୍ଷସମୂହ ଖଡ୍ଗଧାରୀପଦାତିଙ୍କ ପରି ରହିଅଛନ୍ତି ।" ( ହସ୍ତୀ, ଅଶ୍ୱ, ରଥ ଓ ପଦାତି ଏହି ଚତୁରଙ୍ଗବଳ

ବୋଲି ମଉନ ହେଲେ ।
ବଣ୍ଠାଇ ସେ ପଥ ସନ୍ଧି ଗଲେ । ୪୩ ।
ବାହୁ ସୁମନ୍ତ୍ର ଦମାନ ରାମ ଅଙ୍କିତଶେ ଅଯୋଧ୍ୟା ଗମନ ।
ବାହୁଡଲେ ଜନେ ସେ ରଥଚିହ୍ନଙ୍କୁ ଘୋଡାଇ ହରଷ ମନ ।
ବଣ ମୃଗତୃଷ୍ଣାରେ ।
ବାରି ବୁଝି ଯଥା ମୃଗ ଫେରେ । ୪୪ ।
ବେଗି ଉଦବେଗୀ ହୋଇ ପରବେଶ ଭରଦ୍ୱାଜ ଆଶ୍ରମରେ ।
ବ୍ୟାପଣ କରି ସୀତା ରାମ ଲକ୍ଷ୍ମଣ ତକ୍ଷଣ ସବୁ ପଚାରେ ।
ବୋଧି କହିଲେ ଋଷି ।
ବୀରହଂସ ଅରଣ୍ୟେ ବଳସ । ୪୫ ।
ବତ୍ସଙ୍କ ତୀକ୍ଷ୍ଣ ନାରାଚ ନଖରରେ ମଦାନ୍ଧଦନ୍ତୀ ଅସୁର ।
ବିମୋଦକ ହେବ ଶିବକୂଟ ଶିରେ ନୋଚେ ଭରତାଙ୍କୁ ପୂର ।

---

୪୫ଶ ପଦ—ବେଗି—ବେଗବନ୍ତ । ଉଦ୍‌ବେଗୀ—ଉଦ୍‌ବିଗ୍ନ ପ୍ରଜାଙ୍କ ଲାଗି ବ୍ୟଥିତ । ବୀରହଂସ—ବୀରଶ୍ରେଷ୍ଠ ।

୪୬ଶ ପଦ—ତୀକ୍ଷ୍ଣ ନାରାଚ—ମୁନିଆଁ ଶର । ନଖର—ନଖ । ମଦାନ୍ଧଦନ୍ତୀ—ମଦମତ୍ତ ହସ୍ତୀ । ପୟସ୍ୱୀ—ଜଳପୂର୍ଣ୍ଣ । ସ୍ୱାଦ୍ୱୀ—ସ୍ୱାଦଯୁକ୍ତ ।

---

ରହିଥିବାର ସୂଚିତ ହେଉ) । ଏହା କହି ରାମଚନ୍ଦ୍ର ମୌନ ହେଲେ । ରାତ୍ର ଥାଉଁ ସେ ବାଟ ଗୁପ୍ତ ଅନ୍ୟ ବାଟରେ ଗଲେ ।

୪୪ଶ ପଦ—ରାମଙ୍କ ଆଜ୍ଞାରେ ସୁମନ୍ତ୍ର ମନ୍ତ୍ରୀ ଅଯୋଧ୍ୟାକୁ ଲେଉଟି ଗଲା ପରି ରଥ ବାହି ନେଲେ । ଲୋକେ ରଥ ଚକ୍ରର ସେ ଚିହ୍ନକୁ ଦେଖି ହର୍ଷ ମନରେ ଘୋଡାଇ ଅଯୋଧ୍ୟାକୁ ବାହୁଡଲେ । (ରଥ ଚିହ୍ନ ଅଯୋଧ୍ୟାକୁ ପଡ଼ିଥିବାର ଦେଖି ରାମ ଅଯୋଧ୍ୟାକୁ ଫେରିଗଲେ ଏହା ଭାବି ପ୍ରଜାମାନେ ଫେରିଗଲେ ) । ମୃଗ ମରୀଚିକାରେ ବଣ ହୋଇ ଜଳ ମନେ କଲା ପରି ଏହା ହେଲା ।

୪୫ଶ ପଦ—ତ ଲେ ପ୍ରଜାମାନେ ପୁଣି ପଛରେ ଗୋଡାଇ ଆସିବେ, ଏହି ଉଦ୍‌ବେଗରେ ଶୀଘ୍ର ଯାଇ ଭରଦ୍ୱାଜ ଋଷିଙ୍କ ଆଶ୍ରମରେ ପ୍ରବେଶ ହେଲେ । ଋଷି ରାମ, ସୀତା, ଲକ୍ଷ୍ମଣ ଏହି ତିନି ମୂର୍ତ୍ତିଙ୍କୁ ଦେଖି ତତ୍‌କ୍ଷଣାତ୍ ସବୁକଥା ପଚାରିଲେ । ରାମ ସମସ୍ତ ବୁଝାଇ କହିଲେ । ତାହା ଶୁଣି ଋଷି କହିଲେ, "ହେ ବୀରହଂସ ! ଅରଣ୍ୟରେ ତୁମ୍ଭ ବାସ ବିଧାନ କର ।"

୪୬ ପଦ—"ତୁମ୍ଭ ମଦମତ୍ତ ହସ୍ତୀକୁ ସୁତୀକ୍ଷ୍ଣ ନଖରେ ବିଦାର୍ଣ୍ଣ କରି ଗର୍ବିତ ସ୍ୱଭାବରେ ବାସ କଲା ପରି ତୁମ୍ଭେ ତୀକ୍ଷ୍ଣ ଶରରେ ଗର୍ବୀ ଅସୁରଙ୍କୁ

ବହେ ପୟସ୍ୱିନୀ ନଦୀ ।
ଅଶେଷିତ ତହିଁ ହୋଇ ସ୍ୱାଦ୍ୱୀ । ୪୬ ।
ବଞ୍ଚି ସେ ଦିନକ ଜନକ ଗଉରା ଗଉର ମର୍କତଗାତ୍ର ।
ବର୍ତ୍ମରେ ଗମନ ବନ୍ୟନାରୀ ଗୃହିଁ ରହିତ ସ୍ତିମିତ ନେତ୍ର ।
ତର ଭାଗଲତିକା ।
ଅବେକ୍ଷନ୍ତି ଯେମନ୍ତ ଭୁଜଙ୍ଗା । ୪୭ ।
ବୋଲବୋଲି ହେଲେ ପରମ ସୁନ୍ଦର ବର ଏ ପଥିକ ଦୁଇ ।
କଷ୍ଟସ୍ତ୍ରୀ ପୁଣି ରମଣୀ ଶିରୋମଣି କାହାର ଥିବଟି ହୋଇ ।
ବୋଲି ନିକଟେ ଗଲେ ।
ବଇଦେହୀଙ୍କି ସେ ପଚାରିଲେ । ୪୮ ।
ବରସେହା ଏ ପୁରୁଷ ସାର ତୁହେଁ ସୋଦର କିବା ତୁମ୍ଭର ।
ଭୂଇନ୍ଦ୍ର ଜଗତେ ଯେଣ ସଙ୍ଗତରେ ସୁସମେ ନ ମିଳେ ବର ।
ବୋଲି ଶିର ନମାଇ ।
ବର ଦେବର କେ ଯାଚ କହି । ୪୯ ।

---

ଚନାଶ କରି ଚିତ୍ରକୂଟ ପର୍ବତରେ ଆନନ୍ଦ ମନରେ ବାସ କର । ସେଠାରେ ବହୁଥିବା ପୟସ୍ୱିନୀ ନଦୀର ସୁସ୍ୱାଦୁ ଜଳ ପାନ କରି ପରିତୃପ୍ତ ହେବ ।”

୪୭ଶ ପଦ—ସ୍ୱର୍ଣ୍ଣବର୍ଣ୍ଣା ସୀତା, ଗୌରବର୍ଣ୍ଣ ଲକ୍ଷ୍ମଣ ଓ ମରକତମଣି ତୁଲ୍ୟ ନୀଳବର୍ଣ୍ଣ ରାମ ସେ ଦିନକ ଭରଦ୍ୱାଜଙ୍କ ଅଶ୍ରମରେ ରହିଲେ । ପରଦିନ ପ୍ରତ୍ୟୁଷରୁ ସେ କାନନର ଅରଣ୍ୟ ପଥରେ ଗମନ କରନ୍ତେ ବନବାସୀ ସ୍ତ୍ରୀମାନେ ତାଙ୍କୁ ଦେଖି ଚକିତ ଓ ସ୍ଥିର ହେଲେ ଏବଂ ଉଲ୍ଲସିତ ଭାଗଲତକୁ ( ଅକାଶରେ ଉଡୁଥିବା ବୃକ୍ଷକୁ ) ଦେଖି ଯେପରି କୌତୁକ ସେମାନେ ଉତ୍ସୁକ ହୁଅନ୍ତି, ସେମାନେ ସେହିପରି ଉତ୍ସୁକ ହେଲେ ।

୪୮ଶ ପଦ—ବନବାସୀ ନାରୀମାନେ କୁହାକୋହି ହେଲେ, “ଏ ବାଟୋଇ ଦୁହେଁ ସୁନ୍ଦର ପୁରୁଷଙ୍କ ମଧ୍ୟରେ ଶ୍ରେଷ୍ଠ ଅଟନ୍ତି । ଏ ରମଣୀ ଶିରୋମଣି ସେ ଦୁହିଁଙ୍କ ମଧ୍ୟରୁ କାହାର ସ୍ତ୍ରୀ ହୋଇଥିବ ?” ଏହା କଥାବାର୍ତ୍ତା ହୋଇ ସେମାନେ ସୀତାଙ୍କ ନିକଟକୁ ଗଲେ ଓ ବୈଦେହୀଙ୍କି ପଚାରିଲେ ।

୪୯ଶରୁ ପଦ—“ହେ ଶ୍ରେଷ୍ଠନାରୀ ! ଏ ପୁରୁଷଶ୍ରେଷ୍ଠ ଦୁହେଁ ତୁମ୍ଭର କିଏ କି ? ତୁମ୍ଭ ସମ ନଥିଲେ ଏ ସଂସାର ମଧ୍ୟରେ ବର ନ ମିଳିବାରୁ ସଙ୍ଗେ ସଙ୍ଗେ ଯୋନ ଲୁଲ୍ ଅଛନ୍ତି କି ?” ନାରୀମାନେ ଏପରି ପଚାରନ୍ତେ, ସୀତା ମୁଣ୍ଡ ନୁଆଁଇଲେ ( ଭାଇ ଦିଅର ବୋଲି କହିଲେ ) । ସୀତାଙ୍କ କଥା ବୁଝିପାରି ଦେଖ

ବିଳମ୍ବ କରନ୍ତେ ପ୍ରଳମ୍ବ-କୁନ୍ତଳା ଡାକେ ଲକ୍ଷ୍ମଣ କୁମାର ।
ତାମାଙ୍କୁ ବୋଧିଲେ ଏ ଦେବର ବୋଲି ମନ୍ଥର ଗତ ସତ୍ୱର ।
ବୁଝି କରନ୍ତେ ନୋହି ।
ବରଣ୍ଟା କି ଗର୍ଭାଳସୀ ହୋଇ । ୫୦।
ବନରୁହଦଳେ ଗୁଳିଲ ପଶ୍ୟେ ପରତେ ଏ ନୋହେ ଛନ୍ଦ ।
ବିନ୍ୟାସ ଚରଣ କଲ ସ୍ଥଳେ ଯହିଁ ଉଚ୍ଛୁଟି ଯାଉଛି ପଦ୍ମ ।
ବସୁଛନ୍ତି ରୋଲମ୍ବ ।
ବାଲିଗନ୍ଧାକୁ ଦଅନ୍ତି ଚୁମ୍ବ । ୫୧ ।
ବ୍ୟକତ ହୋଇଯାଏ ଲୁଚିଁଥିଲେ ପକ୍କଣବାସୀ ଗମିଲେ ।
ତହିଁ ବେଳା ବାଳା ସହୋଦର ମେଳା ଗଙ୍ଗା ପାର ହୋଇ ଗଲେ ।
ବିଜେ ଚିତ୍ରକୂଟର ।
ବାନପଦେ କହେ ବୀରବର । ୫୨ ।

———

୫୦ଶତ୍ ପଦ—ପ୍ରଳମ୍ବକୁନ୍ତଳା—ଦୀର୍ଘବେଣୀ । ବରଣ୍ଟା—ହଂସୀ ।
୫୧ଶତ୍ ପଦ—ବନରୁହଦଳେ—ପଦ୍ମରେ । ଛନ୍ଦ—କପଟ । ରୋଲମ୍ବ—ଭ୍ରମର

ନାରୀ କହିଲ "ତାହା ହେଲେ ଏହାଙ୍କ ମଧ୍ୟରୁ କିଏ ବର ଓ କିଏ ଦେବର ? ଏହା କହି ଯାଅ ।"

୫୦ଶତ୍ ପଦ—ଦୀର୍ଘବେଣୀ ସୀତା ବନବାସୀ ନାରୀଙ୍କ ସହିତ କଥାବାର୍ତ୍ତା କରିବା ହେତୁ ବାଟ ଚାଲିବାରେ ବିଳମ୍ବ କରନ୍ତେ, ଲକ୍ଷ୍ମଣ ଡାକ ଦେଲେ (ବିଳମ୍ବ ନ କର ଆସ-କହିଲେ) । ସେତେବେଳେ ସୀତା ସେ ନାରୀମାନଙ୍କୁ 'ଏ ଦେବର' ଏହା କହି ବୋଧ ଦେଲେ ( ଏ ଦେବର ଡାକୁଛନ୍ତି କହିବାରୁ ଅପର ଜଣକ ବର ବୋଲି ପ୍ରକାଶ ପାଇଲା) ଓ ଗର୍ଭାଳସୀ ହଂସୀର ମନ୍ଥର ଗତିକୁ ନିନ୍ଦା କରୁଥିବା ମନ୍ଦ ଗତିରେ ସେ ବୁଝି କରି ଶୀଘ୍ର ଚାଲିଲେ ।

୫୧ଶତ୍ ପଦ—ଗର୍ଭାଳସୀ ହଂସୀ ପଦ୍ମବନରେ ଚାଲିଲା ପ୍ରାୟ ସୀତାଙ୍କ ଗମନ ପ୍ରତୀତ ହେଉଛି । ଏହା ମିଥ୍ୟା କଥା ନୁହେଁ, କାରଣ ସୀତାଙ୍କ ପଦକ୍ଷେପ ସ୍ଥାନରେ ପଦ୍ମ ଫୁଟି ଉଠୁଛି ( ତାଙ୍କ ପଦଚିହ୍ନ ପଦ୍ମଫୁଲ ପ୍ରାୟ ଦେଖା ଯାଉଛି) ଓ ସେଥିରୁ ପଦ୍ମଗନ୍ଧ ଯାଉଥିବାରୁ ଭ୍ରମରମାନେ ପଦ୍ମ ଭ୍ରମରେ ଚୁମ୍ବନ କରୁଅଛନ୍ତି ।

୫୨ଶତ୍ ପଦ—ଏମାନେ ଅଦୃଶ୍ୟ ହେବାଯାଏ ଅରଣ୍ୟର କୁଟୀରବାସୀ ନାରୀମାନେ ଲୁଚିଁଥିଲେ । ଅଦୃଶ୍ୟ ହୋଇଯାନ୍ତେ ସେମାନେ ଫେରି ଗଲେ । ଅନନ୍ତର ସୀତା ଓ ଲକ୍ଷ୍ମଣ ସହିତ ମିଶି ରାମଚନ୍ଦ୍ର ଭେଳା ବାନ୍ଧି ଗଙ୍ଗାନଦୀକୁ ପାର ହୋଇ ଚଳେ ଓ ଚିତ୍ରକୂଟ ପର୍ବତରେ ବିଜେ କଲେ । ବୀରବର ବାନନ ପଦରେ ଏ ଛନ୍ଦ କହିଲେ ।

———

## ଅଷ୍ଟାଦଶ ଛାନ୍ଦ

### ରାଗ—ବିଭାସଗୁର୍ଜ୍ଜରୀ

ବନ୍ୟା ଶିଖରର ଉର୍ଦ୍ଧ୍ୱେ    ବିପ୍ରଲବ୍‌ଧ ପ୍ରାୟ ହୋଇ
ଲୁଟିବାର ପ୍ରବର୍ତ୍ତାଇ ଅଛି ଯେ ।
ବିଟପ ପ୍ରକମ୍ପକର    ସଙ୍ଗତ ସନ୍ତତସ୍ମର
ପୁର ଅଭିମୁଖହିଁ ହୋଇଛି ଯେ । ୧ ।
ବିରସ ଖଣ୍ଡିତା ସେହି    ପିକବାଣୀରେ ଛଳଇ
ପ୍ରବୃତ୍ତି କରଇ ମଦନକୁ ଯେ ।
ବିସ୍ମରଣ କର ସଙ୍ଗ    ପୟୋଧର ଫଳ ତୁଙ୍ଗ
ପୁରୁଷ ପ୍ରକାଶି ରଞ୍ଜନକୁ ଯେ । ୨ ।

---

୧ମ ପଦ—ବନ୍ୟା—ବନସମୂହ । ଶିଖରୀ—ପର୍ବତ । ଲଟିବାର—ଲତେସମୂହ । ବିଟପ—ପତ୍ର, ବିଟପୁରୁଷ । ସନ୍ତତସ୍ତ୍ରୀ—ସଖୀ, ଝିଣ୍ଟି ନାମକ ବୃକ୍ଷ-ବିଶେଷ । ପୁର—ଗୃହ, ଗୁଳ୍ମ ।

୨ୟ ପଦ—ପୟୋଧର—ନାରିକେଳ, ସ୍ତନ । ତୁଙ୍ଗ—ଉନ୍ନତ । ପୁରୁଷ—ପୁନ୍ନାଗ ବୃକ୍ଷ, ନାୟକ । ରଞ୍ଜନ—ରକ୍ତଚନ୍ଦନ ।

---

## ଅଷ୍ଟାଦଶ ଛାନ୍ଦ

୧ମ ପଦ—ଶରକୂଟ ପର୍ବତର ବନସମୂହ ବିପ୍ରଲବ୍‌ଧା ସ୍ତ୍ରୀ ପ୍ରାୟ ଶୋଭା ପାଉଅଛି । ବିପ୍ରଲବ୍‌ଧା ସ୍ତ୍ରୀ 'ଲୁଟିବାର'ମାନ କରିବାରେ ମତ୍ତ ଥାଏ, ଏ ବନ ସେହିପରି 'ଲୁଟିବାର' ଲତେସମୂହଙ୍କ ଦ୍ୱାରା ମତ୍ତ ଅଛି । ବିପ୍ରଲବ୍‌ଧା ନାରୀ ବିଟ ପୁରୁଷଙ୍କୁ ହସ୍ତ ହଲଇ ନାହିଁ କଲା ପରି, ଏ ବନ ବୃକ୍ଷର ପତ୍ରମାନଙ୍କୁ ପବନ ଦ୍ୱାରା ଦୋହଲାଉଅଛି । ଅଥଚ ମଧ୍ୟ ସେ ସଖୀଙ୍କ ସହିତ ଗୃହାଭିମୁଖିନୀ ହେଲା ପରି ଏ ବନ ଝିଣ୍ଟିବୃକ୍ଷର ସଙ୍ଗତ ଲାଭ କରିଅଛି, ଗୁଳ୍ମ ବୃକ୍ଷର ଅଭିମୁଖୀ ହୋଇଅଛି ।

୨ୟ ପଦ—ପୁଣି ସେହି ବନ-ନାୟିକା କୋକିଳଧ୍ୱନି ରୂପ କଥାରେ ଖଣ୍ଡିତା ବଚନ କହି କାମରୂପ ବସନ୍ତ ପବନକୁ ବୃଦ୍ଧି କରୁଅଛି । ଉନ୍ନତ ଓ ହସ୍ତ ଦ୍ୱାରା ସ୍ପର୍ଶ ହୋଇ ନ ଥିବା ସ୍ତନ ରୂପ ନାରିକେଳ ଫଳ ଦେଖାଇ ପୁରୁଷର ଅନୁରାଗକୁ ବଢ଼ାଉଅଛି । (ଫଳିତାର୍ଥ—ଉକ୍ତ ବନରେ ସର୍ବଦା ବସନ୍ତ ପବନ ବହୁଛି, କୋକିଳ ବୋବାଉଛି । ଖୁବ୍ ଉଚ୍ଚରେ ଫଳିଥିବା ହେତୁ ଉକ୍ତ ବନର ନାରିକେଳ ଅସ୍ପର୍ଶ ହୋଇଅଛି । ଅଥଚ ମଧ୍ୟ ସେଠାରେ ପୁନ୍ନାଗ, ଚନ୍ଦନ ପ୍ରଭୃତି ବହୁତ ଗଛ ଅଛି ) ।

ବହୂର ଲକ୍ଷ୍ମଣ ଘନ          ପବନ ଭଗ୍ନ ଚନ୍ଦନ
ଦାରୁ ଆଣି ଗୃହବାସ ବନ୍ଧ ଯେ ।
ବଦ୍ରୁମେ ତାହାର ଛାଇ          ବାଡ଼ ନଳଦରେ ଦେଇ
କସ୍ତୁରୀ ଗୈରିକେ ଚିତ୍ର ଲିହି ଯେ । ୩ ।
ବାରଣ ବାରଣ ରଣ—          କଷେ ଯେଉଁ ରଦଚୂର୍ଣ୍ଣ
କ୍ଷୋଦ କରି ଅଜିରେ ପକାଇ ଯେ ।
ବୈଦେହୀ-ରାଘବ ମିଳି          ଉଛନ୍ତି ଏକାନ୍ତ କେଳି
ହରଷେ ଧବସ ଜିଣି ନେଇ ଯେ ।୪।
ତୃଣଧୂପରେ ଧୂପିତ          ସେ ଓକ କଲେ ନିରତ
ଦ୍ରାକ୍ଷା ଅଶନରେ ହୋଇ ତୋଷ ଯେ ।
ବସ୍ନଣ ସ୍ୱପୁର ନର୍ମ          ଶଯ୍ୟା କୃଷ୍ଣସାର ଚର୍ମ
ଏବେ ଶୁଣ ସାଧୁ ଆନ ରସ ହେ ।୫।

---

୩ୟ ପଦ—ବହୂର—ଅଲଦୂର । ବଦ୍ରୁମ—କୋମଳ ପତ୍ର ।
୪ର୍ଥ ପଦ—ବାରଣ—ହସ୍ତୀ । ରଣ—ଯୁଦ୍ଧ । ରଦଚୂର୍ଣ୍ଣ—ଦନ୍ତଚୂର୍ଣ୍ଣ । କ୍ଷୋଦ—ଚୂର୍ଣ୍ଣ ବା ଧୂଳି । ଅଜିରେ—ଅଗଣାରେ ।
୫ମ ପଦ—ତୃଣ ଧୂପରେ—କୁନ୍ଦ୍ରୁମ ଧୂପରେ ବା ସରଳ ଧୂପରେ । ଧୂପିତ—ସୁବାସିତ । ଓକ—ଗୃହ ।

---

୩ୟ ପଦ—ଲକ୍ଷ୍ମଣ ସେହି ବନର ଖୁବ୍ ଦୂରକୁ ଯାଇ ନିବିଡ଼ ବନରୁ ପବନ ଯୋଗେ ଭଗ୍ନ ହୋଇଥିବା ଚନ୍ଦନ କାଷ୍ଠ ଆଣି ସୁନ୍ଦର ଗୃହ ନିର୍ମାଣ କଲେ ଓ ତାହା ବୃକ୍ଷର କୋମଳ ପତ୍ରରେ ଛାଉଣି କରି କେଣା ଡେରର ବାଡ଼ ଦେଲେ ଏବଂ କସ୍ତୁରୀ ଓ ଗେରୁରେ ଚିତ୍ର ଲେଖିଲେ ।

୪ର୍ଥ ପଦ—ହସ୍ତୀ ହସ୍ତୀଙ୍କ ଯୁଦ୍ଧ ସମୟରେ ଦନ୍ତର ଘର୍ଷଣ ହେତୁ ଯେଉଁ ଦନ୍ତଚୂର୍ଣ୍ଣସବୁ ପଡ଼ିଥିଲା, ତାହା ଆଣି ଗୃହର ଅଗଣାରେ ପକାଇଲେ । ସେହି ଗୃହରେ ରାମଚନ୍ଦ୍ର ଓ ସୀତା ଦୁହେଁ ମିଳି ଆନନ୍ଦରେ ଦିନପାତ ଯାପନ କରି ଏକାନ୍ତରେ କେଳି କଲେ ।

୫ମ ପଦ—ସେହି ପର୍ଣ୍ଣକୁଟୀରକୁ ସରଳ ଧୂପରେ ସୁବାସିତ କଲେ । ଦ୍ରାକ୍ଷାରସ ଭୋଜନରେ ନିରନ୍ତର ତୋଷ ହୋଇ ମୃଗ ଚର୍ମର ଶଯ୍ୟାରେ ଶୋଇ ଅଯୋଧ୍ୟାର ଖେଳ କୌତୁକ ହାସ ପରିହାସକୁ ଭୁଲିଗଲେ । ହେ ସାଧୁଜନେ ! ଏବେ ଆନ କଥା ଶ୍ରବଣ କର ।

ବାହୁଡ଼ି ସୁମନ୍ତ ଗଲା ନୃପ ପାର୍ଶ୍ୱକୁ ଚଳିଲା,
ରାଣୀଗୋଟକ ପାଖେ ରହି ଥିଲେ ଯେ ।
ବହୁ ମୁନିଛବି ବେନି ଜାନକୀ ସଙ୍ଗତେ ଘେନି
ନ କହି ବିପଥେ ସ୍ୱର୍ଗୁଁ ଗଲେ ସେ ।୬।
ବନବାସ ସ୍ମୃତି ଶୁଣି ବନବାସ ନେତ୍ରେ ଆଣି
ହୃଦମଧ୍ୟେ ରାମ ବିହରନ୍ତ ଯେ ।
ଦ୍ୱି-ଜଳଧ୍ୱନିରେ ଖେଳ ସୁମନ ଭ୍ରମରେ ମେଳ
ଦଶରଥ ଏମନ୍ତ ଚଥିତ ଯେ । ୭ ।
ବ୍ୟାଧ ପ୍ରାୟ ହୋଇ ମୁହିଁ ଜଳଘାଟ ଜଗିଥାଇ
ଅନ୍ଧ ତପିସୁତ ନେଇଁ ମାର ଯେ ।

---

୬ଷ୍ଠ ପଦ—ରାଣୀଗୋଟକ—ରାଣୀସମୂହ । ବିପଥରେ—ଅବାଟରେ ।
୭ମ ପଦ—ବନବାସ—ଲୋତକ ଜଳ । ଦ୍ୱି-ଜଳ ଧ୍ୱନି—ପକ୍ଷୀମାନଙ୍କର ମଧୁର ସ୍ୱନ । ଖେଳ—ଚଞ୍ଚଳ । ସୁମନ—ପୁଷ୍ପ, ଉତ୍ତମ ମନ ।

---

୬ଷ୍ଠ ପଦ—ରାମ, ଲକ୍ଷ୍ମଣ ଓ ସୀତାଙ୍କୁ ତମସାତୀରରେ ଛାଡ଼ି ସୁମନ୍ତ ବାହୁଡ଼ିଗଲେ । ରାଣୀ ସମୂହ ଓ ପାତ୍ରମନ୍ତ୍ରୀଙ୍କ ସହିତରେ ଥାଇ ରାଜା ଦଶରଥ ପଚାରନ୍ତେ, ସେ କହିଲେ, "ରାମ ଓ ଲକ୍ଷ୍ମଣ ଦୁଇଭାଇ ମୁନିବେଶ ଧରି ଜାନକୀଙ୍କୁ ସଙ୍ଗରେ ନେଇ ମୋତେ ନ କହି ରାତ୍ର ଥାଉଁ ଅବାଟରେ ଚାଲିଗଲେ ।"

୭ମ ପଦ—ରାମ ଲକ୍ଷ୍ମଣଙ୍କର ବନବାସ କଥାମାନ ଶୁଣି ରାଜା ସେହି ବନବାସକୁ ନେତ୍ର ଓ ହୃଦୟରେ ସ୍ଥାନ ଦେଲେ, ନେତ୍ରରେ 'ବନ' ଅର୍ଥାତ୍ ଜଳ ବାସ କଲା (ନେତ୍ରରୁ ଲୋତକ ଝରିଲା) । ବନରେ ମୃଗ ବିହାର କଲାପରି ହୃଦୟରେ ରାମଚନ୍ଦ୍ର ବିହାର କଲେ । ସେ ସବୁବେଳେ ରାମ ରାମ ହୃଦୟରେ ଗୁଣି ହେଲେ । ବନ ମଧ୍ୟରେ ପକ୍ଷୀମାନେ ଅବ୍ୟକ୍ତ ମଧୁର ଧ୍ୱନିରେ ଶବ୍ଦ କଲାପରି ରାଜାଙ୍କ ହୃଦୟ ବ୍ୟାକୁଳ ଶବ୍ଦରେ ପୂରି ଉଠିଲା । ବନରେ ପୁଷ୍ପ ସବୁ ଭୃଙ୍ଗମାନଙ୍କରେ ମିଳିତ ହେଲାପରି ରାଜାଙ୍କର ଉତ୍ତମମନ ଭ୍ରାନ୍ତିରେ ପୂର୍ଣ୍ଣ ହେଲା । ( ରାମଙ୍କ ବନବାସ କଥା ଶୁଣି ଦଶରଥଙ୍କ ନେତ୍ରରୁ ଲୋତକ ଝରିଲା, ସେ ହୃଦୟରେ ରାମ ନାମ ଘୋଷି ହେଲେ । ଚିତ୍ତ ବଡ଼ ବ୍ୟାକୁଳ ହେଲା ଏବଂ ତାଙ୍କର ଅଠଳମନରେ ମଧ୍ୟ ବିଭ୍ରମ ଉପୁଜିଲା ) । ଅନନ୍ତର ଏହିପରି ବ୍ୟାକୁଳିତ ଓ ଅସ୍ଥିର ଚିତ୍ତ ଦଶରଥ କହିଲେ—

୮ମ ପଦ—"ପୂର୍ବେ ମୁଁ ବ୍ୟାଧପ୍ରାୟ ହୋଇ ଜଳ ଘାଟରେ ଜୀବ ବଧ କରିବା ପାଇଁ ଜଗି ବସିଥିଲି । ସେନେ ଅନ୍ଧ ମୁନିଙ୍କ ପୁତ୍ର ଜଳ ନେବାବେଳେ

ବୁଡାଇ କୁମ୍ଭ ସେ କୁମ୍ଭୀ — ଶବଦ ଭ୍ରମେ ଅରମ୍ଭି
ତାକୁ ନାଶିଲି ପ୍ରହାରି ଶର ଯେ ।୮।
ତ୍ୟଜିଲେ କଳତ୍ରେ ମାତା — ପିତା ଯଥା ପତିବ୍ରତା
ଚିତା ରଚାଇ ମୋହର କରେ ଯେ ।
ବାୟୁସଖାରେ ପଶିଲେ — ସେକାଳେ ଏ ଶାପ ଦେଲେ
ସୁତ ମୁଖ ନ ଦେଖି ନାଶରେ ଯେ ।୯।
ବଶାମନ୍ତି ସେହି କାଳ — ଜୀବନ ସିନ୍ଧୁର ମୂଳ
ହେଲା ଅଶୁଭ ସ୍ୱପ୍ନ ମହିଷୀ ଯେ ।
ବୀର ଗଣେଶ ଶ୍ରୀରାମ — ମୂଷିକ କରଣେ କ୍ଷମ
ଯମକୁ ସେ ହୋଇ ନାହାନ୍ତି ପାଶି ଯେ ।୧୦।

---

୮ମ ପଦ—ବ୍ୟାଧ—ଶବର । କୁମ୍ଭ—ମାଠିଆ । କୁମ୍ଭୀ—ହସ୍ତୀ ।
୯ମ ପଦ—ଚିତା—ଶ୍ମଶାନାଗ୍ନି । ବାୟୁସଖା—ଅଗ୍ନି ।
୧୦ମ ପଦ—ପାଶି—ପାଖରେ ।

---

କୁମ୍ଭ ଜଳରେ ବୁଡାନ୍ତେ, ସେ କୁମ୍ଭ 'କୁମ୍ଭୀ' ହସ୍ତୀର ପ୍ରାୟ ଶବ୍ଦ କଲା । (ମାଠିଆ ପାଣିରେ ବୁଡାଇଲାବେଳେ ଯେଉଁ ଶବ୍ଦ ହେଲା, ତାହା ହାତୀର ଶବ୍ଦପରି ଶୁଭିଲା) । ମୁଁ ଭୁଲବଶତଃ ହସ୍ତୀ ବୋଲି ମନେ କରି ଶର ପ୍ରହାରଦ୍ୱାରା ତାକୁ ବିନାଶ କଲି ।"

୯ମ ପଦ—"ପରେ ଜାଣିପାରି ସେ କଥା ଯାଇ କହିବାରୁ ତାହାର ମାତା ପିତା ଦୁଃଖିତ ଚିତ୍ତରେ ମୋର ହସ୍ତରେ ଚିତାଗ୍ନି ଜଳାଇଲେ ଏବଂ ଯେପରି ପତିବ୍ରତା ନାରୀ ପତିର ଚିତାରେ ପ୍ରବେଶ କରେ, ସେହିପରି ସେ ଅଗ୍ନିରେ ପଶିଲେ । ସେତେବେଳେ ମୋତେ ଶାପ ଦେଲେ, ତୋହର ନାଶ ସମୟରେ ତୁ ପୁତ୍ରର ମୁଖ ଦେଖିବୁ ନାହିଁ ।"

୧୦ମ ପଦ—ସେହି ଶାପର ସମୟ ଆସି ଉପସ୍ଥିତ ହେଲା (ମୋହର ମୃତ୍ୟୁ ସୁନିଶ୍ଚିତ) । ମହିଷୀ କୈକେୟୀ ମଇଁଷୀରୂପ ଅଶୁଭ ସ୍ୱପ୍ନ ପରି ହେଲା (ମଇଁଷୀ ସ୍ୱପ୍ନ ଦେଖିଲେ ମୃତ୍ୟୁ ହୁଏ) । ବୀର ଗଣେଶ ଯମକୁ ମୂଷିକ କରିବାକୁ ଏକା ସକ୍ଷମ । ଗଣେଶରୂପୀ ବୀରଶ୍ରେଷ୍ଠ ରାମଚନ୍ଦ୍ର ତ ମୋ ପାଖରେ ନାହାନ୍ତି । (ଯମ ହାତରୁ ମୋତେ ଆଉ କିଏ ରକ୍ଷା କରିବ ?)

ବହୁ ପ୍ରତାପକୁ ତହିଁ — ପକ୍ଷ ବାର ଯୋଗ ହୋଇ
ପୂର୍ଣ୍ଣେ ରାଜା କ୍ଷୟାନ୍ତଥି ହେଲା ଯେ ।
ବଢନ୍ତ ଏଣୁ ସେକ୍ଷଣ — ମାସ ସଙ୍କୁଳ ପ୍ରମାଣ
କରଣ ରାଶି ସଞ୍ଚାର ଥିଲା ଯେ । ୧୧ ।
ଗଣ୍ଡମାତ୍ରର ମନ୍ଦରେ — ସେ ନୃପ ଯେଣୁ ବସ୍ତୁରେ
ତୈଳପାତ୍ରେ ତେଣୁ କଲେ ଦାନ ସେ ।
ଚରନ୍ତୁ ଭରତପାଶେ — ପ୍ରେରଣ କଲେ ରଭସେ
ନଷ୍ଟ ବଦ୍ୟାପ୍ରାପ୍ତ ରତି ଆନ ସେ । ୧୨ ।
ବାତ ସେ ମେଘ ଗମନ — ପ୍ରାପ୍ତେ ଚଳାଇ ବମାନ୍
ପ୍ରବେଶ ହୋଇଲେ ଅଯୋଧ୍ୟାର ଯେ ।

---

୧୨ଶ ପଦ—ଗଣ୍ଡମାତ୍ରର—ଗର୍ବହର । ମନ୍ଦ—ଶନିମହାଗ୍ରହ । କନ୍ଧରୁ—ଦୂତ ।

୧୩ଶ ପଦ—ଲକ୍ଷ୍ମଣ ହୀନ—ଲକ୍ଷଣ ଶୂନ୍ୟ, ଲକ୍ଷ୍ମଣ ନ ଥିବାରୁ । ସମରଙ୍ଗ—ସମରୂପ ରଙ୍ଗରସ ।

---

୧୧ଶ ପଦ—ଯେପରି ଚାନ୍ଦ୍ର ମାସରେ ପ୍ରତିପଦାଦି ତିଥି, ପକ୍ଷ, ଯୋଗ, ବାର, କରଣ ଓ ରାଶିମାନଙ୍କର ସଞ୍ଚାର ଥାଏ, ସେହିପରି ଏହି କଥା ତନ୍ତ୍ର କହୁ ତାଙ୍କର ପ୍ରତି କଥାରେ ସ୍ୱରଭଙ୍ଗ ହେଲା ଓ ମୃତ୍ୟୁସମୟର ସାତ୍ତ୍ୱିକ ଲକ୍ଷଣମାନ ପ୍ରକାଶ ପାଇଲା । କ୍ରମେ ଇନ୍ଦ୍ରିୟସମୂହ ଶିଥିଳ ହୋଇ ପଡ଼ିଲା । ମୃତ୍ୟୁ ତାହାଙ୍କର ଅତିଥି ରୂପେ ଉପସ୍ଥିତ ହେଲା । ତେଣୁ ଏହି ମୃତ୍ୟୁ ସମସ୍ତ ଚାନ୍ଦ୍ରମାସ ସଙ୍କୁଳ ବଢିତ ହେଲା । ( ଚନ୍ଦ୍ର ଯେପରି କ୍ରମଶଃ କ୍ଷୀଣ ହୋଇ ଅମାବାସ୍ୟାରେ କ୍ଷୟ ହୁଏ, ସେହିପରି ରାଜା ଦଶରଥ କ୍ରମଶଃ ଶିଥିଳ ହୋଇ ଶେଷରେ ନିଧନ ଲଭିଲେ )।

୧୨ଶ ପଦ—ରାଜା ଦଶରଥ ଯେହେତୁ ଶନିଗ୍ରହର ଗଣ୍ଡମାତ୍ରୁ ଖର୍ବ ହୋଇଥିଲେ, ତେଣୁ ପାତ୍ର ମନ୍ତ୍ରୀମାନେ ବଶିଷ୍ଠ କରି ତାଙ୍କର ମୃତ ଦେହକୁ ତୈଳ ପାତ୍ରରେ ରଖିଲେ । ( ପୁତ୍ରମାନେ ପାଖରେ ନ ଥିବାରୁ ମହାବୀର ଦଶରଥଙ୍କ ମୃତ ଦେହ ତୈଳ ପାତ୍ରରେ ରଖାଗଲା । ପୁଣି ଶନିଦୃଷ୍ଟି ସମୟରେ ତୈଳ-ପାତ୍ର ଦାନ କରିବା ବିଧି )। ଭରତଙ୍କ ନିକଟକୁ ବେଗରେ ଦୂତ ପ୍ରେରଣ କଲେ । ସେ ଦୂତମାନେ ଐନ୍ଦ୍ରଜାଲିକଙ୍କ ପରି କପଟ କଥାମାନ ଭରତଙ୍କୁ କହିଲେ ।

୧୩ଶ ପଦ—ଦୂତଙ୍କଠାରୁ କପଟ କଥାମାନ ଶୁଣି ବାୟୁବେଗେ ମେଘ ଗମନ କଲା ପ୍ରାୟ ଭରତ ରଥ ଚଳାଇ ଆସି ଅଯୋଧ୍ୟାରେ ପ୍ରବେଶ ହେଲେ,

ବିଧବା ନାରୀ ସମାନ   ଦିଶେ ସେ ଲକ୍ଷ୍ମଣ ସ୍ଥାନ
ରାମରଙ୍ଗ ହୋଇବାରୁ ଦୂର ଯେ । ୧୩ ।
ବିମନରେ ନରପନ୍ତି   କୁରଙ୍ଗୀ ପର ହୁରନ୍ତି
ନିଶବଦ ଯଥା ମୃଗଗଣ ଯେ ।
ବରଷାଋତୁ ପ୍ରକାର   ଅନ୍ତଃପୁରସ୍ଥା ନୀରର
ଭର-ଭୂମି ପଙ୍କିଳ କାରଣ ଯେ । ୧୪ ।
ବଣା ଗଣଏଣୀ ପ୍ରାୟେ   ଏଣେ ତେଣେ ଗୃହୁଁ ଧାଏ
ଚିନ୍ତାପର ହୃଦେ ଜଳେ ଚିନ୍ତା ଯେ ।
ଭରତ ମାତାଙ୍କୁ ଚଣ୍ଡୀ   ଅଗ୍ରେ ଯଥା ସିଂହ ମଣ୍ଡି
ପୁରାଣ ପୃଚ୍ଛିଲେ ପ୍ରାୟେ ଶ୍ରୋତା ଯେ । ୧୫ ।
ବକ୍ତା ହୋଇଲେ ଜନନୀ   ପ୍ରଥମ ଯୁଗ ନ ମାନି
ଇଳାବର୍ତ୍ତି ବହ୍ନି ଭବ ତାତ ଯେ ।
କରୁଥିଲେ ଅଭଷେକ   ଶ୍ରୀରାମେ ହୋଇ ଉତ୍ସୁକ
ଉପାୟେ ମୁଁ ତାହା କଲି ହତ ଯେ । ୧୬ ।

---

୧୬ଶ ପଦ—ପ୍ରଥମ ଯୁଗ— ସତ୍ୟ । ଇଳାବର୍ତ୍ତି ବହ୍ନି—ଭ୍ରମରେ ପଡ଼ି ।

---

ଆସି ଦେଖିଲେ, ଅଯୋଧ୍ୟା ରାମ ଓ ଲକ୍ଷ୍ମଣଙ୍କ ବିହୁନରେ 'ରାମରଙ୍ଗ' ହେଲା ଓ 'ଲକ୍ଷ୍ମଣ' ସିନ୍ଦୂରାଦି ଚିହ୍ନ ଶୂନ୍ୟ ବିଧବା ନାରୀ ପ୍ରାୟ ଦେଖା ଯାଉଅଛି ।

୧୪ଶ ପଦ—ଦୁଃଖ ମନରେ ଲୋକମାନେ କପୋତ ପରି ଧ୍ୟାନରତ ଓ ମୃଗଗଣ ନିଃଶବ୍ଦରେ ଯୋଗ ସାଧନ କଲା ପରି ମୂର୍ତ୍ତି ନୀରବ ହୋଇଅଛନ୍ତି । ବର୍ଷା ଋତୁରେ ଭୂମି କାଦୁଅ ହେଲା ପରି ଅନ୍ତଃପୁରର ସ୍ତ୍ରୀମାନେ ନେତ୍ର ଜଳରେ ବକ୍ଷଦେଶକୁ ଭିଜାଇ ଦେଉଅଛନ୍ତି ।

୧୫ଶ ପଦ—ଯୂଥଭ୍ରଷ୍ଟା ହରିଣୀ ପରି କେତେ ସ୍ତ୍ରୀ ଏଣେ ତେଣେ ଗୃହୁଁଛି । ସମସ୍ତଙ୍କ ହୃଦୟରେ ଚିନ୍ତା ଅଗ୍ନି ପରି ଜଳୁଅଛି । ଏସବୁ ଅମଙ୍ଗଳ ମାନ ଦେଖି ଭରତ ମାତାଙ୍କୁ ପ୍ରଣାମ କରି ଦୁହିଙ୍କ ଅଗ୍ରତରେ ସିଂହ ଉପବେଶନ କଲା ପ୍ରାୟ ମାତାଙ୍କ ଆଗରେ ବସିଲେ । ପୁଣି ଶ୍ରୋତା ପୌରାଣିକଙ୍କୁ ପଚାରି ସବୁ ବୁଝିଲା ପରି ଅଯୋଧ୍ୟାର କଥା ସବୁ ପଚାରିଲେ ।

୧୬ଶ ପଦ—ଜନନୀ କୈକେୟୀ ବକ୍ତା ହୋଇ କହିଲେ, "ତୁମ୍ଭର ପିତା ଦଶରଥ ଭ୍ରମବଶତଃ ସତ୍ୟ ଲଙ୍ଘନ କରି ଉତ୍ସୁକ ମନରେ ଶ୍ରୀରାମଙ୍କର ଅଭିଷେକ କରୁଥିଲେ । ମୁଁ ଉପାୟ ଦ୍ୱାରା ତାହା ବିନାଶ କଲି ।"

ବସୁମ୍ବର ପତି ହୋଇ ସୀତାବଲ୍ଲଭ ଉତ୍ସାହ

ପଶୁ ବୃଦ୍ଧି ଦେଖି ପେଷି ବନ ଯେ ।

ବିନାଶ ତାମସୀ ମତେ ରାମ ଲକ୍ଷ୍ମଣଙ୍କ ଅସ୍ତେ

ନରପତି ହୋଇଲେ ବିହନ ଯେ । ୧୭ ।

ବିଜୟ ଭୁ ଘନ ହୋଇ କର ଦୀପ୍ତ କର ମନ୍ତ୍ର

ଶ୍ରବଣରେ ସେ ଭରତ କହେ ଯେ ।

ବୋଲିବା କି ମାତା ତୁମ୍ଭେ ରାହୁ ହେଲ ଏ ଅରମ୍ଭେ

ଦ୍ୱିକାଳେ ବେନିକୁଳ ଗ୍ରାସେ ସେ ।୧୮।

କଳ ପକାଇ ମଧ୍ୟର ବେନିଅଂଶ କଲ ସାର

ଏ ବୁଦ୍ଧି ଶିଖିଲ କାହୁଁ ଏବେ ଯେ ।

ବୋଇଲେ ଧାତ୍ରୀ ମନ୍ଥରା ସୁରଭି ସେ ପରମ୍ପରା

ଗୋପାଳପୁତ୍ରେ ଧାଇଁଲେ ତବେ ଯେ ।୧୯।

---

୧୭ଶ ପଦ—ବସୁମ୍ବର ପତି—ପୃଥିବୀ ପତି । ତାମସୀ—ରାତ୍ରି ।

୧୮ଶ ପଦ—ଘନ—ସୂର୍ଯ୍ୟ । କର—କିରଣ । ଦୀପ୍ତ—ଉଜ୍ଜ୍ୱଳ ।

---

୧୭ଶ ପଦ—"ପୃଥିବୀ କନ୍ୟା ସୀତାଙ୍କର ପତି ରାମଚନ୍ଦ୍ର ଶୀଘ୍ର ପୃଥିବୀର ପତି ହେବା ପାଇଁ ଉତ୍ସୁକ ହୋଇଥିଲେ । ତାଙ୍କର ଏହି ପଶୁବୃଦ୍ଧି ଦେଖି ତାଙ୍କୁ ମୁଁ ବନକୁ ପେଷିଦେଲି ( ପଶୁ ବନ ମଧ୍ୟରେ ବାସ କରେ ) । ଲକ୍ଷଣଯୁକ୍ତ ମନୋହର ଚନ୍ଦ୍ର ଅସ୍ତ ହେଲେ ଯେପରି ରାତ୍ରି ବିନଷ୍ଟ ହୁଏ, ସେହିପରି ରାମ ଲକ୍ଷ୍ମଣ ବନ ଗମନରେ ରାଜା ଦଶରଥ ବିନାଶ ହେଲେ ।"

୧୮ଶ ପଦ—"ରାତ୍ରି ଗଲେ ସୂର୍ଯ୍ୟ ନିଜ କିରଣପ୍ରଭା ଦେଖାଇ ପୃଥିବୀରେ ବିଜୟୀ ପରି ତୁ ରାଜା ହୋଇ ପ୍ରଜାଙ୍କଠାରୁ କର ଆଦାୟ କରି ଅଯୋଧ୍ୟା ପୁରୀରେ ବିହାର କର ।" ଭରତ ମାତାଙ୍କର ଏହି କଥା ଶ୍ରବଣ କରି କହିଲେ, "ତୁମ୍ଭେ କି ମାତା, ତୁମ୍ଭଙ୍କୁ ଅଧିକ ବା କଅଣ କହିବି ? ରାହୁ ପ୍ରତିପଦ୍‌ଯୁକ୍ତ ଅମାବାସ୍ୟା ଓ ପୂର୍ଣ୍ଣିମାରେ ଚନ୍ଦ୍ର ଓ ସୂର୍ଯ୍ୟ ଉଭୟଙ୍କୁ ଗ୍ରାସ କଲାପରି ତୁମ୍ଭେ ଅଯୋଧ୍ୟାର ଉତ୍ସବ ସମୟରେ ଆମ୍ଭ ଦୁଇକୁଳ ( ତୁମ୍ଭ କଥାନୁସାରେ ରାମଚନ୍ଦ୍ର ରୂପୀ ଚନ୍ଦ୍ର ଓ ମୋ ପରି ସୂର୍ଯ୍ୟକୁଳ ) ଗ୍ରାସ କଲ ।

୧୯ଶ ପଦ—"ଜଳ ମଧ୍ୟରେ କଳ ପକାଇ ଦୁଇ ଭାଗ କରି ଦେଲ । ଏବେ ଏ ବୁଦ୍ଧି କାହୁଁ ଶିଖିଲ ?" ( ଆଗେ ତ ଏ ବୁଦ୍ଧି ନ ଥିଲା ) । ଭରତଙ୍କ କଥା ଶୁଣି କୈକେୟୀ କହିଲେ, "ଦାସୀ ମନ୍ଥରା ହସ୍ତରେ ମନ୍ତ୍ରଭେଦ ଶିଖାଇଲା ।" ଏହା ଶୁଣି ଦୁଇ ଭାଇ ପାଖକୁ ଧାଇଁଗଲେ ପରେ ଭରତ ଚେଡ଼ୀରେ ମନ୍ଥରା ପାଖକୁ ଦଉଡ଼ି ଗଲେ ।

ତପାଣ ବେଶ ଧଇଲେ ଲଗୁଡ଼ ପ୍ରହାର କଲେ
ଚରଣଙ୍କୁ ବାନ୍ଧଲେ ରଙ୍ଗୁରେ ଯେ ।
ବେନ ହସ୍ତ ଯୋଡ଼ ପାଇଁ କୌଶଲ୍ୟା ପ୍ରାଣେ ବନସ୍ଥୀ
ବୋଧିଲେ ସେ ବଚନ ମଞ୍ଜୁରେ ଯେ । ୨୦ ।
କ୍ଷିଷ୍ଟାଦ ଶୁଣି ଅସି ମନ୍ତ୍ରୀପ୍ରଭୃ ତୁଷ ଭସି
ବୋଇଲେ ସେ କ ହୋଇ ହୋଇବୁଦେ ହେ ।
ଭଲ୍ଲ ସ୍ୱଙ୍ଗରେ ସ୍ଫଟିକ ସମମୂଲ୍ୟ ଅବିବେକ
ଏତେ ବିବେକ ନ କଲ ହୃଦେ ଯେ । ୨୧ ।
ବଧୂପୂର୍ବେ ତହୁଁ ଗଲେ ପ୍ରେତକ୍ରିୟାକୁ ସାରିଲେ
ଅସ୍ଥାନେ ବସିଲେ ପ୍ରାନ୍ତ ଦନ ଯେ ।
ତେଷ୍ଟନ ଜନସମସ୍ତ ସୁମନ୍ତ୍ରେ ପୁଚ୍ଛେ ଭରତ
କେଉଁ ଦେଶେ ଶ୍ରୀରାମ ଗମନ ହେ । ୨୨ ।

---

୨୦ଶ ପଦ—ତପାଣ-ବେଶ—ବେଶରୂପବ ଶଙ୍ଖ । ଲଗୁଡ଼—ବାଡ଼ ।
ମଞ୍ଜୁରେ—ମନୋହର ଭାବରେ ।
୨୨ଶ ପଦ—ଅସ୍ଥାନେ—ସଭାରେ । ପ୍ରାନ୍ତ—ଶେଷ ।

---

୨୦ଶ ପଦ—ଶତ୍ରୁଘ୍ନ ପିଲା ଗାଇର ଚିହ୍ନ ଦେଇ ପରେ ଭରତ ମନ୍ଥରାର ବେଶ ଧଇଲେ । ତାକୁ ବାଡ଼ ଦ୍ୱାରା ପ୍ରହାର କରି ତା ହାତ ପାଦକୁ ଦଉଡ଼ିରେ ବାନ୍ଧଲେ । ତତପରେ କୌଶଲ୍ୟାଙ୍କ ପାଖକୁ ଯାଇ ଦୁଇହାତ ଯୋଡ଼ି ବନସ୍ଥ ପ୍ରକାଶ ପୂର୍ବକ ତାଙ୍କୁ ବୋଧ କଲେ ।

୨୧ଶ ପଦ—ଭରତ ଆସିବାର ଶୁଣି ବଶିଷ୍ଠାଦ ପାତ୍ରମାନେ ଅସି କହିଲେ, "ତୁମ୍ଭେ ରାଜା ହୁଅ" । ଭରତ କହିଲେ, "ହେ ଋଷିବର୍ଗ ! କ କଥା କହୁଅଛ ? ( ରାଜା ହୋଇ ଅଗ୍ରଜଙ୍କ ପଦ କହୁଅଛ ) । ତୁମ୍ଭେ କଣ ହୃଦୟରେ ବିଚାର କରିପାରୁ ନାହଁ ଯେ, କେବଳ ଅବିବେକୀ ଲୋକ ହୀରକର ମୂଲ୍ୟ ସହିତ ସ୍ଫଟିକ ପଥରର ମୂଲ୍ୟକୁ ସମାନ କରିଥାଏ । ( ରାମଙ୍କ ସହିତ ମୋତେ ସମାନ କଲେ ତୁମ୍ଭେ ଅବିବେକଙ୍କ ସହିତ ଗଣନା ହେବ ) ।"

୨୨ଶ ପଦ—ତତ୍ପରେ ଭରତ ଯାଇ ବଧୂପୂର୍ବକ ଶ୍ରାଦ୍ଧାଦ ପ୍ରେତକର୍ମ ସମାପ୍ତ କଲେ । ଶେଷଦନ ସଭା ମଣ୍ଡପରେ ପାତ୍ରମନ୍ତ୍ରୀଙ୍କ ଦ୍ୱାରା ବେଷ୍ଟିତ ହୋଇ ବସି ସୁମନ୍ତ୍ର ମନ୍ତ୍ରୀକି ପଚାରିଲେ, "ଶ୍ରୀରାମ କେଉଁ ଆଡ଼କୁ ଗଲେ କ ?"

ବିନାୟକ ଲମ୍ବୋଦର ହେଉଛି ହେଲେ ଗଣେଶ୍ୱର
ତାତ କୋଳେ ତାତ ତୋଷେ ଦେଲେ ଯେ ।
ବାଲଚର୍ଯ୍ୟ ଯେ ଅଛନ୍ତି ରାମ ଥିଲେ ସେହି ମତ
ତୁମ୍ଭ ନୃପ ବଶିଷ୍ଠେ ବୋଇଲ ଯେ । ୨୩ ।
ବାଣୀରେ ଭରତ ମୋହ ଗଜମୂର୍ଖ ନୋହେ ମୁହିଁ
ଗିରାଙ୍କୁଶ ଘାତ କପାଁ କର ହେ ।
ବିଧିର ଅଜ୍ଞାତ ଦୋଷ କଳଙ୍କ ଯଥା ପ୍ରକାଶ
ଧାତା ମାତା ରଖିଲେ ମୋଠାର ଯେ । ୨୪ ।
ବାହାରଲେ ରାମ ଅଣି ନଗ୍ର ଶୂନ୍ୟ ସେହିକ୍ଷଣି
ବୃଥା ବୋଲି ମନ୍ତ୍ରୀ କରୁଁ ବାଧ ଯେ ।
ବିଶୁଦ୍ଧ ସ୍ୱର୍ଣ୍ଣ ପିତ୍ତଳ ମିଶିଛି ଯେବେ ତା ଜଳ
ପ୍ରତିଉତ୍ତର କଲେ ଶତ୍ରୁଘ୍ନ ଯେ । ୨୫ ।

---

୨୩ଶ ପଦ—( ମୁଁ ରାଜା ହେବାକୁ ଅଯୋଗ୍ୟ, ଏହା ଭରତ ପୂର୍ବେ କହିଥିବାରୁ) ବଶିଷ୍ଠ କହିଲେ, "ସାନ ପୁତ୍ର ଗଣେଶ 'ବିନାୟକ' ନାୟକ ପଦର ଅଯୋଗ୍ୟ, ପୁଣି ଲମ୍ବୋଦର ହୋଇ ମଧ୍ୟ ( ଅଯୋଗ୍ୟ ହେଲେ ସୁଦ୍ଧା ) ପିତା ମହାଦେବଙ୍କ କୋଳରେ ଗଣନାଥ ହୋଇ ଅଛନ୍ତି । ସେହିପରି ପିତା ଦଶରଥ ତୁମ୍ଭଙ୍କୁ ରାଜପଦ ଦେଇ ଅଛନ୍ତି । ତାଙ୍କ ଦେହ ଥାଉଁ ଥାଉଁ ଗଣେଶ ଗଣନାଥ ହେଲେ ପ୍ରାୟ ରାମ ଥିଲେ ସୁଦ୍ଧା ପିତା କୋଳରେ ତୁମ୍ଭେ ରାଜା ହୁଅ ।"

୨୪ଶ ପଦ—ବଶିଷ୍ଠଙ୍କ କଥା ଶୁଣି ଭରତ ଉତ୍ତରରେ ମୋହିତ ହୋଇ କହିଲେ, "ମୁଁ ଗଜମୂର୍ଖ ନୁହେଁ, ମୋତେ କାହିଁକି ଏ ବଚନ ରୂପ ଅଙ୍କୁଶରେ ଆଘାତ କରୁଅଛ ? ଯେପରି ବିଧାତା ଅଜ୍ଞାତ ଦୋଷରେ ( ବିନା ଦୋଷରେ ) ଚନ୍ଦ୍ରଠାରେ କଳଙ୍କ ରଖିଲା, ସେହିପରି ମାତା କୈକେୟୀ ମୋଠାରେ ମୋର ଅଜ୍ଞାତରେ ଅପବାଦରୂପ କଳଙ୍କ ରଖିଅଛି ।"

୨୫ଶ ପଦ—ଏହା କହି ଭରତ ରାମଙ୍କୁ ଆଣିବା ପାଇଁ ବାହାରନ୍ତେ ନଗ୍ର ଶୂନ୍ୟ ହୋଇଗଲା, ( ନଗରର ପ୍ରଜାମାନେ ତାଙ୍କ ସହିତ ରାମଙ୍କୁ ଆଣିବା ପାଇଁ ବାହାରିଲେ ) । ଏହା ଦେଖି ମନ୍ତ୍ରୀମାନେ 'ଯିବା ବୃଥା' ଏହା କହି ଯିବାପାଇଁ ବାଧା ଦିଅନ୍ତେ, ଶତ୍ରୁଘ୍ନ ପ୍ରତିଉତ୍ତର କଲେ, "ବିଶୁଦ୍ଧ ସୁବର୍ଣ୍ଣରେ ପିତ୍ତଳ ମିଶିଅଛି, ତାକୁ ପୋଡିଦେବା ଉଚିତ । ( ବିଶୁଦ୍ଧ ସୁବର୍ଣ୍ଣ ଭରତଙ୍କ ସଙ୍ଗରେ ମାତୃ କୁମନ୍ତ୍ରଣା ରୂପ ପିତ୍ତଳ ମିଶିଛି । ରାମଙ୍କୁ ଆଣିବା ରୂପ ଅଗ୍ନିରେ ପୋଡିଦେଲେ ଭରତଙ୍କ ବିଶୁଦ୍ଧତା ପ୍ରକାଶ ପାଇବ ) ।"

ବାଟରେ ହେଲା ଏମନ୍ତ      ଶୃଙ୍ଗବେର ଅଟପାତ-
କର ମହାଧନୀରେ ବିବାଦୀ ଯେ ।
ବିଟପ ଏକ ପଦକା      ସେ ନାନାବର୍ଣ୍ଣେ ଶୋଭିକା
ନିର୍ମଳ ହୃଦେ ହେଲା ପ୍ରମୋଦ ଯେ । ୨୬ ।
ବିପିନେ ଭରଦ୍ୱାଜର      ସବଳେ ପ୍ରବେଶ ବୀର
ତପୋବଳେ ସମସ୍ତ ରଚିଲେ ସେ ।
ବିବୁଧପ୍ରାପ୍ୟେ ସୁଧାଭୁଜ୍ୟ      ଭୋଜନ ଦେଲେ ତହାଙ୍କ
ସୁରପ୍ରାପ୍ୟ ସନ୍ତୋଷେ ଭୁଞ୍ଜିଲେ ସେ । ୨୭ ।
ଦ୍ୟୁଚରଙ୍କ ଉତ୍ତରଙ୍କୁ      ଭୋଗ ପ୍ରାପ୍ୟ ଦିବ୍ୟସ୍ତ୍ରୀଙ୍କୁ
ସେବିଲେ ଫଳଚନ୍ଦନେ ଶୋଭି ଯେ ।
ବିତାନ ତଳେ ଶେଷରେ      ବିହରି ମହାସୁଖରେ
କଷ୍ଟ ନାହିଁ ରାତ୍ର ଗଲା ପାହି ଯେ । ୨୮ ।

---

୨୬ଶ ପଦ—ଶୃଙ୍ଗବେର—ଅଦା । ଏକପଦକା—ଗୃହପଣ ।
୨୮ଶ ପଦ—ଭୋଗ—ସ୍ୱର୍ଗଭୋଗ । ଦିବ୍ୟସ୍ତ୍ରୀ—ସ୍ୱର୍ଗର ରମଣୀ ! ବିତାନ—ଚାନ୍ଦୁଅ ।

---

୨୬ଶ ପଦ—ଅଦା ବ୍ୟବସାୟୀ ଗୃହପଣ ଗଛର ଧନ ନାନାବର୍ଣ୍ଣରେ ମଣ୍ଡିତ ମହା ଧନବନ୍ତ ଲୋକ ସହିତ ବିବାଦୀ ହେଲାପରି, ଭରତ ଯାଉଁ ଯାଉଁ ଶୃଙ୍ଗବେରପୁରର ଅଧିପତି ଗୁହକ ଶବର ବହୁସୈନ୍ୟ ପରିବେଷ୍ଟିତ ଭରତଙ୍କ ସଙ୍ଗେ ବିବାଦୀ ହୋଇ ବାଟରେ ବାଧା ଦେଲା । ମାତ୍ର କଥାବାର୍ତ୍ତା ହେଲାପରେ ଉଭୟେ ହୋଇ ସ୍ୱଚ୍ଛ ହୃଦୟରେ ଆନନ୍ଦ ଅନୁଭବ କଲେ ।

୨୭ଶ ପଦ—ସେଠାରୁ ଯାଇ ବୀର ଭରତ ସୈନ୍ୟ ସହିତରେ ଭରଦ୍ୱାଜ ମୁନିଙ୍କ ଆଶ୍ରମରେ ପ୍ରବେଶିଲେ । ସେ ମୁନି ତପଃପ୍ରଭାବରେ ସେମାନଙ୍କୁ ଚର୍ଚ୍ଚା କଲେ । ଯେହ୍ନେ ଦେବତାଙ୍କୁ ଅମୃତ ଦେଲେ ପ୍ରାପ୍ୟ, ଋଷି ତତ୍‌କ୍ଷଣାତ୍ ସେମାନଙ୍କୁ ଅମୃତ ସମ ଭୋଜନ ଦେଲେ । ସେମାନେ ଦେବତାଙ୍କ ପରି ସନ୍ତୋଷ ମନରେ ତାହା ଭୁଞ୍ଜିଲେ ।

୨୮ଶ ପଦ—ଋଷିଶ୍ରେଷ୍ଠ ଋଷି ସେମାନଙ୍କୁ ସ୍ୱର୍ଗ ସୁଖ ପ୍ରଦାନ କଲେ । ଦିବ୍ୟ ସ୍ତ୍ରୀମାନେ ଫୁଲ ଚନ୍ଦନରେ ଶୋଭିତ ହୋଇ ଆସି ସେମାନଙ୍କୁ ପୂଜା କଲେ । ଚାନ୍ଦୁଆ ତଳେ ମହାସୁଖରେ ବିହାର କରି ସେମାନଙ୍କର ରାତ୍ର ପାହିଗଲା । ପ୍ରଭାତରେ ସେମାନେ ଦେଖିଲେ ଯେ ଆଉ କଷ୍ଟ ନାହିଁ । ( ଋଷିଙ୍କର ତପ ପ୍ରଭାବରେ ବଣରେ ସବୁ ସୁଖ ମିଳିଲା, ମାତ୍ର ପ୍ରଭାତରେ ସ୍ୱପନ ହୋଇଗଲା ) ।

ଦଶସ୍ତର ମୁନି ଯେହୁ ସୁବାହୁ ବଳେ ସୁବାହୁ
ନାଶେ ଭୂଜ ଧନା ଭୂତ ଭୂଷା ଯେ ।
ଶତ୍ରୁଘ୍ନ ଲକ୍ଷ୍ମଣେ ଯେହ୍ନ ସହିତ ଲକ୍ଷ୍ମଣେ ସେହୁ
ଜନକୀ ନୋହୁ ଜାନକୀ ଅଣା ଯେ । ୨୯ ।
ବିରକ୍ତ ଚିତ୍ରକୂଟରେ ବିହରେ ଚିତ୍ରକୂଟରେ
ଭଟକୁ ଚେଙ୍କ ଭଟକରେ ସେ ।
ଅଯୋଧ୍ୟାଜ୍ଞପ ଶୁଣି ସେ ଗମନ କଲେ ଭରତେ
ପରବେଶ ହୋଇ ନିକଟରେ ସେ । ୩୦ ।
ବ୍ୟାଳସମୂହକୁ ନାଶି ସିଂହ କି ଘଉଡ଼ି ଆସି
ଘୋଷି ଦନ୍ତେ ଉଠି ସୌମିତ୍ରେୟ ଯେ ।
ଅଲେଖିଲେ ପ୍ରଜାପରେ ବାଜୀ ହସ୍ତେ ଧନୁଶର
ହୁର ଚଢ଼ି ଆସେ ଚମୂ ଚମୂ ଯେ । ୩୧ ।
ବାହନ କରି ସ୍ୱଦନ୍ତୀ କେତେ ବସି ରଥେ ଗଜ
ଚଳିଲେ ଚତୁରଙ୍ଗ ସୈନ୍ୟ ଯେ ।

---

୨୯ଶ ପଦ—ମୁନି ଭରଦ୍ୱାଜ ଶତ୍ରୁଘ୍ନ ଭାବରେ କହିଲେ, "ରାମଚନ୍ଦ୍ର 'ସୁବାହୁ' ଉତ୍ତମ ବାହୁବଳରେ ସୁବାହୁ ଦୈତ୍ୟକୁ ମାରି 'ଭୂତ' ସମସ୍ତ ପ୍ରାଣୀଙ୍କର 'ଭୂଷା' ଭୂଷଣ ହୋଇ ଅଛନ୍ତି । 'ଲକ୍ଷ୍ମଣେ' ଲକ୍ଷଣ ଶୁଭଲକ୍ଷଣ ସଂଯୁକ୍ତ ହୋଇ ଲକ୍ଷ୍ମଣଙ୍କ ସହିତ ଏବଂ 'ଜାନକୀ' ରଥ ସୁଖ ପରିହାର ପୂର୍ବକ ଜାନକୀ ସୀତାଙ୍କ ସଙ୍ଗରେ ବନରେ ବୁଲୁଅଛନ୍ତି ।"

୩୦ଶ ପଦ—"ଅଯୋଧ୍ୟାର ଅପୂର୍ବ ବିଭବରେ ବିରକ୍ତ ହୋଇ ସେ ରାମ ଚିତ୍ରକୂଟ ପର୍ବତ ତଳଦେଶରେ ବିହାର କରୁଅଛନ୍ତି ।" ଭରତ ଭରଦ୍ୱାଜ ଋଷିଙ୍କଠାରୁ ଏହିପରି ଅଯୋଧ୍ୟାଜ୍ଞପ ଶୁଣି ସେଠାରୁ ବେଗରେ ଗମନ କଲେ ଓ ଚିତ୍ରକୂଟ ପର୍ବତ ନିକଟରେ ପ୍ରବେଶ ହେଲେ ।

୩୧ଶ ପଦ—ଭରତ ସୈନ୍ୟମାନଙ୍କ ସହିତ ଶୀଘ୍ର ଗତିରେ ଅଧନ୍ତେ ବନଜନ୍ତୁମାନେ ପଳାଇ ଯିବାରୁ 'କାଳ, ବ୍ୟାଳ, ଗଣ୍ଡା ପ୍ରଭୃତି ହିଂସ୍ରପଶୁଙ୍କୁ ନାଶ କରିବା ସିଂହ ଗର୍ଜି ଆସୁଛି କି ?" ଏହା ବିଚାରି ଲକ୍ଷ୍ମଣ ପର୍ବତ ଉପରେ ଉଠି ଦେଖିଲେ ଯେ, ପଦାତି ଅଶ୍ୱାରୋହୀ ସୈନ୍ୟମାନେ ହସ୍ତରେ ଧନୁଶର ଧରି ଶ୍ରେଣୀବଦ୍ଧ ଭାବରେ ଆସୁଅଛନ୍ତି ।

୩୨ଶ ପଦ—କେତେକ ସୈନ୍ୟ ଉତ୍ତମ ହସ୍ତୀ ଉପରେ ବସି, କେତେକ ରଥରେ ବସି ଆସୁଅଛନ୍ତି । ପତାକା ସମୂହ ଉଡ଼ୁଅଛି ।

ବେଗେ ସସମ୍ଭ୍ରମେ ଚାଲିଲେ ଶିରେ ଗୁରୁ ଆଜ୍ଞା ଘେନିଲେ
ବେନିସ୍ତ୍ରୀ ତ ମନ ରକ୍ଷାରକ୍ଷି ଯେ । ୩୫ ।
ବେଢ଼ିଲେ ଜନ ଜନନୀ ଗୁରୁ ଚତୁରଙ୍ଗ ସେନା
ଦରିଦ୍ର ଧନ ଲଭିଲା ପରି ସେ ।
ବଶିଷ୍ଠ ସର୍ବ ଚଳିଲେ, ଭରତ ପଦ ଧଇଲେ
ଗମନ କରିବା ପାଇଁ ପୁଣି ଯେ । ୩୬ ।
ବୋଲେ ରାମ ସତ୍ୟବାଦୀ ପଦେ ଅନାର୍ଥ ସମ୍ବାଦ
ଦ୍ୱିଜମନ୍ତ୍ର ପଣ୍ଡିତ ଗୁରୁ ଶୁଣ ଆସି ହେ ।
ବଳ ଯେତୁ ଜନକର ନ ମାରିଲେ ସେ କ କୁମର ?
ଦର୍ଭୁଧର ରେଣୁକାକୁ ନାଶି କି ହେ । ୩୭ ।
ବୋଇଲେ କୈକେୟୀସୁତ ଦୈତ୍ୟମାତାଙ୍କୁ ଜାତ
ହେଇଁ ତାତ ଇନ୍ଦ୍ର ଘାତ କରି ହେ ।

---

ଦଣ୍ଡେ ପର୍ଯ୍ୟନ୍ତ ଦଣ୍ଡ ପ୍ରାୟ ମଣ୍ଡକି ଭଳିଲେ ଅର୍ଥାତ୍ ଦଣ୍ଡେ ପର୍ଯ୍ୟନ୍ତ ଭୂମିରେ ଗୋଇ ସାଷ୍ଟାଙ୍ଗ ପ୍ରଣିପାତ କଲେ । ରାମଚନ୍ଦ୍ର ସ୍ନେହର ସହିତ ଟେକି ଶିଶୁକୁ କୋଳ ଧରିଲା ପ୍ରାୟ ତତ୍‌କ୍ଷଣାତ୍ କୋଳ ଧରିଲେ । ତାହା ପରେ ଦୁଇ ଭାଇ ମନ ଖୋଲା ଖୋଲି ହେଲେ ।

୩୬ଶ ପଦ—ତଦନନ୍ତର ପ୍ରଜାମାନେ ଓ ମାତାମାନେ ବଶିଷ୍ଠ, କଶ୍ୟପ, ଜାବାଳି, ବାମଦେବ—ଏହି ଗୁରୁ ବ୍ରହ୍ମଙ୍କ ସହିତ ଦରିଦ୍ର ଧନ ଲଭି ଭଳି ପରି ରାମଚନ୍ଦ୍ରଙ୍କୁ ପାଇ ଆନନ୍ଦରେ ବେଢ଼ିଗଲେ । ବଶିଷ୍ଠ ସବୁ କଥା କହିଲେ । ଅଯୋଧ୍ୟାକୁ ଫେରିଯିବା ପାଇଁ ଭରତ ରାମଚନ୍ଦ୍ରଙ୍କ ପାଦ ଧରି ଅନୁନୟ କଲେ ।

୩୭ଶ ପଦ—ଅନନ୍ତର ରାମଚନ୍ଦ୍ର କହିଲେ, "ତୁମ୍ଭେ ସମସ୍ତେ ପଣ୍ଡିତ ହୋଇ କିପରି ମୋତେ ପିତୃଙ୍କ ଆଜ୍ଞା ଲଙ୍ଘିବାକୁ ଆସିଅଛ । ଯେଉଁ ପୁତ୍ର ପିତାଙ୍କର ଆଜ୍ଞା ନ ପାଳେ ସେ କି ପୁତ୍ରପଦବାଚ୍ୟ ? (ସେ ପୁତ୍ର ହୋଇବାକୁ ଯୋଗ୍ୟ ନୁହେ ) । ପରଶୁରାମ ପିତାଙ୍କ କଥା ପାଳି ନିଜ ମାତା ରେଣୁକାକୁ ନାଶ କରିଥିଲେ ।"

୩୮ଶ ପଦ—ପୁଣି ଭରତ କହିଲେ, "ଦୈତ୍ୟମାତା ଦିତିଠାରୁ ଜାତ ହୋଇଥିବା ପୁତ୍ରଙ୍କୁ ଇନ୍ଦ୍ର ଅନେକ ଖଣ୍ଡ କରି ମାରିଥିଲେ ସୁଦ୍ଧା ସେ ଦେବତା ହୋଇ ଇନ୍ଦ୍ରଙ୍କର ବିଶ୍ୱାସୀ ହେଲେ, ବୈମାତ୍ରେୟ ମନ୍ଦଭାଗ୍ୟ ଧରମ

ଦ୍ୱେଷୀ ଜାବର ହେଲ ଦେବ ହୋଇ ନ ଧରିଲ
ମନ୍ଦଗୁଣ, ମୁହିଁ ସେହୁପରି ଦେ । ୩୮ ।
ବିହରିବା ମାନସର ମଧ୍ୟେ ହଂସକୁ ସୁନ୍ଦର
ଅନ ପକ୍ଷିରେ କିସେ ବାଞ୍ଛିତ ଯେ ?
ଲକ୍ଷନ ବୁଦ୍ଧି ପ୍ରକାଶ କେବେ ନୋହୁବ ନହୁଷ
ପ୍ରାପ୍ତ ନାଶ ଯିବାକୁ ମୋ ରାଜ୍ୟ ଯେ । ୩୯ ।
ତାହୁଣତାକୁ ସମ୍ମତ ନ କରୁଁ ଜାନକୀପତ
ଜୁଶେଷ୍ୟ ହେଲେ ସଭ୍ରମରେ ଯେ ।
ବିଦାୟସୂଁ ବେଦବାଣୀ ତୋ ପ୍ରସୂ ପୃଥ୍ୱୀରକ୍ଷିଣୀ
ନିଷ୍ଠା ଦୋଷୀ ହୋଇବ ପ୍ରକାରେ ଯେ । ୪୦ ।
ବାହୁଡ଼ି'ଇଲେ ରାଘବ ଦୂର୍ଯ୍ୟବଂଶ ବୁଡ଼ିଯିବ
ଶୁଣି ଉଠି ଯତିବେଶ ବନ୍ଧୁ ଯେ ।

---

ନାହିଁ । ମୁଁ ସେହୁପରି ମାତା ଦୋଷରେ ଦୋଷୀ ହିନା ! ( ମୋତେ ସେହୁପରି ଦୋଷ ଧରନ୍ତୁ ) ।

୩୯ଶ ପଦ—'ହଂସ ସିନା ମାନସରୋବରରେ ବିହାର କଲେ ସୁନ୍ଦର ଦିଶିବ, ଅନ୍ୟ ପକ୍ଷୀ ତାହା ଇଚ୍ଛା କରିବା କି ? ( ଅନ୍ୟ ପକ୍ଷୀ ବିହାର କଲେ କଣ ସୁନ୍ଦର ଦିଶିବ ? ସେହିପରି ଅଯୋଧ୍ୟାରେ ଆପଣ ରାଜା ହେଲେ ଯେପରି ସୁନ୍ଦର ଦିଶିବ, ମୁଁ ରାଜା ହେଲେ ସେପରି ଦିଶିବ କି ? ନହୁଷ ପ୍ରାପ୍ତ ନାଶଯିବା ପାଇଁ ମୋ ମନରେ ରାଜା ହେବା ରୂପକ କୁମନ ବୁଦ୍ଧି କେବେ ହେଲେ ପ୍ରକାଶିତ ହେବ ନାହିଁ ।" (ନହୁଷ ସ୍ୱର୍ଗରେ ଇନ୍ଦ୍ର ହେବାକୁ ଇଚ୍ଛା କରି ବିନାଶ ହୋଇଥିଲେ, ମୁଁ ସେହିପରି ଅଯୋଧ୍ୟାର ରାଜା ହେବାକୁ ଇଚ୍ଛା କଲେ ବିନାଶ ହେବି ) ।

୪୦ଶ ପଦ—ସୀତାପତି ରାମଚନ୍ଦ୍ର, ଅଯୋଧ୍ୟାକୁ ଫେରି ଯିବାକୁ ସମ୍ମତ ନ ହେବାରୁ ଭରତ ପଦ୍ମ ଭ୍ରମରଯୁକ୍ତ ହେଲ ପ୍ରାୟ ଭ୍ରମବଶତଃ ଅନଶନ ବ୍ରତ ସହିତ ଲଣଶଯ୍ୟା କଲେ । ସେହିସମୟରେ ଆକାଶରୁ ଦୈବ ବାଣୀ ହେଲ, "ହେ ଭରତ ! ତୋହର ମାତା ପୃଥ୍ୱୀ ରକ୍ଷାକାରିଣୀ ଅଟନ୍ତି । ବିନା ଦୋଷରେ ଲକ୍ଷ୍ମୀରୁ ଦୋଷୀ ନାମ ଦେଇ ପ୍ରାୟ ସେ ପ୍ରକାରରେ ଦୋଷୀ ବୋଲି କହନ୍ତୁ ନାହିଁ ।"

୪୧ଶ ପଦ—"ତୁମ୍ଭେ ଏପରି କଠୋର ଅନଶନ ବ୍ରତ କରି ନାଶ ହେଲେ ଆମ୍ଭେ ସବୁ ମରିବୁ, ତେଣୁ ସୂର୍ଯ୍ୟବଂଶ ବୁଡ଼ିଯିବ"—ଏହି କଥା କହି ଦେବ ଗଣ ଭରତଙ୍କୁ ଅଯୋଧ୍ୟା ଫେରିଯିବା ପାଇଁ ବୁଝାଇଲେ । ରାମଙ୍କ କଥା ଶୁଣି କୁଶଶଯ୍ୟାରୁ ଉଠି ଭରତ ଯତି ବେଶ ଧରି ଫେରିଲେ । ରାମଙ୍କ

ବନ୍ଦିଲେ ପାଦୁକା ରଜା      ସମ୍ପଦେ କରିଣ ପୂଜା
ନନ୍ଦୀଗ୍ରାମେ ପୁରୀ କରି ରହି ସେ । ୧ ।
ବିଶେଷ କାରୁଣି ହୋଇ      କରୁଣାସାଗର ତହିଁ
ତାତବାର୍ତ୍ତା ଶୁଣି କ୍ରିୟା ସାରି ଯେ ।
ବସନ୍ତତିଳକ ପଦେ ଛନ୍ଦ      କହେ ଭଞ୍ଜ ଉପେନ୍ଦ୍ର
ସୀତା ରାମ କାନନବିହାରୀ ଯେ । ୪୨ ।

---

## ଊନବିଂଶ ଛାନ୍ଦ

### ରାଗ—ପଞ୍ଚମବରାଡ଼ି

ବିସ୍ତାରଇ ମାଳଯମକରେ କବି ମନେ ।
ବୁଲେ ରାମ ରାମ ରାମଚନେତ୍ରୀ ସଙ୍ଗେ ବନେ ଯେ ।
ବୃହଦ୍ଭାନୁ ଭାନୁ ଭାନୁ ପ୍ରକାଶ ତାପ ନାହିଁ ।
ବୃନ୍ଦ ତମାଳମାଳ ମାଳତୀଲତା ଯହିଁ ଯେ । ୧ ।

---

୧ମ ପଦ—ରାମ—ରମଣୀୟ, ସୁନ୍ଦର । ରାମ—ରାମଚନ୍ଦ୍ର । ରାମନେତ୍ରୀ—ମୃଗନେତ୍ରୀ । ବୃହଦ୍ଭାନୁ—ଅଗ୍ନି । ଭାନୁ—ସୂର୍ଯ୍ୟ । ଭାନୁ—କିରଣ । ତମାଳମାଳ—ତମାଳ ବୃକ୍ଷ ସମୂହ ।

---

ପଠାଉକୁ ଆଡ଼ମ୍ବର ସହିତ ପୂଜା କରି ରାଜା କଲେ, ନିଜେ ପାଦ ଗ୍ରାସୁ ବନ୍ଦନା କଲେ । ନନ୍ଦୀଗ୍ରାମରେ ପୁର ନିର୍ମାଣ କରି ରହିଲେ, ( ଅଯୋଧ୍ୟାକୁ ଫେରି ଗଲେ ନାହିଁ ) ।

୪୨ଶ ପଦ—ଭରତ ବାହୁଡ଼ି ଯିବା ପରେ କରୁଣାସାଗର ରାମ ପିତାଙ୍କର ବିନାଶ ବାର୍ତ୍ତା ପାଇଥିବା ହେତୁ ବିଶେଷ ଭାବରେ ରୋଦନ କଲେ । ପ୍ରେତ କ୍ରିୟାମାନ ସମାପ୍ତ କରି ସୀତା ରାମ ବନବିହାରୀ ହେଲେ । ଏ ଛନ୍ଦକୁ ବସନ୍ତତିଳକ ପଦରେ ଉପେନ୍ଦ୍ର ଭଞ୍ଜ କହିଲେ ।

—୦—

## ଊନବିଂଶ ଛାନ୍ଦ

୧ମ ପଦ—କବି ' ମାଳଯମକରେ' କବିତା କରିବାକୁ ମନରେ ବିସ୍ତାର କରେ । ( ମାଳଯମକ ଲକ୍ଷଣ,—ଏକମାତ୍ର ଶବ୍ଦ ଭିନ୍ନାର୍ଥରେ ଦୁଇରୁ ଅଧିକ ଥର ପ୍ରୟୋଗ ହେଲେ ମାଳଯମକ ହୁଏ । ଯଥା,—'ରାମ ରାମ ରାମ ନେତ୍ରୀ' ) ।

ସୁନ୍ଦର ରାମଚନ୍ଦ୍ର ମୃଗନେତ୍ରୀ ସୀତାଙ୍କୁ ସଙ୍ଗରେ ନେଇ କାନନରେ ଭ୍ରମଣ କରନ୍ତି । ସେହି ବନରେ ତମାଳ ବୃକ୍ଷମାନଙ୍କ ଦେହରେ ମାଳତୀ ଲତା ଘନ ଭାବରେ ମାଡିବାରୁ ଅଗ୍ନି ଓ ସୂର୍ଯ୍ୟ କିରଣର ଉତ୍ତାପ ବାଧେ ନାହିଁ ।

ବହଇ ନିର୍ଝର ଝରଝର ଅବିରତ ।
ଉପେକ୍ଷ ତରଙ୍ଗ ରଙ୍ଗ ରଙ୍ଗଣୀ ଶୋଭିତ ଯେ ।
ବହି ଚନ୍ଦ୍ର ଚନ୍ଦ୍ର ଚନ୍ଦ୍ର ଶୀତଳିତ ବାତ ।
ବନ୍ଦେ ମନ୍ଦ ମନ୍ଦ ମନ୍ଦସୁତ କରେ ରୁତ ଯେ । ୨ ।
ବର୍ଷେ ଘନାଘନ ଘନ କୃଷକଣ ଯଥା ।
ବୃଷ୍ଟି ମଧୁର ମଧୁର ମଧୁରଜେ ତଥା ଯେ ।
ଶୋଭାଜନ ଭୃଙ୍ଗ ଭୃଙ୍ଗ ଭୃଙ୍ଗ କରେ କେଳି ।
ବାମା ବାମା ବନିତା କି ପୁଷ୍ପହାସେ ଝଲି ଯେ ।୩।
ବୋଧ ଶୃଙ୍ଖଳାରେ ରଘୁନାଥ ସୀତା ମତି ।
ବିରାଜ ଚିତ୍ରକୂଟ ଯେ କୁଟଜେ ବ୍ରତତି ଯେ ।

---

୨ୟ ପଦ—ନିର୍ଝର—ଝରଣା । ଚନ୍ଦ୍ର—ଚନ୍ଦନ । ଚନ୍ଦ୍ର—କର୍ପୂର । ଚନ୍ଦ୍ର—ଜଳ । ମନ୍ଦସୁତ—କୋକିଳ । ରୁତ—ଧ୍ୱନି ।

୩ୟ ପଦ—ଘନ—ମେଘ । କୃଷକଣ—ଜଳକଣା । ମଧୁର—ମଞ୍ଜୁଳ ଗଛ । ମଧୁର—ମନୋହର । ମଧୁରଜ—ଫୁଲରେଣୁ । ଭୃଙ୍ଗ—ଗୁଡ଼ତ୍ୱକ୍ ଗଛ । ଭୃଙ୍ଗ—ଭୃଙ୍ଗରାଜ ଗଛ । ଭୃଙ୍ଗ—ଭ୍ରମର । ବନିତା ସ୍ତ୍ରୀ ।

୪ର୍ଥ ପଦ—ବ୍ରତତୀତତି—ଲତାସମୂହ । ଅତଭ୍ର—ଅତ୍ୟନ୍ତ ଶୋଭା । ବାସନ୍ତୀ—ମାଧବୀଲତା । ବିରାଜ—ସୁଶୋଭିତ । କୁଟଜ—ଗିରିମଲ୍ଲିକା । ବ୍ରତତି—ମଣ୍ଡିତ ।

---

୨ୟ ପଦ—ଝରଣା ସବୁବେଳେ ଝର ଝର ହୋଇ ବହୁଅଛି । ସେହି ଝରଣା ସ୍ରୋତର ଦୁଇ ପାର୍ଶ୍ୱରେ ବିଭିନ୍ନ ରଙ୍ଗର ରଙ୍ଗଣୀ ପୁଷ୍ପ ଫୁଟି ଶୋଭା ପାଉଅଛି । ପବନ ଜଳ, କର୍ପୂର ଓ ଚନ୍ଦନର ଶୀତଳ ଗୁଣକୁ ଧାରଣ କରି ଧୀରେ ଧୀରେ ବହୁଅଛି । କୋକିଳ ଅନବରତ ଧ୍ୱନି କରୁଅଛି ।

୩ୟ ପଦ—ଯେପରି ମେଘ ଖୁବ୍ ଘନଭାବରେ ଜଳକଣାସବୁ ବର୍ଷେ (ମେଘ କୁଣ୍ଡା ଝାଡ଼େ), ସେହିପରି ମଞ୍ଜୁଳ ଗଛ ମାଧୁର୍ଯ୍ୟ ଗୁଣ ବା ମଧୁ ଓ ଫୁଲର ରେଣୁ ବର୍ଷୁଅଛି । ଶୋଭା ପାଉଥିବା ଭୃଙ୍ଗରାଜ ଓ ଗୁଡ଼ତ୍ୱକ ବୃକ୍ଷରେ ଭ୍ରମରମାନେ କେଳି କରୁଅଛନ୍ତି । ସେ 'ବାମା' କାନନ 'ବାମା' ସୁନ୍ଦର ସ୍ତ୍ରୀ ପ୍ରାୟ ପୁଷ୍ପରୂପ ହାସ ପ୍ରକାଶ କରୁଅଛି । ( ସୁନ୍ଦରୀ ସ୍ତ୍ରୀ ହସିଲେ ଯେପରି ଅତ୍ୟନ୍ତ ସୁନ୍ଦର ଦିଶେ, ସେହିପରି କାନନରେ ଫୁଲ ଫୁଟିଥିବାରୁ ବେଶୀ ମନୋହର ସୁନ୍ଦର ଦିଶେ, ସେହିପରି କାନନରେ ଫୁଲ ଫୁଟିଥିବାରୁ ବେଶୀ ମନୋହର ହୋଇଅଛି ) ।

୪ର୍ଥ ପଦ—ରାମଚନ୍ଦ୍ର ସୀତାଙ୍କର ମନ ବୋଧ କରିବା ନିମିତ୍ତ ଶୃଙ୍ଖଳାରେ ହୃଦରେ କହିଲେ, "ଦେଖ, ନାନା ଶୋଭାରେ ଶୋଭିତ ଚିତ୍ରକୂଟ ପର୍ବତ

ବନାନ୍ତେ ଜୟନ୍ତୀ ଅଟନ୍ତି ବାସନ୍ତୀ ।
ବାସନ୍ତୀ ସନ୍ତରେ ପ୍ରଫୁଲ୍ଲ ଫୁଲରେ ପ୍ରବର୍ତ୍ତି ଯେ । ୪ ।
ବର୍ତ୍ତିକ ଛକ ଅଳି କଳି ଯେ ବାହ୍ଲିନ
ଝଙ୍କାରନ୍ତ ମାନ ମାନ ଶୁକ ଶୁକଭନ୍ତ ତେ ।
ଝଉର ତରଳ ନେତ୍ର ନେତ୍ରସୁବାସିନୀ
ଦାସିନୀ ସୁକାନ୍ତ କାନ୍ତି ସ୍ୱଭାବ ଭାବନୀ ଯେ । ୫ ।
କଳିତ ସ୍ୱନ୍ତ ଶୋଭନ୍ତ ଲୀନ ବୈଭ୍ରାଜ
ବୈଭ୍ରାଜ ସୁରସା ରସା ଦାଡ଼ିମ୍ବର ବୀଜ ଯେ ।

---

୫ମ ପଦ—ବର୍ତ୍ତିକ—ବର୍ଣ୍ଣିବନ୍ତାଇ । ଛକ—ବାନ୍ଧି । ବଟାଇ । ଅଳି ଅଳି—ଦଳ ଦଳ । ବାସିନୀ । ସୁଗନ୍ଧଯୁକ୍ତ । ସ୍ୱଭାବ—ସ୍ୱଭାବତଃ । ଭାବନୀ—ଭାବବତୀ ।

୬ଷ୍ଠ ପଦ—ବୈଭ୍ରାଜ—ସ୍ୱର୍ଗୋଦ୍ୟାନ । ବୈଭ୍ରାଜ—ଦେଦୀପ୍ୟମାନ । ରସା—ପୃଥିବୀ । ଦାଡ଼ିମ୍ବର—ଡାଳିମ୍ବର । ରସବାର—ଅନୁରାଗ ସମ୍ପୂର୍ଣ୍ଣ । କାଳଣବୃନ୍ଦ—କଦଳୀଗଛ । ପୁର - ଗୁଳ୍ମଗଛ । ପୁର—ଅଗରେ ।

---

ଶିରମଲ୍ଲି ଭାବେ ମଣ୍ଡିତ ହୋଇଅଛି, ଲତାସମୂହ ବେଷ୍ଟିତ ଜୟନ୍ତୀ ବୃକ୍ଷସବୁ ଅତି ଶୋଭା ପାଉଅଛନ୍ତି; ହେ ସଖି ! ମାଧବୀ ଓ ପୃଥିକା ଲତା ପ୍ରସ୍ଫୁଟିତ କୁସୁମରେ ଭୂଷିତ ହୋଇଅଛନ୍ତି ।"

୫ମ ପଦ—"ବର୍ଣ୍ଣି ଓ ବାୟୁବଟେଇ ଦଳ ଦଳ ହୋଇ ବିହାର କରୁଅଛନ୍ତି । ( ଅନ୍ୟାର୍ଥ 'ଛକ' ସମୀପରେ 'ବର୍ତ୍ତି' ବର୍ତ୍ତି 'କ' ମୟୂରମାନେ ଦଳ ଦଳ ହୋଇ ନୃତ୍ୟ କରୁଅଛନ୍ତି ) । ଉତ୍ତମ ଦବର ଗାନପର ଶୁକପକ୍ଷୀର ମନୋହର ଗାନ ମନରୁ ଅଭିମାନକୁ ହରଣ କରୁଅଛି । ହେ ମୃଗମଦସୁବାସିନି ( କସ୍ତୁରୀ ବାସନାପରି ଯାହାର ଦେହର ବାସନା ) ମୀନେ ! ହେ ପ୍ରିୟେ ! ତୁମ୍ଭର ତରଳ ନେତ୍ର ପକାଇ ଦେଖ, ସୁଗନ୍ଧିନୀ ଓ ଉତ୍ତମ ଜାତୀୟ ମାଳତୀ ଲତା କିପରି କୁସୁମବତୀ ହୋଇଅଛି ।"

୬ଷ୍ଠ ପଦ—"ଏହା ସ୍ୱତଃସିଦ୍ଧ ଯେ, ସ୍ୱର୍ଗୋଦ୍ୟାନର ଶୋଭା ଏ ବନର ଶୋଭାଠାରେ ଲୀନ ହୋଇଅଛି (ଏ ବନର ଶୋଭା ବୈଭ୍ରାଜ ନାମକ ଦେବ ଉଦ୍ୟାନର ଶୋଭାଠାରୁ ବେଶୀ ମନୋହର ) । ହେ ସୁରସା ! ପୃଥିବୀ ଦାଡ଼ିମ୍ବ ଫଳର ମଞ୍ଜିରେ ଦେଦୀପ୍ୟମାନ ହୋଇଥିଛି । ( ଦାଡ଼ିମ ଫଳ ବୃକ୍ଷରେ ପାଚି ଫାଟି ମଞ୍ଜିସବୁ ତଳେ ପଡ଼ି ସୁନ୍ଦର ଦିଶୁଅଛି ) ହେ ସଖି ! କଦଳୀଗଛ, ବଡ଼ ବଡ଼ ଗାଛ

ବଚନମିତ ମିତ୍ର ହରଷ ରସବାର
ବାରଣବୃଷା ବୃଷାଳିସାଳ ପୂର ପୂର ଯେ । ୬ ।
ବୋଧନ୍ତି ରାମ ସିଂହାବଲୋକନେ ଅବଳା
ବଳାକାପନ୍ତି କରନ୍ତି ଧ୍ରୁବକୁ ଧବଳା ଯେ ।
ବଳାଇ ମାନସ ମାନ ଅନା ପ୍ରାଣବନ୍ଧୁ
ବନ୍ଧୁକ ରଞ୍ଜନ ଅତି ରଙ୍ଗ କାରବନ୍ଧୁ ଯେ । ୭ ।
ବନ୍ଧୁରପଥଟି ହେଳି ହେଳା ପଦ ବଳା
ବଳାଦ୍ଧ୍ୱନ ପ୍ରାୟେ ଝିଲ୍ଲୀ ରବଦ ପ୍ରବଳା ଯେ ।
ବଳାପନ୍ତି ଫଳବତୀ ପ୍ରଫୁଲ୍ଲ ସେବତୀ
ବରଣଲକ୍ଷଣା ଦେଖ ବିହରେ ପାର୍ବତୀ ଯେ । ।
ବତାଣ୍ଡ ଅପୂର୍ବ ହୋଇ ବେଢେ ନାଗବଲ୍ଲୀ
ବଲ୍ଲିକି ତଳେ ଶୟନ ରାମସୀଅବଳ ଯେ ।

---

୬ମ ପଦ—ବଳାକାପନ୍ତି—ବକପକ୍ଷୀସମୂହ । ଧ୍ରୁବକୁ—ଲଣ୍ଡା ଗଛକୁ ।
୮ମ ପଦ—ବନ୍ଧୁରପଥ—ଖାଲଢିପ ସ୍ଥାନ । ଝିଲ୍ଲୀ—ଝିଙ୍କାରୀ ।
ବଳାପନ୍ତି—କାଉଁଅଁଳା । ପାର୍ବତୀ—ପ୍ରଜାପତି ।

---

ଗଛ, ଗୁଟ୍‌ଗୁଲ ପ୍ରଭୃତି ବୃକ୍ଷମାନେ ଅଗରେ ରକ୍ତ ବର୍ଣ୍ଣ ଓ ଅନୁରାଗ ସମ୍ପୃକ୍ତ ଭାବ ଭଳୁଅଛନ୍ତି । ( ଏମାନଙ୍କୁ ଦେଖିଲେ ହର୍ଷ ଓ ଅନୁରାଗ ହୃଦୟରେ ଜନ୍ମୁଅଛି ) ।"

୭ମ ପଦ—ପୁଣି ରାମଚନ୍ଦ୍ର ସିଂହାବଲୋକନ ଲକ୍ଷଣରେ ସୀତାଙ୍କୁ ବୋଧ ଦେଇ କହୁଅଛନ୍ତି, "ରେ ପ୍ରାଣବନ୍ଧୁ ! ମୋ କଥା ମାନ ଥରେ ଗୃହି ଦେଖ, ବଗସବୁ ଧୂଣ୍ଡା ଗଛମାନଙ୍କୁ ଧବଳିତ କରି ଅଛନ୍ତି । ( ଧୂଣ୍ଡା ଗଛରେ ବହୁତ ବଗ ବସିଥିବାରୁ ତାହା ଧବଳିତ ହୋଇଅଛି ) । ବନ୍ଧୁଲି ପୁଷ୍ପ ଗାଢ଼ ଲାଲରଙ୍ଗ ହେବାରୁ ଅନୁରାଗଜନକ ହୋଇଅଛି ।"

୮ମ ପଦ—"ରେ ବନ୍ଧୁ ! ଏ ଖାଲ ଢିପ ବାଟ, ଏଠା ମନେ ଦେଇ ( ସାବଧାନ ହୋଇ ) ପାଦ ଦେଇ ଚାଲ ( ତୋର ବଳା ଧ୍ୱନି ପ୍ରାୟ ଝିଙ୍କାରୀ ରବ ପ୍ରବଳ ହୋଇଅଛି । କାଉଁଅଁଳା ଗଛସବୁ ଫଳବତୀ ହୋଇଅଛନ୍ତି । ସେବତୀ ଲତାରେ ଫୁଲ ଫୁଟିଅଛି । ରେ ଲକ୍ଷଣବତୀଗଣସୀତେ ! ପ୍ରଜାପତି ଘାଟ ତହିଁରେ କିପରି ବିହାର କରୁଛନ୍ତି ଦେଖ ।"

୯ମ ପଦ—"ବେଢେ ପାନ ଲତା 'ଅପୂର୍ବ ବତାଣ୍ଡ' ଅବତୀର୍ଣ୍ଣ ହୋଇ ଅଛି । ଲତାମାନଙ୍କ ତଳେ ଗୃହସ୍ତ୍ରୀ ଦୁହେଁବୁ ଶୟନ କରିଅଛନ୍ତି । ତାହା ଦେଖି

ବଳିତ ଚଇତ୍ରରଥୁଁ ଏମନ୍ତ ଭାବନା
ବନାଳୀ ପ୍ରଭୁ କରିଣ କର ସମ୍ଭାବନା ଯେ । ୯ ।
ବ୍ୟାଘ୍ରଗଡରେ ସଖୀରେ କହନ୍ତି ବୀର ସେ
ବୀରତରୁ ରେ ତରୁଣୀ କୁସୁମ ବରଷେ ଯେ ।
ତର ଉନ୍ନତ ଉନ୍ନତ ଉପମା-ବିହୀନ
ବିହିତ କରନ୍ତି ବିଧି କକୁଭ ବଚନ ଯେ । ୧୦ ।
ତତ ସହିତରେ ସହି ପ୍ରକାଶେ ବିଭୂତି
ବିଭୂଷଣ ଚମ୍ପା ପଣସପୁଷ୍ପ ପବିରତ ଯେ ।
ଏରଳ ଭାରତୀ କର ଭାରତୀ ବିହାରେ
ବିହାୟସେ ଲସ୍ୟ ଉଲ୍ଲାସକୁ ନ ବସରେ ଯେ । ୧୧ ।

---

୯ମ ପଦ—ନାଗବଲ୍ଲୀ—ପାନଲତା । ବଲ୍ଲିକା—ଲତା । ଚୈତ୍ରରଥ କୁବେରଙ୍କ ଉଦ୍ୟାନ । ବନାଳି—ବନସମୂହ

୧୦ମ ପଦ—ବୀରତରୁ—ଅର୍ଜୁନ ଗଛ । କରଉନ୍ନତ—ଅତି ଉଚ୍ଚ । କକୁଭ—ଦିଗ, ଅର୍ଜୁନବୃକ୍ଷ ।

୧୧ଶ ପଦ—କଟ—ଶୋଭନ । ଭାରତୀ—ଭରଦ୍ୱାଜ ପକ୍ଷୀ । ବିହାୟସେ—ଆକାଶରେ । ଲସ୍ୟ—ସ୍ତ୍ରୀମାନଙ୍କର ମଙ୍ଗଳାକୃତ ନୃତ୍ୟ ।

---

ମନରେ ଭାବନା ହେଉଛି, ଏ ବନ କୁବେର ଉଦ୍ୟାନଠାରୁ ମଧ୍ୟ ଅଧିକ ମନୋହର ଅଟେ । ଏ ବନ ବନମାନଙ୍କର ପ୍ରଭୁ—ଏହା ସମ୍ଭାବନା କର ।"

୧୦ମ ପଦ—ବୀର ରାମଚନ୍ଦ୍ର, ତତ୍‌ପରେ ବ୍ୟାଘ୍ରଗଡ ଲକ୍ଷ୍ୟରେ ଧୀରଭାବରେ କହୁଅଛନ୍ତି, "ହେ ତରୁଣି ! ଅର୍ଜୁନବୃକ୍ଷ ପୁଷ୍ପମାନଙ୍କୁ ବର୍ଷଣ କରୁଅଛି ! ସେ ବୃକ୍ଷ ହିଁ ଉଚ୍ଚ ଓ ଉପମାବିହୀନ ଅଟେ । ବିଧାତା ଏହାକୁ ଯେଉଁ କକୁଭ ନାମ ଦେଇଅଛି, ତାହା ଉଚିତ ହୋଇଅଛି ।"

୧୧ପଦ—"ହେ ସଖି ! ଏହି ଅର୍ଜୁନ ବୃକ୍ଷ ଶୁକପକ୍ଷୀଙ୍କ ସହିତ 'ବି-ଭୂତି' ପକ୍ଷୀ ରୂପ ଐଶ୍ୱର୍ଯ୍ୟ ପ୍ରକାଶ କରୁଅଛି ( ବୃକ୍ଷରେ ବହୁତ ପକ୍ଷୀ ବସିଥିବାରୁ ବୃକ୍ଷ ତାଙ୍କଦ୍ୱାରା ଆଚ୍ଛାଦିତ ହୋଇଅଛି ) ଏବଂ ସଙ୍ଗତା ଚମ୍ପା ଓ ପଣସପୁଷ୍ପ ଗଛର ଫୁଲ ଦ୍ୱାରା ଏ ବୃକ୍ଷ ଭୂଷିତ ହୋଇଅଛି । ( ବୃକ୍ଷ ଉପରେ ଶୁକପକ୍ଷୀ ଏବଂ ତଳେ ଘେରି ରହିଥିବା ଚମ୍ପା ଓ ପଣସପୁଷ୍ପଗଛର ଫୁଲ ଯୋଗେ ଶୋଭିତ ହୋଇଅଛି ) ଭରଦ୍ୱାଜପକ୍ଷୀ ସୁନ୍ଦର ଶବ୍ଦ କରି ବିହାର କରୁଅଛି । ଉଲ୍ଲାସ ମନରେ ନୃତ୍ୟଛଳରେ ଆକାଶକୁ ଉଡ଼ିଯାଇ ପୁଣି ଆସି ବସୁଛି । ( ଭରଦ୍ୱାଜ ପକ୍ଷୀ କୌଣସିଠାରେ ସ୍ଥିର ହୋଇ ବସେ ନାହିଁ । ସେ ଆନନ୍ଦ ମନରେ ଆକାଶରେ ଉଡ଼ୁଛି ପୁଣି ଆସି ସେ ବୃକ୍ଷରେ ବସୁଛି )

ବିଶଦ ମଲ୍ଲିକାକୁଳ ବକୁଳ ବସତି
ବନରେ ବସନ୍ତ ମଧୁକରେ ବିଳସନ୍ତି ଯେ ।
ବିଳଶଯ୍ୟା ଗନ୍ଧସାର ଗହନରେ ବିହିତ
ବିପିନ ବିପିନ ଜବନେ ପବନେ ବାସିତ ଯେ । ୧୨ ।
ବସନ୍ତବସନ ଭକ୍ତ ମହାଯମକରେ
ବସନ୍ତ ବସନ୍ତପକ୍ଷୀ ବସନ୍ତଦ୍ରୁମରେ ଯେ ।
ବୀଥୀ ବୀଥୀ ଶୋଭା ଧରି କୁମୁଦ କୁମୁଦ
ବିଲୋକ ହାସ ପ୍ରକାଶି କୁମୁଦ କୁମୁଦ ଯେ । ୧୩ ।

---

୧୨ଶ ପଦ—ବିଶଦ—ଶୁକ୍ଳ । ମଧୁକର—ଭ୍ରମର । ଗନ୍ଧସାର—ଚନ୍ଦନ ଜବନେ—ଶୀଘ୍ର ।

୧୩ଶ ପଦ—ବସନ୍ତବସନ—ପୀତାମ୍ବର ( ରାମଚନ୍ଦ୍ର )। ବସନ୍ତ—ଅଧୀନ ବା ଉପବିଷ୍ଟ । ବସନ୍ତପକ୍ଷୀ—କୋକିଳ । ବସନ୍ତଦ୍ରୁମରେ—ଆମ୍ରଗଛରେ । ବୀଥୀ ବୀଥୀ—ଶ୍ରେଣୀ ଶ୍ରେଣୀ । କୁମୁଦ—ରକ୍ତପଦ୍ମ କୁମୁଦ କଇଁ । କୁମୁଦ—କୁଥା ଆନନ୍ଦ ।

---

୧୨ଶ ପଦ—"ମଲ୍ଲିଜୁଡା ବହୁତ ଫୁଲ ଫୁଟିଥିବା ଯୋଗୁ ଶୁକ୍ଳବର୍ଣ୍ଣ ହୋଇଅଛି । ଏ ବନ ବକୁଳ ବୃକ୍ଷରେ ପୂର୍ଣ୍ଣ ହୋଇଅଛି । ( ଅନ୍ୟାର୍ଥ—ଏ ବନ ଶୁକ୍ଳ ମଲ୍ଲି ଓ ବକୁଳଙ୍କର ବାସସ୍ଥାନ ହୋଇଅଛି ) । ଭ୍ରମରମାନେ ବଶୀଭୂତ ହୋଇ ଫୁଲମାନଙ୍କରେ ବସୁଅଛନ୍ତି । ସୁଗନ୍ଧରେ ମୋହିତ କରୁଥିବା ଚନ୍ଦନ ବୃକ୍ଷମାନଙ୍କରେ ସର୍ପମାନେ ବିହାର କରନ୍ତି । ଏତ ବନଗ ସବୁ ପବନଯୋଗେ ଅତ୍ୟନ୍ତ ସୁବାସିତ ହେଉଅଛନ୍ତି ।"

୧୩ଶ ପଦ—ବସନ୍ତବସନ ରାମଚନ୍ଦ୍ର ମହାଯମକରେ ଭକ୍ତ ହୋଇ ବନ୍ଧୁଅଛନ୍ତି, ( ମହାଯମକ ଲକ୍ଷଣ—ପ୍ରତ୍ୟେକ ପାଦରେ ଏକଶବ୍ଦ ଯମକ ନିୟମରେ ରହିଥାଏ ) "ହେ ସଖୀ ! କୋକିଳ ପକ୍ଷୀ ଆମ୍ରଗଛରେ ବସି ଅଛନ୍ତି । ପୁଷ୍କରିଣୀରେ ରକ୍ତପଦ୍ମ ଓ କଇଁଫୁଲସବୁ ଧାଡ଼ି ଧାଡ଼ି ହୋଇ ଫୁଟି ଶୋଭା ପାଉଅଛି । ତୁମ୍ଭେ ସେମାନଙ୍କୁ ହାସ ପ୍ରକାଶ କରି ଦେଖ ଏବଂ ସେମାନଙ୍କ କୁତ୍ସିତ ପ୍ରକାଶକୁ ମୁଦ୍ରିତ କରି ଦିଅ । ( ତୁମ୍ଭର ହାସ ଦେଖି କଇଁ ଓ ନେତ୍ରର ଶୋଭା ଦେଖି ପଦ୍ମ ଲଜ୍ଜାରେ ମୁଦ୍ରିତ ହୋଇଯିବେ )।

ବିକଶିତ ହୋଇଛନ୍ତି କେଶରୀ କେଶରୀ
ବିଳସେ ଶାଖାରେ ଦେଖ କେଶରୀ କେ ସବୁ ଯେ ।
ବିଦାରି ଯାଉଛି କରିକେଶରୀ କେଶରୀ ।
ବିହୀନ ହୋଇଛି ମାତ୍ର କେଶରୀ କେଶରୀ ଯେ । ୧୪ ।
ବାଳାକୁ ହସ୍ତ ଦେଖାଇ ପୁଣି ରଘୁବର
ବାକ୍ୟ ସମ୍ବୋଧନ କଲେ ସର୍ବ ଯମକରେ ଯେ ।
ବଇଦେହୀ ସୁମନା ସୁମନା ଏ ସୁରଭି
ବଇଦେହୀ ସୁମନା ସୁମନା ଏ ସୁରଭି ଯେ । ୧୫ ।
ବିଦ୍ୟଲୋକରେ ପ୍ରିୟକ ମାଧବୀ ସଂଘାତ
ବିଦ୍ୟ ଲୋକରେ ପ୍ରିୟକ ମାଧବୀ ସଂଘାତ ଯେ ।

---

୧୪ଶ ପଦ—କେଶରୀ—ନାଗେଶ୍ୱର । କେଶରୀ—ପୁନ୍ନାଗ । କେଶରୀ—ମର୍କଟ ବିଶେଷ । କରିକେଶରୀ—ଶ୍ରେଷ୍ଠ ହସ୍ତୀ । କେଶରୀ—ସିଂହ । କେଶରୀ—ଘୋଟକ ।

୧୫ଶ ପଦ—ସୁମନା—ଦେବପୁଷ୍ପ ବା ଲବଙ୍ଗ ବୃକ୍ଷ । ସୁରଭି—ସୁନ୍ଦର । ବଇଦେହୀ—ପିପ୍‌ଳୀ ଗଛ—ସୁମନା—ମନୋରମା । ସୁମନା—ଧୀରା । ସୁରଭି—ଜାଇଫଳ ଗଛ ।

---

୧୪ଶ ପଦ—"ପୁଣି ଏ ବନରେ ପୁନ୍ନାଗ, ନାଗେଶ୍ୱର ବୃକ୍ଷମାନେ ପୁଷ୍ପିତ ହୋଇଅଛନ୍ତି । ତାଙ୍କ ତଳରେ ବାନରମାନେ ରତକ୍ରୀଡ଼ା କରୁଅଛନ୍ତି । ତାଙ୍କ ରତକ୍ରୀଡ଼ା ସହିତ ଅଉ କଏ ସମାନ ହେବ ? (ଅଭ ଦେହସମାନ ନୁହନ୍ତି) । ଦେଖ, ଏଠାରେ ସିଂହ ଶ୍ରେଷ୍ଠହସ୍ତୀକୁ ବିଦାରଣ କରି ଯାଇଅଛି । (ତୁ ମନେ କରିବୁ, ମୁଁ ତ କରୀଗମନା ଓ କରୀକୁମ୍ଭସ୍ତନା, ସିଂହ ମୋତେ କାଳେ ବିଦାରିବ । ମାତ୍ର ସେ ଭୟ କର ନାହିଁ । କାରଣ, ସେ ହସ୍ତୀକୁ ବିଦାରଣ କରି ଗୁଳ ଯାଇ ଅଛି—ଏଠାରେ ନାହିଁ) । ଏ ବନ ସହିତ କେହି ସମାନ ହେବେ ନାହିଁ । କିମ୍ବା ଏ ବନ କେବଳ ଶ୍ରେଷ୍ଠ ଘୋଟକ ବିହୀନ ହୋଇଅଛି । (ଏ ବନରେ ସବୁ ଅଛି ମାତ୍ର ଉତ୍ତମଜାତୀୟ ଅଶ୍ୱ ନାହାନ୍ତି) ।"

୧୫ଶ ପଦ—ତତ୍ପରେ ରଘୁବୀର ସୀତାଙ୍କୁ ସମ୍ବୋଧନ କରି ହସ୍ତ ଦ୍ୱାରା ଦେଖାଇ ଦେଇ ସର୍ବଯମକରେ କହିଲେ, ( ସର୍ବଯମକ ଲକ୍ଷଣ,—ସମସ୍ତ ପାଦ ଶ୍ଳୋକରେ ଏକେକ ବିଶିଷ୍ଟ ହେଲେ ସର୍ବଯମକ ହୁଏ ) 'ହେ ବୈଦେହି । ହେ ମନୋରମେ । ହେ ଧୀରେ ! ଦେଖ, ଏ ମାଳତୀ ପୁଷ୍ପ, ଏ ଚମ୍ପାପୁଷ୍ପ, ଏ ପିପ୍‌ଳୀ ବୃକ୍ଷ, ଏ ଲବଙ୍ଗ ବୃକ୍ଷ, ଏ ଜାଇଫଳ ବୃକ୍ଷ ।"

୧୬ଶ ପଦ—''ହେ ସତୀ । ହେ ବାଳେ । ହେ ଚମ୍ପକବର୍ଣ୍ଣେ । ଦେଖ, ଏ ଧାର୍ମିକ ଲୋକଙ୍କର ପ୍ରିୟ ତୁଳସୀ ବୃକ୍ଷ । କଦମ୍ବ ବୃକ୍ଷ ମାଧବୀ ଲତା

ବାଳକା କନକକାନ୍ତ କନକ କନକ
ବାଳକା କନକକାନ୍ତ କନକ କନକ ଯେ । ୧୭ ।
ବିଳାସିନି ଏ ସାରଙ୍ଗ ସାର ସଚକ୍ରରେ
ବିଳାସିନୀଏ ସାରଙ୍ଗ ସାରସ ଚକ୍ରେ ଯେ ।
ବସନ୍ତ ବରେ ପ୍ରକାଶ ମାନ ଯେ ଦନ୍ତରେ
ବସନ୍ତବରେ ପ୍ରକାଶମାନ ଯେ ଦନ୍ତରେ ଯେ । ୧ ।
ବୋଲନ୍ତି ଗୋମୁଖଚ୍ଛନ୍ଦେ ହସ ହସ ହୋଇ
ବୀଣାପ୍ରଭଙ୍ଗରେ ଅନା ତୋଟାକୁ ଖେଳାଇ ଯେ ।

---

୧୬ଶ ପଦ—ଲୋକରେ—ସଂସାରରେ । ଲୋକ—ବେଶ । ପ୍ରିୟକ—କଦମ୍ବ ଗଛ । ମାଧବୀ—ତୁଳସୀଗଛ । ସଂଗାତ—ସମ୍ମୁଖ । ବାଳକା—ବାଳକେ କା ବାଳେ ବୋଲି ସମ୍ବୋଧନ । ବାଳକା—ଲଟପକ୍ଷୀ । କନକକାନ୍ତି—ସ୍ୱର୍ଣ୍ଣ ଓ ଚମ୍ପକ ପରି କାନ୍ତିବିଶିଷ୍ଟା ସ୍ତ୍ରୀ ।

୧୭ଶ ପଦ—ବିଳାସିନି—ବିଳାସବତୀ ସ୍ତ୍ରୀ । ସାରଙ୍ଗ—ଭଙ୍ଗ, ଭଡ଼ଭଡ଼ଳିଆ, ପଦ୍ମ, ଚକ୍ରବାକ, ମଞ୍ଜୁଘୋଷୀ । ସାର—ଶ୍ରେଷ୍ଠ । ସଚକ୍ରରେ—ସମ୍ମୁଖରେ । ସାରଙ୍ଗ—ହଂସ । ସାରସ—ସାରସ ପକ୍ଷୀ । ଚକ୍ରରେ—ଚକ୍ରବାକ ପକ୍ଷୀ । ବସନ୍ତବରେ—ଶ୍ରେଷ୍ଠ ବସନ୍ତମାନେ । ମାନ—ଗର୍ବ । ବସନ୍ତବରେ—ପ୍ରଧାନ ଯୁବରେ । ଦନ୍ତରେ—ପର୍ବତ ଶୃଙ୍ଗରେ ବା ଲତା କୁଞ୍ଜରେ ।

୧ ଶପଦ—ବୀଣାପ୍ରଭଙ୍ଗ—ବିହୁଙ୍ଗର ଗୌରାଙ୍ଗୀ । ବାର ବାର—ପୁନଃପୁନ । ତାରତର—ଅତ୍ୟୁଜ୍ଜ୍ୱଳ । ବରତର—ରତିକ୍ରୀଡ଼ାରେ ବିଶେଷରେ ଅସକ୍ତ । ଏଣୀ ଏଣ—ମୃଗୀ ମୃଗ ।

---

ସମ୍ମୁଖରେ ବେଷ୍ଟିତ ହୋଇ ଶୋଭା ପାଉଅଛୁ । ପୁଣି ନାଗେଶ୍ୱର, ପୁନ୍ନାଗ, କିଂଶୁକ ଓ ଚମ୍ପା ବୃକ୍ଷ ଉପରେ ଶୋଭା ବିସ୍ତାର କରୁଅଛନ୍ତି ।”

୧୭ଶ ପଦ—“ହେ ବିଳାସିନି । ଏ ପୁଷ୍କରିଣୀର ଜଳ ଚକ୍ରବାକ ସହିତରେ ଶୋଭମାନ ହୋଇଅଛି । ଏ ଭ୍ରମର ପଦ୍ମ ସମ୍ମୁଖରେ ବିଳାସବତୀ ହୋଇଅଛି । ହେ କରେ । ଦେଖ, କପଟ ଯୋଦ୍ଧାର ଯୁଦ୍ଧରେ ମତ୍ତ ହେଲ ପ୍ରାୟ ଦନ୍ତ ଦେଖାଇ ପର୍ବତରେ ଶୂକରମାନେ ବୁଲୁଅଛନ୍ତି ।”

୧୮ଶ ପଦ—ପୁଣି ରାମଚନ୍ଦ୍ର ହସ ହସ ହୋଇ ଗୋମୁଖ ଛନ୍ଦରେ କହନ୍ତି, “ହେ ବିହୁଙ୍ଗ ଗୌର ! ମଣି ପୃଷ୍ଠରେ ସମୁଜ୍ଜ୍ୱଳ ତୋର ଚଞ୍ଚୁପୁଟ

ବାରବାର ତାରତର ମଣିଗଣ ଜ୍ୟୋତ
ଝରତର ସୁରତର ଏଣୀ ଏଣ ପ୍ରୀତ ଯେ ।୧୮।
ବଣ ତରୁନିଧି ଗୁଞ୍ଜ ସଙ୍ଗ ଅସନରେ
ବଣ ଯନ୍ତ୍ର ବିଧି କୁଞ୍ଜଭୃଙ୍ଗ ପ୍ରସନ୍ନରେ ଯେ ।
ବାଦୀବାଦ ବେଣୁ ଥାଇ ଥାଇ ପ୍ରେମଶୀଳା
ବେଦବତ ମଣ୍ଡୁଆଇ ପାଇ ସମ ଶିଳା ଯେ ।୧୯।
ବ୍ୟଥା କରବନି ପାଦ ପ୍ରକାଶେ ବସିଲେ
ବସାଇ ଜାନୁରେ ଅନ୍ତର୍ଲାପେ ଏ ଭାଷିଲେ ଯେ ।
ବିହାରସ୍ଥାନ କେ ମୀନମାନଙ୍କ ଅଟଇ (ଜଳ)
ବାୟସରେ କେହୁ ପ୍ରତିପାଳିତ ହୁଅଇ ଯେ ।୨୦। (ପିକ)
ବିବସ୍ୱନ୍ତ ପ୍ରକାଶେ କି କଲେ ପକ୍ଷୀଅଳି (ରୁତ)
ବିରୂପାକ୍ଷ ନେତ୍ରାନଳେ କେହୁ ଗଲା ଜଳି ଯେ (ମାର)

---

୧୯ଶ ପଦ—ଗୁଞ୍ଜ—ଚାଉଳ । ସମଶିଳା—ସୁନ୍ଦର ପ୍ରସ୍ତର । ତରୁନିଧି ତରୁସମୂହ ।

୨୦ଶ ପଦ—ବିବସ୍ୱନ୍ତ—ସୂର୍ଯ୍ୟ । ପକ୍ଷୀଅଳି—ପକ୍ଷୀସମୂହ । ବିରୂପାକ୍ଷ—ମହାଦେବ ।

---

ତୋଳାକୁ ବାରମ୍ବାର ଖେଳାଇ ନିରୀକ୍ଷଣ କରି, ମୃଗୀ ଓ ମୃଗମାନେ ପରସ୍ପର ସୁରତରେ ବିଶେଷଭାବରେ ରତ ହୋଇ କ୍ରୀଡ଼ା କରୁଅଛନ୍ତି ।"

୧୯ଶ ପଦ—"ଅସନ ବୃକ୍ଷରେ ମାଡିଥିବା ଚାଉଳ ଲତାର ଫଳସବୁ ରତ୍ନମାନଙ୍କୁ ସୁଦ୍ଧା ଧିକ୍କାର କରୁଅଛି । ବିଧାତା ନିର୍ମିତ ବୃକ୍ଷମାନଙ୍କରେ ଭ୍ରମରସବୁ ବସି ଅଛନ୍ତି । ହେ ପ୍ରେମଶୀଳେ ! ବାଉଁଶ ଗଛରେ ପବନ ପଶି ତାକୁ ବଂଶୀ ବାଦନଶୀଳ କରୁଅଛି, ଶୁଣ ।" ତତ୍ପରେ ରାମଚନ୍ଦ୍ର ଖଣ୍ଡିଏ ସୁନ୍ଦର ପଥର ପଡିଥିବାର ଦେଖି ତାକୁ ବେଦୀ ପ୍ରାୟ ମନେ କଲେ ।

୨୦ଶ ପଦ—"ହେ ସୀତେ ! ତୋର ପାଦ ବ୍ୟଥା କରୁଛି ।" ଏପରି କହି ସେ ଶିଳା ଉପରେ ବସିଲେ । ସୀତାଙ୍କୁ ଜାନୁ ଉପରେ ବସାଇ ଅନ୍ତର୍ଲାପରେ କହିଲେ, "ମୀନମାନଙ୍କର ବିହାର ସ୍ଥାନ କଏ ? 'ବାୟସ' ଦ୍ୱାରା କିଏ ପ୍ରତିପାଳିତ ହୁଏ ?

ବିଷ୍ଣୁ କୋଳେ ସର୍ବକାଳେ କେଉଁ ମନୋହର (ରମା)
ବିଶ୍ୱରେ କରୁଛନ୍ତି କେହୁ ପର ଉପକାର ଯେ ।୧। (ତରୁ)
ବାନରଙ୍କର ପ୍ରସିଦ୍ଧ ନାମ କେ ଜଗତେ (କପି)
ବିଗୁର ଗ୍ରହଗଣନା ସଂଖ୍ୟା ପୁନଃ କେତେ ଯେ (ନବ)
ବୟସୀ ସ୍ୱୟମ୍ବରେ କନ୍ୟାକୁ କିସ କହି (ବର)
ବୋଲଇ ଜୀବ ମଧ୍ୟରେ ସାରସ୍ୱନ୍ତ କେହୁ ଯେ ।୨। (ନର)
ବୋଲନ୍ତି ଯବନେ ଇଷ୍ଟଦେବରେ କି ରୂପ (ପିର)
ବସୁଧାପତି ପ୍ରଜାଙ୍କଠାରୁ ନେନେ କିସ ଯେ । (କର)
ବାମନମୂର୍ତ୍ତି ନନ୍ଦନ ବୋଲନ୍ତି କାହାର (ଋଷି)
ବାଞ୍ଛି ସଂସାରୁ କି ହୋଏ ଗୁରୁଶିଷ୍ୟଠାର ଯେ ।୩। (ତର)
ବଧୂରେ ଯୁଦ୍ଧରେ କେଉଁ ବଚନ ଚହଳ । (ମାର)
ବସନ୍ତ ହୋଇଲେ କିସ କରଇ କୋକିଳ ଯେ । (ରବ)
ବିପ୍ରଲବ୍ଧା ପ୍ରଭାତେ କି କରେ ଉପକାନ୍ତେ (ମାନ)
ବ୍ରହ୍ମାଣ୍ଡେ ଜୀବନମୁକ୍ତ ଅଛଇ କେ ସତେ ଯେ ।୪। (ଋଷି)

---

୧ମ ପଦ—“ରାତ୍ର ପ୍ରଭାତ ହୁଅନ୍ତେ ପକ୍ଷୀ ସମୂହ କଣ କରନ୍ତି ? ମହାଦେବଙ୍କ ନେତ୍ରାନଳରେ କିଏ ଜଳିଗଲା ? ସବୁ ସମୟରେ ବିଷ୍ଣୁଙ୍କ କୋଳରେ କିଏ ଶୋଭା ପାନ୍ତି ? ସଂସାରରେ ପରର ଉପକାର କିଏ କରୁଛି ?”

୨ୟ ପଦ—“ଜଗତରେ ବାନରମାନଙ୍କର କେଉଁ ନାମ ପ୍ରସିଦ୍ଧ ? ପୁଣି ଗଣନା କଲେ ଗ୍ରହସଂଖ୍ୟା କେତେ ହେବ ? ବିଚାର କର, ସ୍ୱୟମ୍ବର କାଳରେ ସଖୀ କନ୍ୟାକୁ କଣ କହେ ? ଜୀବମାନଙ୍କ ମଧ୍ୟରେ ଶ୍ରେଷ୍ଠ କିଏ ?

୩ୟ ପଦ—“ଯବନମାନେ ଇଷ୍ଟଦେବଙ୍କୁ କଣ ବୋଲି କହନ୍ତି ? ରାଜା ପ୍ରଜାଙ୍କଠାରୁ କଣ ନିଅନ୍ତି ? ବାମନମୂର୍ତ୍ତି ବିଷ୍ଣୁ କାହାର ପୁଅ ଥିଲେ ? ଏ ସଂସାରରେ ଗୁରୁ ଶିଷ୍ୟଠାରେ କଣ ହେବାକୁ ଇଚ୍ଛା କରନ୍ତି ?

୪ର୍ଥ ପଦ—“ଘୋର ଯୁଦ୍ଧରେ କି ଚହଳ ବାକ୍ୟ ଶୁଣାଯାଏ ? ବସନ୍ତ ସମୟରେ କୋକିଳ କଣ କରେ ? ବିପ୍ରଲବ୍ଧା କାମିନୀ ଜାରପୁରୁଷଠାରେ ପ୍ରଭାତରେ କଣ କରେ ? ସଂସାରରେ ପ୍ରକୃତରେ କିଏ ଜୀବନ୍ମୁକ୍ତ ଅଟେ ?”

ବେଦେ କେ ଅଛୁ ଅଥର୍ବ ଯଜୁଃ ସାମ ଭେଦ   (ଲୁକ)
ବସନ୍ତେ କେ କେ ବିଯୋଗୀ ଶବ୍ଦ କହ ହେଳ ଯେ ।
ଚନ ପିକ ଲୁଡ ମାର ବୋଲେ ବଇଦେହୀ
ବିଶେଷ ତୋଷ ଚୁମ୍ବନ ଆଲିଙ୍ଗନ ଲହୁ ଯେ । ୨୫ ।
ବହ୍ନିଲି ପି ବହୁ ବେଳ ବେଳ ବର୍ଣ୍ଣ ଲେଖି
ବାମ ନାଶି ଦକ୍ଷିଣବର୍ଣ୍ଣକୁ ଭଜ ସଖି ଗୋ ।
( ଶିବ ) ବନ୍ଦ୍ୟ କେ ଜଗତେ, କେହୁ ଶଳଭର ସ୍ଥାନ   ( ଖଳ )
( ସଜ୍ଜ ) ବସି ସ୍ୱଜା କି ଭଉ  କେଶ୍ୟାର କ ରଞ୍ଜନ ଯେ ।୨୬। ( ଲୁପ )
( ଚଣ୍ଡୀ ) ବ୍ୟୋମକେଶମୋହିନୀ କେ, କିଏ କେ ପାଳଇ   (ମାତା )
( ପଣା ) ବର୍ଷ ଖେଳରେ କେ ଘେନ, ଘନ କି ମୁଖିଇ ଯେ ? ( ମୀର )
( ଭକ୍ତ ) ଶିରତେ କେହୁ ପ୍ରବନ୍ଧ, ରଷି କି କରନ୍ତି   ( ତପ )
( ଚିର ) ବନ୍ଦେ ଉତ୍ତୁଙ୍ଗ ଶୃଙ୍ଗ କେ, ବିପ୍ରେ କି ଲୁଅନ୍ତି ଯେ ।୨୭। (ବ୍ରତ)

---

୨୭ଶ ପଦ—ବ୍ୟୋମକେଶ—ମହାଦେବ । ଘନ—ମେଘ ; ଉତ୍ତୁଙ୍ଗ—ଅତି ଉଚ୍ଚ । ବିପ୍ରେ—ବ୍ରାହ୍ମଣମାନେ ।

---

୨୫ଶ ପଦ—"ଅଥର୍ବ, ଯଜୁ, ସାମବେଦକୁ ଛାଡି ଆଉ କି ଭେଦ ରହିଲା ? ବସନ୍ତ କାଳରେ ବିରହୀମାନଙ୍କର ଶବ୍ଦ କେଉଁ ମାନେ ? ଏହା କହିକ କହ । ( ୧୯ଶ ପଦଠାରୁ ୨୫ଶ ପଦ ପର୍ଯ୍ୟନ୍ତ ରାମଙ୍କ ପ୍ରତ୍ୟେକ ପ୍ରଶ୍ନର ଉତ୍ତର 'ଚନ ପିକ ଲୁଡ ମାର' 'ରମା ଭବୁ କପି ନବ' 'କର ନର ହରି କର' 'ଲୁର ତର ମାର ରବ' 'ମାନ ତପୀ ଲୁକ' ହେଲା ) ଶେଷରେ ରାମଚନ୍ଦ୍ର ପଚାରିଲେ, ବସନ୍ତରେ ବିରହୀର ଶବ୍ଦ କିଏ ? ( ବିରହୀକୁ କେଉଁ ମାନେ କଷ୍ଟ ଦିଅନ୍ତି ? ) ରାମଙ୍କ ପ୍ରଶ୍ନ ଶୁଣି ବୈଦେହୀ କହିଲେ, "ଚନ, ପିକ, ଲୁଡ ମାର ।" ଏହା ଶୁଣି ରାମ ଖୁବ୍ ଆନନ୍ଦିତ ହୋଇ ତାଙ୍କୁ ଚୁମ୍ବନ ଓ ଆଲିଙ୍ଗନ କଲେ ।

୨୬ଶ ପଦ—ପୁଣି କହିଲି ପିରେ କାବ୍ୟ ପ୍ରକାଶ କରି କହିଲେ, "ଗୋ ସଖି ! ଦୁଇ ଦୁଇ ଅକ୍ଷର ଲେଖି ବାମ ଅକ୍ଷର ନାଶି ଦକ୍ଷିଣ ଅକ୍ଷରକୁ ଯୋଡ଼ି କର । ଜଗତରେ ପୂଜ୍ୟ କିଏ ? ଶଳଭର ସ୍ଥାନ କିଏ ? ରାଜା କଣ କରି ବସନ୍ତି ? କେଶ୍ୟାର ରଞ୍ଜନ କିଏ ?"

୨୭ଶ ପଦ—"ଶିବଙ୍କର ମୋହିନୀ କିଏ ? ପିଲାକୁ କିଏ ପାଳେ ? ଖେଳ ମଧ୍ୟରେ କଣ କିଏ ? ମେଘ କଣ ତ୍ୟାଗ କରେ ? କିଏ ପ୍ରବନ୍ଧ ରଚନା କରନ୍ତି ? ଉଚ୍ଚ ଶୃଙ୍ଗ କିଏ କହେ ? ବ୍ରାହ୍ମଣମାନେ କଣ କରନ୍ତି ?"

(ଗଦା) ଶସ୍ତ୍ର, ଆୟୁଧ କେ ତହିଁ ବିନା, କେ ଅଗମ୍ୟ ? (ବନ)
(ଲୋକ) ବ୍ରହ୍ମା କି ପାଳନ୍ତି, କେହୁ ରଚନ୍ତି ସଂଗ୍ରାମ ଯେ ? (ସାର)
ବୁଝି ମୈଥିଳୀ ଭାଷିତ ଗୁରୁ ତର ନାହିଁ
ଦେଲେ ରାଘବ ଅଗୁରୁବର୍ଣ୍ଣ ବିନା ସେହୁ ଯେ । ୨୮ ।
ବଡ଼ାଣି ମୂର୍ଦ୍ଧା ପ୍ରକାଶି ଚନ୍ଦନ ବିଶେଷ
ବିଲୋକିତେ ଧୂପିତେ କି ବଳିଛି ମାନସ ହେ ।
ବୋଲି ନୁହୁଁପାଇ ତୋର ଉଦାହରଣରୁ
ଶୁଣିଲେ ଲଙ୍କେଶ ଗରବକରେ ରହିଲୁ ଯେ । ୨୯ ।
ବଳିମୁଖ ମୁଖରନ ଦରେ ଯାଇଁ ପାଶେ
ବେଗେ ଦରେ କରେ ଦୋଳି ଭ୍ରୂମଣି ହାସେ ଯେ ।
ବକ୍ଷେ ସେ ବିଶାଳ ଶିର ଲଟି ଶୋଭା ପାଇ
ଭାବିଦେ ଉ ଅରୁଣ ଚରୁଣ ଗଲ ଉଇଁ ଯେ । ୩୦ ।

---

୨୮ଶ ପଦ—ସଂଗ୍ରାମ—ଯୁଦ୍ଧ ।
୩୦ଶ ପଦ—ବଳୀମୁଖ—ବାନର । ଦରେ—ହସ୍ତରେ ।

---

୨୮ଶ ପଦ—"ଶସ୍ତ୍ର ବିନା କେଉଁ ବଳର ଆୟୁଧ କଣ ? ଅଗମ୍ୟ କିଏ ? ବ୍ରହ୍ମା କାହାକୁ ପାଳନ୍ତି ? କିଏ ସଂଗ୍ରାମ କରନ୍ତି ? (ରାମଙ୍କର ଏହି ପ୍ରଶ୍ନର ଉତ୍ତର ପ୍ରତ୍ୟେକଟି ଭେ ଲେଖି ପ୍ରତ୍ୟେକ ପଦର ବାମ ଅକ୍ଷର ନିଆଗଲେ ତାହାର ଅକ୍ଷରମାନ ପଢ଼ିଲେ ହେବ, 'ଗଦା ଲୋକ ପଣ୍ଡିତା ସାର, ବିପଣ୍ଡିତ ବାନର ।') ଏହା ଶୁଣି ପାଇ ସୀତା କହିଲେ, "ମୁଁ ତ ଗୁରୁ ତର ନାହିଁ । (ମୁଁ ତାହା ଜାଣେ ନାହିଁ) ।" ରାମଚନ୍ଦ୍ର ଉତ୍ତର ଦେଲେ, "ତାହା ଅଗୁରୁ ବର୍ଣ୍ଣ ବିନା ।" (ସେ ବିଦ୍ୟା ଶିଖିବାପାଇଁ ଗୁରୁର ଦରକାର ନାହିଁ) ।

୨୯ଶ ପଦ—ରାମଙ୍କ କଥା ଶୁଣି ସୀତା ମୂର୍ଦ୍ଧାବନତା ପ୍ରାୟ ସବୁ ଜାଣି ନ ଜାଣିଲା ପରି ହୋଇ କହିଲେ, "ଅଗୁରୁ ତ ଚନ୍ଦନ ବିଶେଷ, ତାହା ଦେଖି ହେବାପାଇଁ କା ଧୂପ ଦେବାରେ ତୁମ୍ଭର ମନ ବଳିଛି କି ?" "ଏହା କହିବାକୁ କଣ ତୋର ଉଦାହରଣ ଲକ୍ଷିଲ କି ?" (ଅର୍ଥାତ୍ ବନ୍ଧୁ ସେପରି ଜାଣେ ନାହିଁ ; ଉଦାହରଣକୁ ବୁଝି ଯାଏ କି ନା),—ଏହା କହି ରାମ ସୀତାଙ୍କ ଲଜ୍ଜାରେ ଚେହେର ଭଳିତ ଦେଲେ ।

୩୦ଶ ପଦ—ଏହି ସମୟରେ ଗୋଟିଏ ମାଙ୍କଡ଼ ଖୁଁ ଖୁଁ ଶବ୍ଦ କରି ତାଙ୍କ ପାଖକୁ ଯାଆନ୍ତି, ଭୟଭୀତା ସୀତା ଭୟ ପାଇ ରାମଙ୍କୁ ଅତି ଶୀଘ୍ର ହସ୍ତ ବୃନ୍ଦରେ କୁଣ୍ଢାଇ ପକାଇଲେ । ସେ ବେଳେ ସୀତା ରାମଙ୍କ ବକ୍ଷରେ ଲାଗି ମେଘରେ ଅରୁଣ ଉଦୟ (ବାଳାର୍କ) ଉଦିଲା ପ୍ରାୟ ବିଶେଷ ଶୋଭା ପାଇଲା ।

ତକ୍ଷଣେ କାନ୍ତକାନ୍ତ ବଚନ ପ୍ରକାଶି
ବାଳା ପୁଂସ ସ୍ୱର ସଗ ସଗ ଛଳେ ଦଶି ଯେ ।
ତାହେ ହସି ମଉନ ହୃଦୟଗ୍ରମା ଦଳା
ବସ୍ତୀର୍ଣ୍ଣ ମଧ୍ୟପମଭ ଏ ସ୍ୱରେ ହୋଇଲା ଯେ । ୩୮ ।
କାରଣବେଶର ପୁଷ୍ପ ତୋଡ଼ୁଁ ଫଳ ଜଳ
ତାର ଜଳାହିଁ ଅଭ୍ରୁତେ ନେତ୍ର ସରସିଜ ଯେ ।
କରୁଣେ ହିସ୍ୱା ମାନ ଥିଧ୍ୟ ଚଞ୍ଚଳତ
ତଶ୍ଲେମଶ୍ଲେମ ମେଘପୃଷ୍ଠରେ ଗ୍ରହ କୃତ ଯେ । ୩୯ ।
ବରଦ ଶରଣ ଜନ ସାର ବଦାରବ
ଦୃଷ୍ଟ ମାନ ଜରଠ ଚରିଜନ ମାଧବ ଯେ ।

---

୩୮ଶ ପଦ—ସଗ—ଅନୁସ୍ୱର ବା ହେତୁ । ସ୍ୱର—ରଙ୍ଗ ।
୩୯ଶ ପଦ—କାରଣବେଶର—ନାଟ୍ୟବେଶର । ସରସିଜ—ପଦ୍ମ ।

---

୩୮ଶ ପଦ- ତାହା ଦେଖି ତହିଁର ପ୍ରେମ ମନୋହର ବଚନ ପ୍ରକାଶ କରି କହିଲେ, "ହେ ପ୍ରିୟେ ! କାନ୍ତାର ବେଶ୍ୱେତନେତ୍ର ସ୍ୱେହ ରଙ୍ଗ ଛଳରେ ଦଶିଲା । ( ବିପରୀତ ରତିବେଳେ ପୁରୁଷ ସ୍ତ୍ରୀ ଓ ସ୍ତ୍ରୀ ପୁରୁଷ ରୂପେ ବର୍ତ୍ତିତ ହୋଇଥିବାରୁ ପୁରୁଷଠାରେ ସ୍ତ୍ରୀର ସ୍ପୃହତର ଗୁଣ ଦେଖାଇଲେ ) । ଏହା ଶୁଣି ଉତ୍କଣ୍ଠିତା ବାଳା ସୀତା ଥରେ ହସି ମୌନ ହେଲେ । ଏହି ସ୍ଥଳରେ ମଧ୍ୟସମତ ଲକ୍ଷଣ ପ୍ରାପ୍ତ ହେଲା । ( ୨୧ଶ ପଦଠାରୁ ୩୮ଶ ପଦ ପର୍ଯ୍ୟନ୍ତ ମଧ୍ୟସମତ । ମଧ୍ୟସମତର ଲକ୍ଷଣ—ପାଦର ମଧ୍ୟ ଭାଗରେ ଯମକ ନିୟମ ଅନୁସୃତ ହୋଇଥିଲେ ମଧ୍ୟସମତ ହୁଏ ) ।

୩୯ଶ ପଦ—ତାହାପରେ ରାମଚନ୍ଦ୍ର ନାଟ୍ୟବେଶ ଫୁଲ ତୋଳିବାବେଳେ ଫୁଲର ପରାଗ ସୀତାଙ୍କ ନେତ୍ର ପଦ୍ମରେ ପଡ଼ିବାରୁ ଜଳ ଜନ୍ମି ଅଶ୍ରୁ ଦେଖାଗଲା । ( ଜଳରୁ ପଦ୍ମ ଜାତ ହୁଏ, ମାତ୍ର ଏ ନେତ୍ରପଦ୍ମରୁ ଜଳ ଜାତ ହେଉଅଛି, କେଡ଼େ ଅଦ୍ଭୁତ ) । ତାହା ଦେଖି 'ପ୍ରିୟା ମାନ କଲେ କି ?' ଏପରି ଶଙ୍କାର ରାମଚନ୍ଦ୍ର ହୋଇ ଶ୍ଲେମଶ୍ଲେମ ମେଘଦ୍ୱାର ଛଳରେ ଗ୍ରହଣ କଲେ । ( ଶ୍ଲେମ ଶ୍ଲେମ ମେଘପୁର ଲକ୍ଷଣ—ଗୀତର ପ୍ରତ୍ୟେକ ପାଦକୁ ମୂଳରୁ ଶେଷକୁ ପାଠ କଲେ ଯାହା ଶେଷରୁ ମୂଳକୁ ପାଠ କଲେ ତାହା ) ।

୪୦ଶ ପଦ—"ହେ ପ୍ରିୟେ ! ପ୍ରସନ୍ନା ହୁଅ । ତୁମର ଶ୍ରେଷ୍ଠ ମୁଖରେ ଲୁଚିଥିବା ଦରସ ହସକୁ ପ୍ରକାଶ କର, ଶୀଘ୍ରେ ପ୍ରସନ୍ନ ହୁଅ । ( ଆଉ ତୁମର

ଜଳ ମାର ତ ହେବ ବନ୍ଧେ ତରୁ ମାଧବ
ବନ୍ଧେ ସଦା ତହେଁ ସରତ ଦାସ ହେବ ଯେ । ୩୩ ।
ବକ୍ରୋକ୍ତି ପ୍ରକାଶ କଲ ଚତୁରୀରତନ
ବିସ୍ତାରିଲୁ ନୃତ୍ୟ ଶେଷ କେ ଏ କହ ମାନ ଯେ ।
ଭଣିଲେ ତହୁଁ ମଧୁର ଦୂନକ ରଚନା
ବେଣୀ ନ ଗଲେ ନାଚନ୍ତା ଉତ୍ଫୁଲ୍ଲ ସୁମନା ଯେ । ୩୪ ।
ବଦନକୁ ନୁଆଇଁ ଭଣିଲେ ରସବତୀ
ବିସୋରିବ ନାହିଁ ସଖି ସେ ସୁରସମୟ ଯେ ।

---

୩୩ଶ ପଦ—ବରଦ—ପ୍ରସନ୍ନ । ପରିଷାନନ—ବିମର୍ଷ ମୁଖ । ଉଦରବ—ବିଶେଷରେ ଦ୍ରବୀଭୂତ । ଦଧ—ନାଶ । ଜରତ—ବୃଦ୍ଧ । ତର୍ଜନ—ଭୟ । ମାଧବ—ବସନ୍ତକାଳ । ବନ୍ଧ—ଭେଦନ । ମର—କନ୍ଦର୍ପ ।

---

କର ) ଉଠନ୍ତି ତର୍ଜନ କରି ଅସୁଅଛି । ସେ ତାର ଶର ବନ୍ଧନ ଓ ମାରିବ । କାଶକ୍ରୀଳତା ଉଦ୍‌ବେଳିତ ହେଉଅଛି । ଏହା ଦେଖି ମୋ ମନରେ ହାସ ଜାତ ହେଉଛି । ତୁ ତୋର ବିଶେଷ ଭାବରେ ବଢ଼ିଥିବା ଏ ମାନକୁ ତ୍ୟାଗ କର । ମୁଁ ସାନୁରକ୍ତ ହୋଇ ତୋର ଦାସ ହେବ । (ବସନ୍ତର ଶୋଭା ଦେଖି ମୋ ମନରେ କନ୍ଦର୍ପର ଭୟ ଜାତ ହେଉଛି । ତୁ ଏତେବେଳେ ମାନ କଲେ କନ୍ଦର୍ପ ମୋତେ ବହୁତ ଦୁଃଖ ଦେବ । ତୁ ମୁଖ ନ ଶୁଖାଇ ପ୍ରସନ୍ନ ହୁଅ, ମୁଁ ତୋର ଦାସ ହେବ )।"

୩୪ଶ ପଦ—ଏହା ଶୁଣି ଚତୁରୀ ରତନ ସୀତା ବକ୍ରୋକ୍ତି ପ୍ରକାଶ କରି କହିଲେ, "ହେ ଏ ନୃତ୍ୟ ବିସ୍ତାର କରୁଥିଲ, ଶେଷ ହେଲା କି ? ମାନ ବୋଲି କଣ କହୁଛ ? ( ନୃତ୍ୟ ଶେଷରେ ମାନ ହୁଏ, ଏଠାରେ କେହି ନୃତ୍ୟ କରୁ ନ ଥିଲ, ମାନ ବୋଲି କଣ କହୁଛ ? )" ଏହା ଶୁଣି ଶ୍ରୀରାମଚନ୍ଦ୍ର ମଧୁର ସ୍ୱରରେ ଧନ୍ୟାଙ୍କୁ ରଚନା କରି କହିଲେ, "କେକୀ ଅର୍ଥାତ୍ ମୟୂର 'ସୁମନା' ମାଳତୀଫୁଲ 'ଉତ୍ଫୁଲ' ଫୁଟିବା ସମୟରେ ନୃତ୍ୟ ବିସ୍ତାର କରେ । କାରଣ ମାଳତୀ ଫୁଲ ଫୁଟେ ଓ ମୟୂର ନୃତ୍ୟ କରେ ) । ତୁ ତ ସୁମନା, 'ଉତ୍ଫୁଲ' ଉଲ୍ଲସିତ ହେଲେ ତୋ ବେଣୀ ନାଚନ୍ତା ।" ( ଅର୍ଥାତ୍ ତୁ ବିପରୀତରତି କଲେ ତୋର ବେଣୀ ନାଚନ୍ତା ସିନା ) ।

୩୫ଶ ପଦ—ରସବତୀ ସୀତା କାନ୍ତଙ୍କର ବିପରୀତ ରତ ମାଗିବାର ଅଭିପ୍ରାୟ ବୁଝି ଲଜ୍ଜାରେ ମୁହଁ ତଳକୁ କରି କହିଲେ, "ସେ ରସସାରକୁ

ବଳସି ବଳସି ବନେ ପର୍ଣ୍ଣବାସେ ଯାଇ
ଊଦ୍ୟ ଅଦ୍ୟଯମକ ପିଶିତ ଶୁଷ୍କେ ତହିଁ ଯେ । ୩୫ ।
ବଳ ବଳିପୁଷ୍ଟ ଝାମ୍ପେ ଅହାର ନେଉନେ
ବଳ ବଳଶୋଭନୀ ତାହାର ନିବାରନ୍ତେ ଯେ ।
ବାସ ବାସଅଙ୍ଗୀର ଖସିଲ ଦୀପ୍ତ ସ୍ତନ
ବିମ୍ବ ବିମ୍ବଅରୁଣର ଯେ ଓଷ୍ଠ ନିନ୍ଦନ ଯେ । ୩୬ ।
ଖଗପ ଖ-ଗପ ଚଞ୍ଚୁ ଘାତରେ ଖଣ୍ଡନ୍ତେ
ବରସ ବୀରସତ୍ତମ ବାଣଷଣ୍ଡ କୁଟେ ନେଯ ।
ଭୂନ ଭୂନ ମନ୍ଦର ତାଡ଼ିଲା ନେତ୍ର ଧବେ
ବିଧିରେ ବଧୀରେ ମଜ୍ଜି ଏକଦୋଷେ ସର୍ବେ ଯେ । ୩୭ ।

---

୩୬ଶ ପଦ—ବଳ—କାରଣ ନ ମାନି । ବଳିପୁଷ୍ଟ—କାକ । ବଳଶୋଭନୀ—ତ୍ରିବଳୀ ଶୋଭିତା । ବାସ—ବସ୍ତ୍ର । ବାସଅଙ୍ଗୀ—ସୌରଭାଙ୍ଗୀ । ବିମ୍ବ—କଇଁଅଁ କାକୁଡ଼ି ।

୩୭ଶ ପଦ—ବିମ୍ବ—ମଣ୍ଡଳ । ଖ—ପକ୍ଷୀ । ଚଞ୍ଚୁ—ଥଣ୍ଟ । ଭାମ—କ୍ରୋଧ । ମନ୍ଦ—କାକ । ଓବ ସ୍ୱର୍ଗ ବା ଆକାଶ । ବିଧିରେ—ଦୈବଯୋଗରେ । ବଧୀରେ—ଧୀରତା ବିହୀନରେ ବା ମୂର୍ଖତାରେ ।

---

ମନରୁ ପାସୋରିବ ନାହିଁ ପରା ? ( ଅନ୍ୟାର୍ଥ—ସେ ସୁରହମଣ୍ଡଳୁ ପାସୋରିବ ନାହିଁ ପରା ) ?" ଏହାପରି ସେ ଦୁହେଁ ବନରେ ବିହାର କରି କରି ପର୍ଣ୍ଣ-କୁଟୀରରେ ପହଞ୍ଚିଲେ । ସେଠାରେ ମାଂସ ଶୁଖାଇବାରେ ଅଦ୍ୟଯମକ ପ୍ରକାଶ ହେଲା । ( ଅଦ୍ୟଯମକ ଲକ୍ଷଣ—ପ୍ରତ୍ୟେକ ପାଦର ପ୍ରଥମରେ ଯମକ ଶୃଙ୍ଖଳା ଅନୁସୃତ ହେଲେ ଅଦ୍ୟଯମକ ହୁଏ ।

୩୬ଶ ପଦ—ବଳବାନ୍ କାକ ଅହାର ଲୋଭରେ ଶୁଖୁଥିବା ମାଂସକୁ ଝାମ୍ପନ୍ତେ ସୀତା ତାହା ନିବାରଣ କରିବାକୁ ଗଲାବେଳେ ଯେଉଁ ସୀତାଙ୍କ ଓଷ୍ଠ ବିମ୍ବଫଳକୁ ଓ ସୂର୍ଯ୍ୟମଣ୍ଡଳକୁ ନିନ୍ଦା କରେ, ସେହି ସୌରଭାଙ୍ଗୀ ତ୍ରିବଳୀ-ଶୋଭନୀ ସୀତାଙ୍କ ଦେହରୁ ଲୁଗା ଖସି ପଡ଼ିଲା, ତେଣୁ ସ୍ତନ ଦେଖାଗଲା ।

୩୭ଶ ପଦ—କାକପକ୍ଷୀ ପାଦ ଓ ଥଣ୍ଟ ଘାତରେ ସୀତାଙ୍କର ଓଷ୍ଠ ଓ ସ୍ତନକୁ ଅଘାତ କରନ୍ତେ ବୀରଶ୍ରେଷ୍ଠ ରଘୁଚନ୍ଦ୍ର, କାଉଁଶିକାଶର ପ୍ରୟୋଗ କରି ଦ୍ୟୁନ୍ୟରେ ଥିବା ଅପଖ୍ୟା କାକଙ୍କର ନେତ୍ର ଉପାଡ଼ି ପକାଇଲେ । ଦୈବ ଯୋଗରେ ଓ ବିଧାନାନୁସାରେ ଶୋଣିତ ଦୋଷରେ ସମସ୍ତେ ମଜ୍ଜିଲେ ।

ବଣ ଧ୍ୟାନମାନସେ ସ୍ୱାର ସେ ସ୍ୱର୍ଗ ସଦେ
ବୋଲେ ଭଞ୍ଜ ଉପେନ୍ଦ୍ର ବେଣୁବଂଶ ପଦେ ସେ ।୮୦।

---

## ବଂଶ ଛାନ୍ଦ

### ରାଗ—ବଙ୍ଗଳାଶ୍ରୀ

କହିଲେ ସୀତା ଶିତାଂଶୁମୁଖୀ ଏକଦିନେ ଅତି ମ୍ଳାନ ହୋଇ ।
ବହୁ ବହୁଲ ବନବାସ ବାସରେ ନୃପତ ହେବାର ଯାଇ ।
ବିଳସାଇ ଯଥା ଅଳକା ତେଜାଇ ଈଶ୍ୱରଙ୍କୁ ଶମଶାନେ ।
ବିଷ୍ଣୁଙ୍କୁ ରତନପଲଙ୍କ ଛଡ଼ାଇ ଜଡ଼ାଇ ସର୍ପ-ଶୟନେ ।୧।
ଅପୋଷି ନ ପାରି ଅବଧି ବିଧିଙ୍କ କପାଇ ବୋଲାଇ ବିଧି ।
ହସାଇ ବୋଲେ ଶ୍ରୀରାମ କଟାକ୍ଷ ଖେଳେ ରସାଇ ଲାବଣ୍ୟନିଧି ।

---

୧ମ ପଦ—ଶୀତାଂଶୁମୁଖୀ—ଚନ୍ଦ୍ରବଦନା । ଅତି ମ୍ଳାନ—ଅତି ଦୁଃଖିତ । ବାସରେ—ବନରେ ଅର୍ଥାତ୍ ଅରକ୍ଷିତ ବନରେ ।

---

ବୀର ରାମଚନ୍ଦ୍ର ଓ ସତୀ ସୀତାଙ୍କ ପାଦରେ ଧ୍ୟାନମନା ହୋଇ ଉପେନ୍ଦ୍ର ଭଞ୍ଜ ଏ ଛାନ୍ଦକୁ ଗୃଢଣ ପଦରେ କହିଲେ ।

---

## ବଂଶଛାନ୍ଦ

୧ମ ପଦ—ଦିନେ ଚନ୍ଦ୍ରମୁଖୀ ସୀତା ଅତି ଦୁଃଖସ୍ୱରରେ କହିଲେ, "ସ୍ୱର୍ଗ ପାଇଲେ ରାଜା ହେବାର କଥା ଥିଲା । ବିଧାତା ଯେପରି ଶିବଙ୍କୁ ଅଳକା ଭୁବନ ଛଡ଼ାଇ ଶ୍ମଶାନରେ ବୁଲାଇଲା, ବିଷ୍ଣୁଙ୍କୁ ରତ୍ନପଲଙ୍କ ଛଡ଼ାଇ ସର୍ପ ଶଯ୍ୟାରେ ଶୁଆଇଲା, ସେହିପରି ଆମ୍ଭ କପାଳରେ ରାଜ ସୁଖ ଛଡ଼ାଇ ବନବାସ ବିଧାନ କଲା ।"

୨ୟ ପଦ—" 'ଅବଧି' ଅନୁଚିତ ବିଧାନକୁ ଯେ ପାଶୋରି ନ ପାରେ ସେ ତାହାଙ୍କୁ ବିଧି ନାମ କହନ୍ତି ?" ଏହା ଶୁଣି ଶ୍ରୀରାମ ଲାବଣ୍ୟନିଧି ସୀତାଙ୍କୁ କୋଳରେ ବସାଇ ପ୍ରେମଖେଳରେ ତାଙ୍କ ମନକୁ ରସାଇ କହିଲେ, "ବିରଞ୍ଚି (ଯେ ଅଦ୍ଭୁତ ଆଚରଣ କରନ୍ତି) ପାର୍ବତୀଙ୍କ ସଙ୍ଗତରେ ଏକାନ୍ତରେ କେଳି କରିବା ପାଇଁ ଈଶ୍ୱରଙ୍କୁ ଶ୍ମଶାନରେ ବୁଲାଇଲା, ଲକ୍ଷ୍ମୀଙ୍କ ସଙ୍ଗେ ଏକାନ୍ତରେ ବିହରିବା ପାଇଁ

ନିରନ୍ତ୍ର ଏକାନ୍ତ କେଳିକି ନିରତ ଗଉରୀ କମଳା ସଙ୍ଗେ ।
ନିର୍ଜନ ସ୍ଥାନ ବୋଲି କି ଛାଡ଼ିଲେ ମୋତେ ନଟନ ନିହସର ରଙ୍ଗେ ।
ବିବେକ କର ରସିକ ରସିକାର ଏଥୁ ଅଛୁ କି ଉତ୍ସବ ।
ବୃଷସ୍ୱସ୍ୟା ତେଜ ମଳୟପର୍ବତେ ବସନ୍ତେ ଆସେ ବାସବ ।
ବ୍ରହ୍ମଲୋକ ଛାଡ଼ି ସେହୁ ପୁଣି ଲଭେ ଗନ୍ଧମାଦନ ଶିଖରୀ ।
ବିଭୁଁ ଅମ୍ଭର ସୁରତପ୍ରବୀଣା କି ଉଣା ଅଛି କି କହ ? ୩ ।
ନିବସୁ ସଉଧ ସଦନେ ନିବସୁ ସତ୍ତ୍ୱସଦନେ ଧନ ।
ବେଢ଼ି ଚାଳୁଥାନ୍ତି କଞ୍ଚୁକୀ ବେଢ଼ି ଚାଳୁଛନ୍ତି କଞ୍ଚୁକୀ ।

---

୩ୟ ପଦ—ବାସବ—ଇନ୍ଦ୍ର । ସୁରତପ୍ରବୀଣା—ରତିପଣ୍ଡିତା ।

୪ର୍ଥ ପଦ—ସଉଧ ସଦନେ—କୋଠାଘରେ । ସତ୍ତ୍ୱ ସଦନେ—ଋଷିଗୃହରେ । କଞ୍ଚୁକୀ—ଯୋଦ୍ଧା ବା ଅନ୍ତଃପୁରରକ୍ଷକ ନପୁଂସକ । କଞ୍ଚୁକୀ—ସର୍ପ । ଚନ୍ଦ୍ରାତପ—ଚାନ୍ଦୁଆ । ଚନ୍ଦ୍ରତାପ—ଚନ୍ଦ୍ର କିରଣ । ସହଚରୀ—ସଖୀ ସହଚରୀ—ଝିଣ୍ଟି ବୃକ୍ଷ ।

---

ବିଷ୍ଣୁଙ୍କୁ ସାଗର ମଧ୍ୟରେ ସର୍ପ ଶୟନରେ ବିଳସାଉଛ । ଏ ବନ ନିର୍ଜନ ସ୍ଥାନ ବୋଲି ସେ ବିଧାତା ବୋଧେ ମୋତେ ଏକାନ୍ତରେ ନାନାରଙ୍ଗରେ କେଳି କରିବା ପାଇଁ ପଠାଇଅଛି ।" ( ବିଧାତା ଯାହା କରନ୍ତି ତା ଅବଶ୍ୟ ଭଲ ହେ, ଉଚିତ କାର୍ଯ୍ୟ କରନ୍ତି । ଏହାଦ୍ୱାରା ରାମଙ୍କର ସୁଖ ଦୁଃଖରେ ସମଧୀରତା ଗୁଣ ସୂଚିତ ହେଲା ) ।

୩ୟ ପଦ—"ହେ ପ୍ରିୟେ ! ମନରେ ବିଚାର କର, ରସିକ ରସିକାର ଏଥୁଁ ଭଳି ଆଉ ଆନନ୍ଦ ଅଛି କି ? ଇନ୍ଦ୍ର ଏକାନ୍ତରେ ବିହାର କରିବା ନିମିତ୍ତ ପୁଲୋମଜା ସଙ୍ଗେ ବସନ୍ତ କାଳରେ ମଳୟ ପର୍ବତକୁ ଆସନ୍ତି । ସେହି ପ୍ରକାର ପୁଣି ବ୍ରହ୍ମଲୋକ ଛାଡ଼ି ବିହାର କରିବା ନିମିତ୍ତ ଗନ୍ଧମାଦନ ପର୍ବତ ଖୋଜି ଆସନ୍ତି । ହେ ରତିନିପୁଣା ! ଅମ୍ଭର ଏଠାରେ ସୌନ୍ଦର୍ଯ୍ୟର କିଛି ଉଣା ଅଛି କି ?"

୪ର୍ଥ ପଦ—"ହେ ଧନ ! ଆମେ ଅଯୋଧ୍ୟାର ସଉଧସଦନରେ ରହୁଥିଲେ, ଏଠାରେ ଋଷିମାନଙ୍କର ଗୁମ୍ଫାରେ ରହୁଥାଉଁ ; ସେଠାରେ 'କଞ୍ଚୁକୀ' ରକ୍ଷକମାନେ ବେଢ଼ି ରହି ଜଗୁଥିଲେ, ଏଠାରେ 'କଞ୍ଚୁକୀ' ସର୍ପମାନେ ଚାରିଆଡ଼େ ବେଢ଼ି ରହି ଖେଳ କରୁଅଛନ୍ତି । ସେଠାରେ ଚାନ୍ଦୁଆ ତଳେ ବସୁଥିଲେ, ଏଠାରେ ଚନ୍ଦ୍ରକିରଣ ତଳେ ବସୁଥାଉଁ । ସେଠାରେ ସଖୀ ସମୂହଙ୍କ

ଲସିଥାଇ ଚନ୍ଦ୍ରାତପ ତଳେ ଲସିଥାଇ ଚନ୍ଦ୍ରାତପ ତଳେ ।
ଦେଖିତ ଯେ ସହଚରୀକୁଳେ ଦେଖିତ ଯେ ସହଚରୀକୁଳେ ।୭।
ବୁଲିବା ଥିଲ ଜଗତୀରେ ବୁଲିବା ଜଗତୀରେ ହେଲା ସେନ ।
ଦେଖେଲୁ ଥାଇ ଚିତ୍ରଲେଖା ଦେଖେଲୁ ଥାଇ ଚିତ୍ରଲେଖା ପୁନ ।
ବିକ୍ଷିପ୍ତ ଯେତେ ରଙ୍ଗାଧର ଯେତେ ବିକ୍ଷିପ୍ତ ରଜନୀଧର ।
ବୋଧକ ସୁରକ ଗିର ହେଉଥିଲା ବୋଧକ ଶୁକ-ର ଗିର ।୮।
ବାରେ ବାରେ ଦେଖି ଭଦ୍ର ଉତ୍ସବକୁ ଭଦ୍ର ଉତ୍ସବକୁ ଦେଖି ।
ଅଶେଷ ଖଦ୍ୱାର ଲଭିଲା ଅଶେଷ ଖଦିର ଲଭିଲା ସୁଖି ।

---

୭ମ ପଦ—ଜଗତୀ - ଅଟ୍ଟାଳିକା । ଜଗତୀରେ—ପୃଥିବୀରେ । ଚିତ୍ରଲେଖା—ସାବିତ୍ରୀପକ୍ଷୀ । ରଙ୍ଗାଧର—କର୍ପୂରଚୂର୍ଣ୍ଣ । ରଜନୀଧର—ଧୂଳିରାଶି । ସୁରକ—ଉତ୍ତମ ଲୋକ । ଶୁକ-ର ଶୁକପକ୍ଷୀ ।

୮ମ ପଦ—ଭଦ୍ରଉତ୍ସବ- ମଙ୍ଗଳ ଉତ୍ସବ । ଭଦ୍ରଉତ୍ସବ—ଭଦ୍ରଭଦ୍ରଜଅପକ୍ଷୀ । ଖଦିର—ଖଇର । ଖଦ୍ୱାର—ବସ୍ତ୍ରନିର୍ମିତ । ଅକ୍ଷମାଳା—ପୋଷାକ । ଅକ୍ଷମାଳା—ଚକ୍ଷୁର ଲୋତକ । ଶାଖୀ—ବୃକ୍ଷ । ସୁଶିଳା—ଭଲ ପଥର ।

---

ଲେଖିତ ହୋଉଥିଲେ, ଏଠାରେ ଚିନ୍ତିତ ସମ୍ମୁଖରେ ଲେଖିତ ହୋଇ ରହୁଛନ୍ତି ।"

୭ମ ପଦ—"ସେଠାରେ 'ଜଗତୀରେ' ଅଟ୍ଟାଳିକାରେ ବୁଲୁଥିଲେ, ଏଠାରେ 'ଜଗତୀ'ରେ ମହୀରେ ବୁଲିବାର ହେଲା । ସେଠାରେ ବାନ୍ଧମାନଙ୍କରେ ଚିତ୍ରିତ ହୋଇଥିବା ଚିତ୍ର ସବୁ ଦେଖୁଥିଲେଇ, ଏଠାରେ ସ୍ଥଳ ପାଇରେ ଲେଖା ହୋଇଥିବା ଚଳଚଳକୁ ପରସ୍ପର ପରସ୍ପରର ଦେଖୁଛନ୍ତି । ସେଠାରେ ଶଯ୍ୟାରେ 'ରଙ୍ଗାଧର' କର୍ପୂର ଚୂର୍ଣ୍ଣ ବିଛା ହୋଇଥିଲା, ଏଠାରେ ଶଯ୍ୟାରେ 'ରଜନୀଧର' ଧୂଳି ସମୂହ ବିଛା ହୋଇଅଛି । ସେଠାରେ ଉତ୍ତମ ଲୋକଙ୍କର ବାଣୀ ଅର୍ଥାତ୍ କବିତା ଶୁଣି ଚିତ୍ତ ବୋଧ ହେଉଥିଲା, ଏଠାରେ ଶୁକ ପକ୍ଷୀର ଗାନ ଚିତ୍ତ ବୋଧ କରୁଅଛି ।"

୮ମ ପଦ—"ସେଠାରେ ଥରେ ଥରେ ମଙ୍ଗଳ ଉତ୍ସବକୁ ଦେଖୁଥିଲେ, ଏଠାରେ 'ଭଦ୍ର' ଭଦ୍ରଭଦ୍ରଜଅ ପକ୍ଷୀଙ୍କ ଖେଳ ଦେଖୁଛନ୍ତି । ହେ ସଖି ! ସେଠାରେ ବହୁତ ଜଣ ଲୋକମାନଙ୍କର ପୂଜନ ହେଉଥିଲା, ଏଠାରେ ବହୁତ ଖଇରଗଛ ପବନଦ୍ୱାରା ପୂଜିତ ହେଉଅଛି । ସେଠାରେ ପୋଷାକ ନିର୍ମିତରେ ହେଉଥିଲା, ଏଠାରେ 'ଅକ୍ଷମାଳା' ନେତ୍ରର ଲୋତକ

କଷ୍ଟ ନୋହେ ତହିଁ ଅପଲ୍ଲିତା ଏଥି କଷ୍ଟ ନୋହେ ଅପଲ୍ଲିତା ।
ବସିଥାନ୍ତି ସାକ୍ଷୀ ସୁଶୀଳା ପଡ଼ନ୍ତି ଏବେ ତ ଶାଖୀ ସୁଶିଳା ।୬।
ତଣ କରୁଥିଲ ଶତ୍ରୁ କ୍ଷୀରପାନ ବଣ କରେ କ୍ଷୀରପାନ ।
ବାଳା ଶୁଣୁଥାଇ ଅନକ ସ୍ୱନକୁ ଶୁଣିମା ଅନକ ସ୍ୱନ ।
ବଧୂରେ ଗନ୍ଧର୍ବେ ଗାୟନ କରନ୍ତି ବୋଧନ୍ତି ସୁମନା ବାସେ ।
କଧୀରେ ଗାନ୍ଧର୍ବେ ଗାୟନ କରନ୍ତି ବୋଧନ୍ତି ସୁମନା ବାସେ ।୭।
ବାନ୍ଧବ ଏଥିରେ ଦେଖାଯାଉ ନାହିଁ ନାଚିବାର ନୃତ୍ୟକାରୀ ।
ବେଣୀ ନାସ ମଣି ରମଣୀମଣିରେ ନାସ୍ତି ଅନୁଗ୍ରହ କର ।
କହନ୍ତି ନନ୍ଦିନ ନନ୍ଦିବରହିଁ ପଢ଼ୁ ନନ୍ଦିବରହ୍ମା ।
ବୋଲି କରୁଣ୍ୟ ନାସାପୁଟା ଫୁଲାଇ ଶିରଷ୍ଟାଳି ଦେଇ ରହି ।୮।

---

୭ମ ପଦ—କ୍ଷୀରପାନ—ଦୁଗ୍ଧପାନ । ଷୀରପାନ—ଜଳପାନ । ଅନକ—ପଞ୍ଚଶବ୍ଦବାଦ୍ୟ । ଅନକସ୍ୱନ—ମଣ୍ଡକ ମେଘ । ସୁମନା—ପଣ୍ଡିତମାନେ । ବାସେ—ଗୃହରେ । ଗନ୍ଧର୍ବେ—କୋକିଳମାନେ । ସୁମନା—ଫୁଲ ।

---

ନଦୀରେ ହୋଇଅଛି । ସେଠାରେ ସାକ୍ଷୀ ହୋଇ ସୁଶୀଳା ସଖୀମାନେ ବସିଥାନ୍ତି, ଏଠାରେ 'ଶାଖୀ' ବୃକ୍ଷସବୁ ଓ 'ସୁଶିଳା' ଉତ୍ତମ ପଥର ଖଣ୍ଡମାନ ରହିଅଛି ।"

୭ମ ପଦ—"ସେଠାରେ 'କ୍ଷୀରପାନ' ଦୁଗ୍ଧପାନ ତୁମ୍ଭେ କଣ କରୁଥିଲ, ଏଠାରେ 'କ୍ଷୀର' କ୍ଷୀରଗଛ ଓ 'ପାନ' ପାନ ଲତା—ଏମାନେ ଅଥବା ପଙ୍କ ଜଳ ପାନ ତୁମ୍ଭେ କଣ କରୁଅଛ ! ହେ ବାଳା । ସେଠାରେ, 'ଅନକସ୍ୱନକୁ' ପଞ୍ଚଶବ୍ଦବାଦ୍ୟ ନାଦକୁ ଶୁଣୁଥିଲେ, ଏଠାରେ 'ଅନକସ୍ୱନ' ମେଘ ଧ୍ୱନିକୁ ଶୁଣିବା । ସେଠାରେ 'ଗନ୍ଧର୍ବମାନେ' ଯୁବକମାନେ ଉଚ୍ଚରେ ଗାନ କରୁଥିଲେ, ଗୃହରେ ସ୍ତ୍ରୀମାନେ ବୋଧ କରୁଥିଲେ (ଅଥବା ପଣ୍ଡିତମାନେ ବୋଧ କରୁଥିଲେ), ଏଠାରେ 'ଗନ୍ଧର୍ବେ' କୋକିଳମାନେ ବଧୂକଣ୍ଠରେ ଗାୟନ କରୁଅଛନ୍ତି ଓ ପୁଷ୍ପମାନେ ବାସନାରେ ମନକୁ ତୋଷ କରୁଛନ୍ତି ।"

୮ମ ପଦ—"ହେ ବାନ୍ଧବ ! ସେଠାରେ ଯାହା ଥିଲ, ତାର ଅନୁରୂପ ସବୁ ଏଠାରେ ଅଛି, କିନ୍ତୁ ସେଠାରେ ନୃତ୍ୟକାରୀମାନେ ଥିଲେ, ମାତ୍ର ଏଠାରେ ନୃତ୍ୟକାରୀମାନେ ନାଚିବାର ଦେଖାଯାଉ ନାହିଁ । ହେ ରମଣୀମଣି ! ଅନୁଗ୍ରହ କରି ବେଣୀ ଓ ନାସାମଣିକି ଥରେ ନଚାଅ ।" (ଏହାଦ୍ୱାରା ବିପରୀତ ରତି ମାଗିବାର ଜଣାଗଲା ) । ଏହା ଶୁଣି ସୀତା କହିଲେ, "ସେଠାରେ ଶ୍ରେଷ୍ଠ ନାଚୁଆମାନେ ନୃତ୍ୟ କରୁଥିଲେ, ଏଠାରେ ନାଚୁଆ ମୟୂରସବୁ ଅଛନ୍ତି"—ଏହା କହି କରୁଣ ସୀତା ନାସା ପୁଡ଼ା ଫୁଲାଇ ମୁଣ୍ଡ ହଲାଇ ଦେଇ ରହିଗଲେ । [ଏହାଦ୍ୱାରା ନାସାମଣି ଓ ବେଣୀ ଦୁହେଁ ନାଚିଲେ ]।

ବ୍ୟାଜ ପାଳନା ଏତେକ ବୋଲନ୍ତେ ଶୁଣି ମୁଗ୍ଧା ଭାବେ ଭାଷେ କିସ ।
କହୁ ଯାହା ତାହା ସୁଦେହା ସୁହେମା ଜାଣି ତ ଥିବୁ ଅବଶ୍ୟ ।
ବିମଳ ଆଦରଶ ପରି ତୋ ହୃଦ ମୋ ବାଞ୍ଛିବା ବିମ୍ବ ଥିବ ।
ବରୁଣ ଦିଗ ତରୁ ଲତା ତରୁଣୀ ଅନାଇଁ ଅନାଇଁ ଧବ । ୯ ।
ବାଞ୍ଛିଲ ସମ୍ପତ୍ତି ଦରିଦ୍ରଙ୍କେ ପରାପତ ପରି ପତି ଭଣି ।
ରଜନୀ ଉଦରେ ଶରଣ ଦାମିନୀପଣେ ତୁଣ୍ଡଥିଲି ସୁଲକ୍ଷଣି ।
ବୀଣା-କଳକଣ୍ଠ, କଣାକଣ୍ଠି ! ଗଣ୍ଠିରତ୍ନ ମନ-କୃପଣର ।
ବୈଦେହି-ନବଘନ-ଜେମା ତୁ ମୋର ପରାଣ ଯେ ପରାଣର ।୧୦।
ବନ୍ଧୁକପୁଷ୍ପଅଧରକାନ୍ତିଅଧରକେ ବନ୍ଧୁ ତୁ ମୋ ରକ୍ଷଣରେ ।
ବଣ୍ଡିକ ଉରୁ ଭୁଜା କୋହିବାଦନ ଚିହ୍ନିଲା ମୋ ଲକ୍ଷଣରେ ।

---

୯ମ ପଦ—ଆଦରଶ—ଦର୍ପଣ । ବରୁଣଦିଗ—ପଶ୍ଚିମଦିଗ । ତରଣୀ—ସୂର୍ଯ୍ୟ । ଧବ—ସ୍ୱାମୀ ।

---

୯ମ ପଦ—ଏହା ଦେଖି ରାମ କହିଲେ, "ଏ ଛଳ ପାଳନା ସିନା, [ମୁଁ ଯାହା କହିଲି—ଏ ସେପରି ନୁହେଁ]" ଏତେକ କହନ୍ତେ ତରୁଣୀ ସୀତା ପ୍ରେମ ଭାବରେ ଜାଣି ସୁଦ୍ଧା ନ ଜାଣିଲାପରି କହିଲେ, "କି କଥା ? (ତୁମ୍ଭେ ଆଉ କଣ କହୁଥିଲ କି) ?" ରାମ ଉତ୍ତର ଦେଲେ, "ହେ ସୁଦେହା ! ହେ ସୁହେମା ! ତୁ ଯାହା କହୁ ଓ କରୁ, ତାହା ତ ଅବଶ୍ୟ ଜାଣିଥିବୁ । ତୋହର ହୃଦୟ ଦର୍ପଣପରି ନିର୍ମଳ, ତେଣୁ ମୋର ମନ କଥା ସେଥିରେ ପ୍ରତିବିମ୍ବିତ ହୋଇଥିବ ନିଶ୍ଚୟ, (ତୁ ହୃଦୟରେ ମୋ କଥା ନିଶ୍ଚୟ ବୁଝିପାରିଅଛୁ) ।" ରାମଙ୍କ ଏହି କଥାରେ ତରୁଣୀ ସୀତା ପଶ୍ଚିମଦିଗ ଓ ତରୁଲତାକୁ ଅନାଇଁ ପତିଙ୍କୁ ବୋଧ କଲେ । ( ସୂର୍ଯ୍ୟ ପଶ୍ଚିମରେ ଅସ୍ତ ଗଲେ ବୃକ୍ଷରେ ଲତା ବେଷ୍ଟିତ ହେଲା ପ୍ରାୟ ମୁଁ ତୁମ୍ଭ ଅଙ୍ଗରେ ବେଷ୍ଟିତ ହେବି, ତୁମ୍ଭ କାମନା ପୂର୍ଣ୍ଣ ହେବ ।"

୧୦ମ ପଦ—ସୀତାଙ୍କ ସମ୍ମତି ପାଇବାରୁ ରାମଚନ୍ଦ୍ର ଦରିଦ୍ର ଲୋକ ବାଞ୍ଛିତ ଧନ ପ୍ରାପ୍ତ ହେଲା ପ୍ରାୟ ଆନନ୍ଦିତ ହୋଇ କହିଲେ, "ହେ ସୁଲକ୍ଷଣି ! ଦୀପ୍ତିପଣରେ ଜଳଦଠାରେ ହାରି ମାନି ବିଜୁଳି ଅନ୍ଧାରରେ ତୋ ଉଦରରେ ଶରଣ ପଶିଅଛି, ମାତ୍ର ମୁଁ ସେ କଥା ବୁଝି ଯାଇଥିଲି । ବୀଣାକଣ୍ଠି ! ହେ କୋକିଳକଣ୍ଠି ! ମୋ ମନରୂପ କୃପଣର ତୁ ଗଣ୍ଠିରତ୍ନ । ହେ ବୈଦେହି ! ତୁ ଯେ ମୋର ପ୍ରାଣର ପ୍ରାଣ ।"

୧୧ଶ ପଦ—"ହେ ବନ୍ଧୁକବିନିନ୍ଦିତ ଅଧରେ ! (ବନ୍ଧୁଲି ଫୁଲର ରଙ୍ଗମାନଙ୍କୁ ହେଳନ କରୁଛି ଯାହାର ଅଧର ) ହେ ପ୍ରିୟେ ! ମୋତେ

ବୋଇଲେ ସୁମତି ଏ ସତ ସମ୍ମତ ପୁଂସ ପ୍ରଭୁ ନାରୀ ଦାସୀ ।
ବୋଲଇ ଦେ ଯଶ କରୁଛ ମାନସ ନ ରୋଷିମ ହେଲେ ଦୋଷୀ ।
ବେଢେ ଓଢଣି ସବୁଟେ ଏତେ ଚନ୍ଦ୍ର ଉପୁଜାଇ କେତେ ଭାବ ।
ବିବାହ ଲବଣେ ବେ ଚରଣ ଛୁଏଁ ଉତ୍ତର କଲେ ରାଘବ । ୧୩ ।
ବରବର୍ଣ୍ଣିନି ଅନୁପମା ସୁଷମା ଧବଳ ଗୁଣରେ ଝଳି ।
ଶାଳ ଅଧର ହାସ ବାସ କୋମଳ ଖଣ୍ଡାଇଲେ ଗନ୍ଧଧୂଳି ।
ବଣୁର ଅଞ୍ଜନ ସିନ୍ଦୂର କର୍ପୂର କସ୍ତୁରୀ ଲବଣୀ ଅସି ।
ବୋଧନ୍ତି ତୋ ଶରୀ ଶରଦ ଲେପନ ହୋଇ ଦେ ଚାହିଁରେ ମିଶି । ୧୪ ।
ବାରିଜ ଲକ୍ଷ୍ମୀ ନିଳୟ ତୁ ଶରଣ୍ୟଲକ୍ଷ୍ମୀ ବୋଲାଉଛୁ ଯେଣୁ ।
ବଦନ ସୁଷମା ସମ ନୋହୁ ପଦତଳରେ ଶରଣ ତେଣୁ ।

---

୧୫ଶ ପଦ—ବାରିଜ—ପଦ୍ମ । ନିଳୟ—ଘର । ସୁଷମା—ଶୋଭା ।

---

୧୩ଶ ପଦ—ଏହା ଶୁଣି ବୁଦ୍ଧିମତୀ ସୀତା କହିଲେ, 'ଏହା ସବୁ ସମ୍ମତ ଅଟେ ଯେ, ପୁରୁଷ ପ୍ରଭୁ ଓ ନାରୀ ଦାସୀ । କଏ ସେବ୍ୟ ଓ କଏ ସେବକ— ଏ କଥା ମନରେ ବିଚାର କର । ମୁଁ ଦୋଷୀ ହେଲେ ମୋ ଦୋଷ ମନରେ ଧରିବ ନାହିଁ ।' ଏହା କହି ସୀତା ନାନା ରତ୍ନସ୍ୟ ଭାବ ସ୍ନେହ ଉପୁଜାଇ ଶୀଘ୍ର ଯାଇ ରାମଙ୍କ ଚରଣରେ ପ୍ରଣାମ କଲେ । (ଏହାଦ୍ୱାରା ରାମ ସେବ୍ୟ ଓ ସୀତା ସେବିକା—ଏହା ସୂଚିତ ହେଲା) । ତାହା ଦେଖି ରାମ ଉତ୍ତର କଲେ, 'ବିବାହ କାଳରେ କଏ ଚରଣ ଛୁଏଁ ? (ବିବାହ କାଳରେ ପୁରୁଷ ସ୍ତ୍ରୀର ପାଦ ଛୁଏଁ । ତେଣୁ ପୁରୁଷ ସେବକ ଓ ସ୍ତ୍ରୀ ସେବ୍ୟା ) ।

୧୪ଶ ପଦ—ରାମଚନ୍ଦ୍ର ପୁଣି ପ୍ରଶଂସା କରି କହିଲେ, 'ହେ ବରବର୍ଣ୍ଣିନି ! ତୋର ଶୋଭା ସର୍ବପ୍ରକାର ଗୁଣରେ ଝଳି ଅନୁପମ ହୋଇଅଛି । ତୋର କେଶ ବଣୁର ଅଞ୍ଜନର ଗର୍ବକୁ ଦଳି ପକାଉଛି, ତୋର ଓଷ୍ଠ ସିନ୍ଦୂର ଗର୍ବକୁ ଦଳୁଅଛି, ତୋର ହାସ କର୍ପୂରର ଗର୍ବକୁ ଦଳୁଅଛି, ତୋର ଦେହର ବାସନା କସ୍ତୁରୀ ଗନ୍ଧକୁ ଦଳୁଅଛି, ତୋର କୋମଳତା ଲବଣୀର ଗର୍ବକୁ ଦଳୁଅଛି । ତେଣୁ ବଣୁର ଅଞ୍ଜନ, ସିନ୍ଦୂର, କର୍ପୂର, କସ୍ତୁରୀ, ଲବଣୀ ଆସି ଏକ ଅନ୍ୟ ସହିତ ମିଶି ତିଳକ ଓ ଅଙ୍ଗର ଲେପନ ହୋଇ ତୋର ସେବା କରିବା ଭାବ ମନକୁ ବୋଧ କରନ୍ତି । [ଅଞ୍ଜନ ଓ ସିନ୍ଦୂର ଲବଣୀରେ ମିଶି ତିଳକ ହୁଅନ୍ତି, କସ୍ତୁରୀ ଓ କର୍ପୂର ମିଶି ଅଙ୍ଗଲେପ ହୁଅନ୍ତି ] ।"

୧୫ଶ ପଦ—"ପଦ୍ମ ଲକ୍ଷ୍ମୀଙ୍କର ବାସସ୍ଥାନ ଅଟେ । ଯେ ହେତୁରୁ ତୁ ଶୋଭାଲକ୍ଷ୍ମୀ ବୋଲାଉଛୁ, ତେଣୁ ପଦ୍ମ ତୋର ବଦନ ଶୋଭାକୁ ସମ ନ ହୋଇ

ବଚନ-ବାଣୀ ଆନ ନାରୀମାନଙ୍କେ ରମ୍ଭା ରତି ସମ କହି ।
ବଲ୍ଲଭ ନଖକୋଣ କଣ ଶୋଭାକୁ ଲଭିବା ଭାବନ୍ତି ନସହି । ୧୫ ।
ବାରାଣସୀରେ ଶମ୍ଭୁ ସେବ ଲଭିଛ ବୋଲନ୍ତି ନୁହଇ କିଛି ।
ବପୁଲଗ୍ନ ସ୍ୱୟମ୍ଭୁ ଶମ୍ଭୁ ପ୍ରଭୁ ସେ ଶୋଭା ପରେ ହୋଇଛି ।
ବୋଲନ୍ତି ତୋ ସଙ୍ଗ ମନାସି ବନାଶିଥିଲି ଅଙ୍ଗ ଗଙ୍ଗାମାରେ ।
ବକ୍ଷରେ ସ୍ୱଚ୍ଛରେ ଝଳସିବା ହାରେ ସକଳରୂପେ ସେ ହାରେ ।୧୬।
ବକ୍ରସିଂହଙ୍କୁ ଜିଣିଛୁ ଅଛୁ ନାହିଁ ଦୁର୍ବଳକଟୀ ବାଦୀରେ ।
ବସ୍ତୁତ ପ୍ରଶଂସାକୁ ପଦ ଜଳଦରେ ପାଏ ଯାହ ପ୍ରସାଦରେ ।

---

ତୋର ପଦତଳରେ ଶରଣ ପଶିଅଛି । ଅନ୍ୟ ନାରୀମାନଙ୍କୁ ପ୍ରଶଂସା କଲାବେଳେ ତାଙ୍କୁ ରମ୍ଭା ରତି ପ୍ରାୟ ବୋଲି ଉପମା ଦେଇଥାନ୍ତି । ( ଏ ନାରୀ ରମ୍ଭା ପ୍ରାୟ ସୁନ୍ଦରୀ ବା ରତି ପରି ସୁନ୍ଦରୀ ବୋଲି କହିଥାନ୍ତି ) । ହେ ବଲ୍ଲଭ ! ସେହି ରମ୍ଭା ଓ ରତି ତୁହେଁ ତୋର ନଖକୋଣର ଶୋଭାକୁ ସାମାନ୍ୟ ମାତ୍ର ଲଭିବା ପାଇଁ ଲୁବ୍ଧ ହେଉଛନ୍ତି ।"

୧୬ଶ ପଦ—'ବାରାଣସୀରେ ମହାଦେବଙ୍କୁ ସେବ ତୋତେ ଲାଭ କରିଛି,—ମୁଁ ଏହା କା କହନ୍ତି, ମାତ୍ର ତାହା ଠିକ୍ ନୁହେଁ । କାରଣ, ତୋର ସ୍ୱୟମ୍ଭୁ ଶମ୍ଭୁ ରୂପ ସ୍ତନର ଶୋଭା ସେ କାଶୀଶ୍ୱରଙ୍କ ଶୋଭା ଉପରେ ପ୍ରଭୁ ହୋଇଛି । [ସ୍ୱୟଂ କାଶୀଶ୍ୱର ତ ତୋ ସ୍ତନ ନିକଟରେ ଅଛି, ତେଣୁ ତାଙ୍କୁ ସେବ ତୋତେ ପାଇଛି—ଏ କଥା କିପରି କହିବ ? ] ତୋସଙ୍ଗ ପାଇବା ମାନସ କରି ଗଙ୍ଗା ଜଳରେ ମୋ ଦେହ ବନାଶିଥିଲି—ଏହା କା କହନ୍ତି; ମାତ୍ର ତାହା ମଧ୍ୟ ଭୁଲ । କାରଣ ତୋ ବକ୍ଷରେ ନିର୍ମଳ ଭାବରେ ଝଳସୁଥିବା ହାର ଶୀତଳ, ନିର୍ମଳ ଓ ଶୁଭ୍ର ଗୁଣରେ ଗଙ୍ଗାକୁ ହଟାଇଅଛି । [ ନିକୃଷ୍ଟକୁ ସେବା କରି ଉତ୍କୃଷ୍ଟ ବସ୍ତୁ ପ୍ରାପ୍ତ ହେବା ଅସମ୍ଭବ ] ।"

୧୭ଶ ପଦ—'ତୋହର କ୍ଷୀଣକଟୀ ବଜ୍ରକୁ କଠିନଭାବରେ ଓ ସିଂହକୁ କୃଶଭାବେ ଜିଣିଅଛି । ତେଣୁ ତା ସହିତ ବିବାଦୀ ହେବାକୁ ଆଉ କିଛି ଅଛି କି ? ଯେଉଁ କଟୀ ପ୍ରସାଦକୁ ଜଠରରେ ମନ୍ଦ ଶବ୍ଦ ମଧ୍ୟ ପ୍ରଶଂସା ପାଇଥାଏ, ଯେଉଁ କ୍ଷୀଣକଟୀ ଯୋଗୁ ଉଦରକୁ ପ୍ରଶଂସା କରି ମନ୍ଦୋଦରୀ ବା କ୍ଷୀଣୋଦରୀ କହିଥାନ୍ତି ] ତା ପ୍ରସାଦକୁ ଭଲ ଗୁଣ କା କି ପ୍ରଶଂସା ନ ପାଇବ ? ମୋଠାରେ ଦୟା ପୂର୍ବକ 'କଟାକ୍ଷପାତ କରି ମୋର କାମଜ୍ୱରରେ ବରଧହର

ବହୁ ନୃପ ତଥା ଅଙ୍ଗଦ ଗର୍ବ ଭଙ୍ଗିଥିଲୁ ଭ୍ରୂ ଭଙ୍ଗୀରେ ।
ବାମେ ଟେକ ତେଣୁ ସେ ଧନୁ ଭଙ୍ଗେଲ ମୁଁ ଧନ୍ୟ ତୋର ସଙ୍ଗରେ ।୧୭।
ବନତ ଗର୍ଭସାରଙ୍ଗୀ ଶୁଣି ଭଣି ପ୍ରୀତମତ ମନୋହାରୀ ।
ବୃନ୍ଦାଅସୁରୀ ତୁଳସୀ କରି ହରି ଶିରେ ଦେଉଳର ପରି ।
ବିଧୁ ମହେଶଙ୍କୁ ବଡ଼ ତ ନୁହଇ ସେ ମୁକୁଟ କଲ ପ୍ରାୟେ ।
ବସୁଧାପରେ ଜନ୍ୟ ଧନ । ସେରୂପେ ମୋତେ ପ୍ରଭୁ ସଦୟେ ।୧୮।
ବୋଲବୋଲି ହେଉଁ ସ୍ନେହ ବଚନ ସେ ବିଚିତ୍ର ରଜନୀ ମିଳ ।
ବିବସ୍ତ୍ର ଇଲ୍ଲ ଯେ ରମଣୀରତନେ ଯତନେ ପୁରୁଷ ବେଳ ।

---

ଗର୍ବ ଖର୍ବ କରିଥିଲୁ ( ମୁଁ ତୋର କଟାକ୍ଷପାତରେ ବନ୍ଦୀ ହୋଇ ଥିବାରୁ ହରଧନୁ ବାମ ହସ୍ତରେ ଧରି ଭାଙ୍ଗିବାକୁ କ୍ଷମ ହୋଇଥିଲି ) । ତେଣୁ ତୋ ସହାୟେ ମୁଁ ଧନ୍ୟ ହୋଇଅଛି ।"

୧୮ଶ ପଦ—ରାମଙ୍କର ଏହିପରି ବିନୟ ବଚନମାନ ଶୁଣି ଚିତ୍ତହାରିଣୀ ପ୍ରିୟା ସୀତା କହିଲେ, "ହେ ପ୍ରଭୁ, ବୃନ୍ଦାବତୀ ଅସୁରୀକୁ (ବୃନ୍ଦାବତୀ ପ୍ରଥମେ ଜଳନ୍ଧର ଅସୁରର ସ୍ତ୍ରୀ ଥିଲେ ) ତୁଳସୀ କରି ଶିରରେ ଶୋଭାପର ଏ ହୋଇଛି । (ମୁଁ ତୁମ୍ଭ ଅନୁଗ୍ରହରୁ ବଡ଼ ହୋଇ ତୁମ୍ଭ କହିବା ମୁତାବକ ଗୁଣମାନ କହୁଅଛି ) ଶିବଙ୍କଠାରୁ ଚନ୍ଦ୍ର ତ ବଡ଼ ନୁହେଁ, ସେ ଶିବ ଚନ୍ଦ୍ରଙ୍କୁ ମୁକୁଟ ପ୍ରାୟ ମସ୍ତକରେ ବହୁଅଛନ୍ତି । ସେହିପରି ମୁଁ ବସୁଧାରୁ ଜାତ ହୋଇଥିଲେ ସୁଦ୍ଧା ତୁମ୍ଭ ଯୋଗେ ଧନ୍ୟ ହୋଇଅଛି । ( ଶିବ ଦୟାପୂର୍ବକ ଚନ୍ଦ୍ରଙ୍କୁ ଶିରରେ ବହନ କରି ତାଙ୍କୁ ଧନ୍ୟ କଲ ପ୍ରାୟ ତୁମ୍ଭେ ଦୟା କରି ମୋତେ ଏପରି ଗୌରବ ଦେଇ ଧନ୍ୟ କରିଅଛ । ପ୍ରକୃତରେ ମୁଁ ଉପଯୁକ୍ତ ନୁହେଁ ) ।

୧୯ଶ ପଦ—ସେହି ରାମ ସୀତା ତୁଣ୍ଡେ ଏହିପରି ଅନୁରାଗ ମିଶା ବାଣୀ କଥାବାର୍ତ୍ତା ହେଉଁ ହେଉଁ ବିଚିତ୍ର ରାତ୍ରି ଆସି ପ୍ରବେଶିଲା । ( ରାତ୍ରି ବିଚିତ୍ର କାହିଁକି ? ) ସେ ରାତ୍ରି ରମଣୀରତ୍ନ ସୀତାଙ୍କଦ୍ୱାରା ଯତ୍ନ ପୂର୍ବକ 'ପୁରୁଷ ବେଳ' ବିପରୀତ ରତି ବିରଚନ କଲା ( ସ୍ତ୍ରୀ ପୁରୁଷର ନ୍ୟାୟ ବେଳ କରିବାରୁ ରାତ୍ରି ବିଚିତ୍ର ହେଲା ) ପୁଣି ବେଳର ମଧ୍ୟଭାଗରେ 'ବ୍ରହ୍ମଶିର' ହର ସମସ୍ତ ପ୍ରଦାନ କଲା ଅର୍ଥାତ୍ ଦିଗମ୍ବର କରାଇଲା । ଦିଗମ୍ବର ମହାଦେବ ତାଣ୍ଡବ ନୃତ୍ୟ କଲାବେଳେ ସ୍ୱର୍ଗରେ ମର୍ଦ୍ଦଳ ବାଜେ ଓ ନାରଦ ବୀଣା ବାଦନ କରନ୍ତି, ସେହିପରି ବିପରୀତ ସମୟରେ ସୀତାଙ୍କର ରସନା ( ଅଳଙ୍କାର ବିଶେଷ )

ବାଜିଲା ରସନା ବାଦ୍ୟ ମରଦଳ ମଧ୍ୟେ ବ୍ରହ୍ମଶିରୀ ବୋଲ ।
ବୀଣାନାଦ ହୁଁ ହୁଁ କୃତ ଜାତ ବଶେ ଭଣୁ ନାରଦ ଭଜିଲ ।୧୯।
ଅଚଳିତ ରମ୍ଭା ଉର୍ବଶୀ ଧିମା ଚଞ୍ଚଳ ଶେଷ ସଂଶୁଦ୍ଧ ।
ବୃନ୍ଦ ଅନ୍ତରପରେ ଚନ୍ଦ୍ର ସନ୍ତ୍ରବ ବାନ୍ଧିଲେ ହେଲେ ରସୁବ ।
ଅଭିବଶି ଅନ୍ତ ବଲେ ନିତ୍ୟକୃତ୍ୟ ଚିତ୍ରକୂଟ ଲୀଳା ଶେଷ ।
ବଂଶପଦେ ଗ୍ରନ୍ଥ ଉପେନ୍ଦ୍ର ବୀରବର ରଚିବାରେ ତୋଷ ।୨୦।

## ଏକବିଂଶ ଛାନ୍ଦ

### ରାଗ—ଦେଶାକ୍ଷ

ବିଦୂଷଣ ଗୀତ ସୁଜନେ ଶୁଣ । ବଖାଣି ଚିତ୍ରକୂଟ ଋଷିଗଣ ।
ବସ୍ତୁ କର ଶ୍ରୀରାମଙ୍କୁ ନ ଭଜି । ବହୁର ଏ ଉପ୍ତ ସ୍ୱପସ୍ତ ସେବା ।
ବନାଶେ ଅମ୍ବୁ ଧନ୍ୱୀ ପୋଷିତ । ବୋଲବୋଲ ହୋଇ ଗ୍ରନ୍ଥ ପ୍ରବଂଚ

୧ମ ପଦ—ଧନୀ—ଧନ୍ୱନ୍ତର ।

ବାଦ୍ୟ ବାଜିବାରୁ ଓ ହୁଁ ହୁଁ କୃତ ବୀଣାତାନ ଶୁଭିବାରୁ ସେ ସଭା 'ବ୍ରହ୍ମଶିରୀ' ସ୍ୱର୍ଗ ସୁଖ ଦାନ କଲା ।

୨୦ଶ ପଦ—ସ୍ୱର୍ଗରେ ରମ୍ଭା ଓ ଉର୍ବଶୀ ସ୍ୱର୍ଗବେଶ୍ୟା ହୁଅନ୍ତି । ନୃତ୍ୟକାଳରେ ଅଚଳିତ ହେବାରୁ ତାଙ୍କ ଲୁଗାର ଅଞ୍ଚଳ ଚଞ୍ଚଳ ହୋଇଥାଏ । ସେହିପରି ଏ ରାମସ୍ୱୀତ ରଙ୍ଗ କାଳରେ ରମ୍ଭୋରୁ ସୀତା ନୃତ୍ୟ କଲ ପ୍ରାୟ ଅଚଳିତ ହେବାରୁ ବସନର ଶେଷ ମଧ୍ୟ ରହିଲା ନାହିଁ । ସେ ସମୟରେ ଇଭିବ ରାମଚନ୍ଦ୍ର ଅନ୍ତଃକରଣରେ ଶମ୍ଭୁ ରୂପ ସୀତାଙ୍କ ବର୍ତ୍ତୁଳ ସ୍ତନଯୁଗଳରେ ଯେ ନଖକ୍ଷତ ବାନ୍ଧି ସନ୍ତ୍ରବ ରଖିଲେ, ତାହା ଇନ୍ଦ୍ରଙ୍କ ଉପରେ ସନ୍ତ୍ରବ ବାନ୍ଧିଲା ପ୍ରାୟ ହେଲା । ( ରତି ସୁଖ ଯେ ଇନ୍ଦ୍ରସୁଖରୁ ଉଚ୍ଚ ସ୍ତର, ତାହାର ସୂଚନା ରଖିବା ପାଇଁ ଏ ସନ୍ତ୍ରବ ବାନ୍ଧିଲେ ) । ସନ୍ଧ ଶେଷରେ ନିତ୍ୟକର୍ମମାନ ଶେଷ କଲେ । ଏଠାରେ ଚିତ୍ରକୂଟ ଲୀଳା ସମାପ୍ତ ହେଲା । ବୋଡ଼ଶ ପଦରେ ଏ ଗ୍ରନ୍ଥ ବୀରବର ଉପେନ୍ଦ୍ର ରଚନା କରି ତୋଷ ଲଭିଲେ ।

## ଏକବିଂଶ ଛାନ୍ଦ

୧ମ ଓ ୨ୟ ପଦ—ହେ ସାଧୁଜନମାନେ ! ଦୋଷଶୂନ୍ୟ ଏ ଗୀତକୁ ଶ୍ରବଣ କର । ଚିତ୍ରକୂଟ ପର୍ବତରେ ଥିବା ଅନେକ ଋଷିମାନେ ଶ୍ରୀରାମଙ୍କ ବସ୍ତୁ

ବୈଦେହୀବର ଶୁଣି ଥାଅ ସ୍ଥିତି । ବାଳୀ ଭ୍ରାତ ସେନ ଦଣ୍ଡକେ ପଶି ।
ବରଷାରେ ରସା ତେଜି ମାନସ । ବରଟା ସଖା ସଙ୍ଗେ ସେନ ହଂସ ।
ବନଜନାଳ ସମ୍ବଳ କରି । ବାଣ ଶରାସନ କେସନ ଧରି ।୨।
ବୀରାଧୁରୀର କେତେ ଦୂର ଚଳେ । ବିରାଧ ଅସୁର ଧରିଣ ଶୂଳେ ।
ବରାହ ହରିଣ ଗୁନ୍ଥିଛି ତହିଁ । ବହିବା ରକତ ନେଉଛି ଲେହ ।
ବିସ୍ତାରି ତୁଣ୍ଡ ଏମନ୍ତ ଦିଶି । ଭାନୁ କି ଦର ଯାଏ ପଶି ।୩।

---

୨ୟ ପଦ:—ରସା—ପୃଥିବୀ । ବରଟା—ହଂସୀ । ବନଜନାଳ—ପଦ୍ମନାଡ଼ । ସମ୍ବଳ—ପାଥେୟ, ବାଟଖର୍ଚ୍ଚ । ଶରାସନ—ଧନୁ ।

୩ୟ ପଦ:—ବୀରାଧୁରୀର—ବୀରଶ୍ରେଷ୍ଠ । ଲେହ—ଚାଟି । ଭାନୁ—ସୂର୍ଯ୍ୟ । ଦର—ବିବର ।

---

ବୋଲି ଉକ୍ତି ପାରିଲେ ନାହିଁ । ସେ ଭୟ ପାଇ ବିଚାର କଲେ, "ରାକ୍ଷସମାନେ ମନେ କରିବେ, ଅମ୍ଭର ବିନାଶ ପାଇଁ ଋଷିମାନେ ଆଣି ଏ ଧନୁର୍ଦ୍ଧାରୀ ଦୁଇ ବୀରଙ୍କୁ ପୋଷିଅଛନ୍ତି [ ରାକ୍ଷସମାନେ ଏହା ବିଚାରି ଅମ୍ଭଙ୍କୁ ମାରିବେ ]। ଏହିପରି ପରସ୍ପର ବୁଝାବୋଝ ହୋଇ ଚିତ୍ରକୂଟ ପର୍ବତ ଛାଡ଼ି ଯିବାକୁ ବାହାରନ୍ତେ, ବୈଦେହୀବର ରାମଚନ୍ଦ୍ର ତାହା ଜାଣିପାରି କହିଲେ, "ତୁମ୍ଭେ ଥାଅ ( ଚିତ୍ରକୂଟ ଛାଡ଼ି ତୁମ୍ଭେ ଯାଅ ନାହିଁ ।)" ତତ୍ପରେ ସୀତା ଓ ଭାଇ ଲକ୍ଷ୍ମଣଙ୍କୁ ସଙ୍ଗରେ ନେଇ ଚିତ୍ରକୂଟ ଛାଡ଼ି ଯାଇ ଦଣ୍ଡକାରଣ୍ୟରେ ପ୍ରବେଶ କଲେ । ଯେପରି ବର୍ଷାକାଳରେ ହଂସ ଓ ହଂସୀ ପୃଥିବୀକୁ ଛାଡ଼ି ସାଙ୍ଗ ସାଥୀମାନଙ୍କୁ ସଙ୍ଗରେ ଧରି ପଦ୍ମନାଡ଼କୁ ପାଥେୟ ସ୍ୱରୂପ ନେଇ ମାନସରୋବରରେ ପଶେ, ସେହିପରି ରାମ ଓ ସୀତା ଚିତ୍ରକୂଟ ତ୍ୟାଗ କରି ଲକ୍ଷ୍ମଣଙ୍କୁ ସାଙ୍ଗରେ ନେଇ ଧନୁର୍ବାଣକୁ ସମ୍ବଳ କରି ଦଣ୍ଡକାରଣ୍ୟରେ ପହଞ୍ଚିଲେ । ( ପଥରେ କାଳ ଦେଇ ସବୁ ବିପଦରୁ ରକ୍ଷା କରିବ ବୋଲି ଧନୁର୍ବାଣ ସମ୍ବଳ ହୋଇଅଛି )।

୩ୟ ପଦ—ବୀରଶ୍ରେଷ୍ଠ ରାମଚନ୍ଦ୍ର ସେଠାରୁ କିଛି ଦୂର ଚଳନ୍ତେ ଦେଖିଲେ, ବିରାଧ ନାମକ ରାକ୍ଷସ ଗୋଟାଏ ଶୂଳ ଧରି ଆସୁଅଛି । ସେ ଶୂଳରେ ସେ ରାକ୍ଷସ ବରାହ ମୃଗ ପ୍ରଭୃତି ପଶୁମାନଙ୍କୁ ଗୁନ୍ଥିଛି ଓ ପଶୁମାନଙ୍କଠାରୁ ବୋହି ପଡ଼ୁଥିବା ରକ୍ତକୁ ଚାଟି ପକାଉଛି । ସେ ରାକ୍ଷସ ପାଟି ବିସ୍ତାରି କଲାବେଳେ ମୁହଁରେ ସୂର୍ଯ୍ୟ ବିବରେ ପଶିଲେ ପ୍ରାୟ ଦେଖାଯାଉଛି ।

କଣ୍ଠରେ ପଳାଶ ରୁଧିର ସଙ୍ଗ । ଜବଣ୍ଟିଲା ପୁଷ୍ପ ସମ୍ବନ୍ଧେ ସଙ୍ଗ ।
ବାହୁ ଶାଖାରେ ହୋଇଛନ୍ତି ଧୀରିତ । ବିଗଳିତ ଝାଳ ମଧୁ ସଂଜାତ ।
ବୁଲାଇ ତୋଳା ଦେଉଛନ୍ତି ଗୃହି । ଜନଶପ ଭୃଙ୍ଗ ଚକ୍ରଗତି କହି । ୪ ।
ଜଟେଜଳ ସେହି ତିନିଜଣଙ୍କୁ । ଜଗ୍ଧିଉମାନ ଅଣିଲ ମନକୁ ।
ବେଳାତୀରେ ଚମ୍ପା ତମାଳ ତରୁ । ବକଚପୁଷ୍ପେ ତେଜ ଗନ୍ଧେ ଜେ ଗୁରୁ ।
ବହୁଛନ୍ତି ମଧ୍ୟେ ଲାବଣ୍ୟ ସର । ବାରିଜ କୁମୁଦ କହ୍ଲାରେ ସାର ।୫।

---

୪ର୍ଥ ପଦ:—ପଲଶ—ରାକ୍ଷସ, ପଲାଶଗଛ । ଭୃଙ୍ଗ—ଭ୍ରମର ।
୫ମ ପଦ:—ବକଚ—ପ୍ରସ୍ଫୁଟିତ । ସର—ଜଳ । ବାରିଜ—ପଦ୍ମ । କହ୍ଲାର—ଶ୍ୱେତପଦ୍ମ ।

---

୪ର୍ଥ ପଦ— ସେ ରାକ୍ଷସ ପ୍ରକୃତରେ ଗୋଟାଏ ପଲାଶ ବୃକ୍ଷପରି ହୋଇ ଅଛି । ତା ଦେହରେ ଲାଗିଥିବା ରକ୍ତବିନ୍ଦୁସବୁ ପଲାଶ ବୃକ୍ଷରେ ଫୁଲ ଫୁଟିଲା ପ୍ରାୟ ଦେଖା ଯାଉଅଛି । ତାହାର ବାହୁଦ୍ୱୟ ଡାଳରୂପେ ଶୋଭା ପାଉଅଛି ଓ ଦେହରୁ ବହୁଥିବା ଝାଳ ମଧୁ ପରି ବୋଧ ହେଉଅଛି । ସେ ରାକ୍ଷସ ତୋଳା ବୁଲାଇ ଗର୍ଜ୍ଜି ଦେଉଥିଲେ, ଭ୍ରମର ଚକ୍ରାକାର ଗତିକଲା ପରି ଜଣା ଯାଉଅଛି । [ ରାକ୍ଷସ ରୂପ ପଲାଶ ବୃକ୍ଷର ରକ୍ତ ବିନ୍ଦୁ ରୂପ ପୁଷ୍ପରୁ ସ୍ରବୁଥିବା ଝାଳ ରୂପ ମଧୁ ପାନ ନିମନ୍ତେ ତୋଳା ରୂପ ଭ୍ରମର ଚକ୍ରାକାରରେ ଭ୍ରମୁ ଅଛି କି ? ]

୫ମ ପଦ—ସେ ବିରାଧ ରାକ୍ଷସ ରାମ, ଲକ୍ଷ୍ମଣ ଓ ସୀତା, ଏ ତିନିଜଣଙ୍କୁ ଦେଖି ମନରେ ବିଚାର କଲା, ଏକ ପାର୍ଶ୍ୱରେ ପ୍ରସ୍ଫୁଟିତ ପୁଷ୍ପ ଶୋଭିତ ଚମ୍ପା ବୃକ୍ଷ ଓ ଅନ୍ୟ ପାର୍ଶ୍ୱରେ ମନୋହର ପତ୍ର ଶୋଭିତ ତମାଳ ବୃକ୍ଷ ବିରାଜୁ ଅଛି ଏବଂ ମଧ୍ୟ ଭାଗରେ ମନୋରମ ଜଳପ୍ରବାହ ବହୁଅଛି । ସେହି ମନୋରମ ଜଳ ପ୍ରବାହ ଫୁଟିଥିବା ପଦ୍ମ, ନାଳ କଇଁ ଓ କହ୍ଲାର ପୁଷ୍ପ ଯୋଗେ ଶ୍ରେଷ୍ଠତ୍ୱ ଲାଭ କରୁଅଛି । (ଏଠାରେ ରାମଚନ୍ଦ୍ର, ମନୋହର ତମାଳ ବୃକ୍ଷ ଓ ଲକ୍ଷ୍ମଣ ପୁଷ୍ପିତ ଚମ୍ପକ ବୃକ୍ଷ ରୂପେ କଳ୍ପିତ ହୋଇଅଛନ୍ତି । ଦୁହେଁ ଦୁଇ ପଟରେ ଓ ସୀତା ମଧ୍ୟରେ ଥିବାରୁ ସୀତା ବୃକ୍ଷ ଶୋଭିତ ଦୁଇ ତଟର ମଧ୍ୟରେ ଥିବା ଲାବଣ୍ୟ ଜଳପ୍ରବାହ ରୂପେ ଗତ କରୁଅଛନ୍ତି । ଜଳପ୍ରବାହରେ ପଦ୍ମ ଫୁଟିଲା ପରି ସୀତାଙ୍କର ମୁଖପଦ୍ମ ମନୋହର, ନୀଳୋତ୍ପଳ ପ୍ରାୟ ସୀତାଙ୍କ ନୟନଯୁଗଳେ ତଳତଳ ଓ କହ୍ଲାର ଦନ୍ତ ପଙ୍କ୍ତି ସବୁ ଶୁଭ୍ର ହୋଇଅଛି ) ।

ବାତେ ଚଳନ୍ତ ଯଥା ନୀଳୋତ୍ପଳ । ନାଳ ଭୃଙ୍ଗାଳିରେ କି ମନୋହର ।
ବିହାର କରୁଛନ୍ତି ମତ୍ତମରାଳୀ । ବୃତ ଶୈବାଳେ କମଳକଳି ।
କଲ୍ଲୋଳ ଘନରସ ପୂରିତ । ବିତର୍କ ସର୍ବ ଶ୍ଳେଷ ଏତେ ମାତ୍ର ।୬।
ଚଙ୍କ୍ରମି କରୁଁ ନିକଟକୁ ଗତ । ବିଗ୍ରହବନ୍ତ ଦରଶନେ ଚିନ୍ତ ।
ହରକ ନେତ୍ରେ କାମ ଜଳିଗଲା । ବୃଷ୍ଟିସୁଧା ଇନ୍ଦୁ ଅସ୍ଥିରେ କଲା ।
ବସନ୍ତ ସଙ୍ଗୀ ରତି ସ୍ୱରୂପ । ବଂଶ ଲୌହ ପୁଷ୍ପ କମାଣ ଲୋପ ।୭।
ବ୍ରହ୍ମାଣ୍ଡେ ଏକ ସୁନ୍ଦରୀ ଏ ରତି । ବିନା ଏତେ ଶୋଭା କେଉଁ ଯୁବତୀ ।
ବେଳେ ନେଇଥିଲା ଶମ୍ବରପୁରୀ । ବିଧାତେ ଜାଣି କି କରିଛନ୍ତି ଚୋରି ।
ନିବେଦକ ଏହି ଚୋରି ପ୍ରମାଣ । ତନେ ପଣେ ଘେନି ଜଙ୍ଘାଧାରଣ ।

---

୬ଷ୍ଠ ପଦ—ନାଳ—ଲତିକା । ଭୃଙ୍ଗାଳି—ଭ୍ରମରସମୂହ । ମରାଳୀ—ହଂସୀ । କଲ୍ଲୋଳ—ଚଞ୍ଚଳ । ଘନରସ—ବହୁଜଳ, ଶୃଙ୍ଗାରରସ ।

୭ମ ପଦ—ବିଗ୍ରହବନ୍ତ—ଦେହବନ୍ତ । ହରକ—ମହାଦେବ । ପୁଷ୍ପକମାଣ—ଫୁଲଧନୁ ।

---

୬ଷ୍ଠ ପଦ—ପବନ ଯୋଗରେ ନୀଳୋତ୍ପଳ ଦୋହଲିଲା ପ୍ରାୟ ସୀତାଙ୍କର ନୟନଯୁଗଳ ଢଳ ଢଳ ହେଉଅଛି । ତାହାଙ୍କର ବାହୁଯୁଗଳ ଲତିକା ସଦୃଶ ଆନ୍ଦୋଳିତ ହେଉଅଛି ଓ ପଦ୍ମ ଉପରେ ଭ୍ରମରସବୁ ବସି ଶୋଭା ପାଇଲାପରି ସୀତାଙ୍କ ମୁଖପଦ୍ମ ଉପରେ ଥିବା କୁଞ୍ଚିତ କୁନ୍ତଳ ସବୁ ଦେଖାଯାଉଅଛି । ତାହାଙ୍କର ଗତି ମତ୍ତହଂସୀର ଗମନ ତୁଲ୍ୟ ହୋଇଅଛି । ପଦ୍ମକଳି ତୁଲ୍ୟ ସ୍ତନ ଦ୍ୱୟ ଶୈବାଳ ରୂପ ବସ୍ତ୍ରଦ୍ୱାରା ଆଚ୍ଛାଦିତ ହୋଇ ସୁନ୍ଦର ଦେଖାଯାଉଅଛି । ଚଞ୍ଚଳ ତଡ଼ାଗ ଜଳରେ ପୂର୍ଣ୍ଣ ହେଲାପ୍ରାୟ ସୀତା ନିବିଡ଼ ଶୃଙ୍ଗାରରସରେ ପୂର୍ଣ୍ଣ ହୋଇଅଛନ୍ତି । ବିରାଧ ରାକ୍ଷସ ତାଙ୍କୁ ଦେଖି ଏହିମତ ଶ୍ଳେଷଭାବରେ ମନରେ ବିଚାର କଲା ।

୭ମ ପଦ—ତତ୍ପରେ ସେ ରାକ୍ଷସ ପାଦ ନିକ୍ଷେପ କରି ତାଙ୍କ ନିକଟକୁ ଗଲା ଓ ଦେହଧାରୀ ଜନ ମୂର୍ତ୍ତିଙ୍କୁ ଦେଖି ମନରେ ଚିନ୍ତା କଲା, “ଶଙ୍କରଙ୍କ ନେତ୍ରପାତ ଯୋଗେ କନ୍ଦର୍ପ ଜଳି ଯାଇଥିଲା । ତାହାର ଅସ୍ଥିରେ ଇନ୍ଦୁ ଅମୃତ ବୃଷ୍ଟି କରିବାରୁ ବୋଧହୁଏ ସେ କନ୍ଦର୍ପ ନିଜ ରୂପକୁ ଧରି ତାହାର ସଖା ବସନ୍ତକୁ ଓ ସ୍ତ୍ରୀ ରତିକୁ ସଙ୍ଗରେ ଘେନି ଅଛି । ପୁଣି ସେ କୁସୁମଧନୁ ଓ ଫୁଲଶର ଛାଡ଼ି ବାଉଁଶଧନୁ ଓ ଲୁହା ଶରକୁ ଧରିଅଛି ।”

୮ମ ପଦ—“ଏ ସ୍ତ୍ରୀ ବ୍ରହ୍ମାଣ୍ଡମଧ୍ୟରେ ଏକମାତ୍ର ସୁନ୍ଦରୀ ରତିଦେବୀ । ତାହା ବିନା ଏତେ ସୁନ୍ଦରୀ ଅଉ କେଉଁ ସ୍ତ୍ରୀ କା ହେବ ? ବଳାତ୍କାରରେ

ବେନି ପୁରୁଷ ଅସ୍ଥି ସହ ଭକ୍ଷି । ବର୍ଷୁ ଇନ୍ଦ୍ରବି ଅଗସ୍ତି ସୁମରି ।
ଅଜୀର୍ଣ୍ଣ ହେବାର ଜୀର୍ଣ୍ଣ କରିଦେବି । ବୃଷ୍ଟି ସୁଧା ପିଇ ଅମର ହେବି ।
ବନିତାମଣି ସ୍ଥିର ଯୌବନୀ । ବିପିନେ ବିହରିବି ଏହା ଘେନି ।୯।
ବାସାଙ୍ଗେ ଜିଣେ ପାରିଜାତକୁ । ବୋଲିବି ଯୋଜନଗନ୍ଧା ଏହାକୁ ।
ବିଲୋପ କରିଦେବି ରତିନାମ । ବାଦେ ଜିଣିବାକୁ କେ ମୋତେ କ୍ଷମ ।
ବିଚାରି ରାମ ଲକ୍ଷ୍ମଣ ଧରି । ବନ୍ଧି ବେନିସ୍କନ୍ଧେ ଗମନ କରି ।୧୦।
ବତାସ ବୃକ୍ଷ ଉତ୍ପାଟି ଉଡ଼ାଇ । ବଲ୍ଲରୀ ଯଥା ପ୍ରଦର୍ଶ ଦେଇ ।
ବର୍ତ୍ତମାନ ଏହି ଇଷ୍ଟ ସେଠାରେ । ବାରି ପୁଣ ସୀତା ନୟନୁ ଝରେ ।
ବମନ ମୋତିପନ୍ତି କି କରେ । ବିନିମିଷୁଁ ଝଷ ଉପମା ଧରେ ।୧୧।

---

୧୦ମ ପଦ—ବାସାଙ୍ଗେ—ଦେହ ସୌରଭରେ ।

୧୧ଶ ପଦ—ବଲ୍ଲରୀ—ଲତା । ବମନ—ତ୍ୟାଗ । ବିନିମିଷୁଁ—ପଲକ ନ ପଡ଼ିବାରୁ ।

---

ଶମ୍ବରାସୁର ଏହାକୁ ନିଜ ପୁରମଧ୍ୟକୁ ନେଇଥିଲା । ଏ କନ୍ଦର୍ପ ତା ସହିତ ବିବାଦ କରି କିମ୍ବା ଚୋରାଇ ସୁନ୍ଦରୀକୁ ଆଣିଅଛି । ଏ ଯେତେବେଳେ ଜଟା ଧାରଣ କରି ବନ ମଧ୍ୟରେ ଲୁଚି ବୁଲୁଅଛି, ସେଥିରୁ ମନେହେଉଛି ଯେ, ଏ ନିଶ୍ଚୟ ଚୋରି କରି ଆଣିଅଛି । ( ଯୁଦ୍ଧରେ ଜୟ କରି ଆଣିଥିଲେ ବନରେ ଲୁଚି ଲୁଚି ବୁଲନ୍ତା କାହିଁକି ) ?"

୯ମ ପଦ—"ଏ ଦୁଇ ପୁରୁଷଙ୍କୁ ମାରି ହାଡ଼ ସହିତ ଖାଇବି ଓ ଅଜୀର୍ଣ୍ଣ ହେଲେ ଅଗସ୍ତି ମୁନିଙ୍କୁ ସ୍ମରଣା କରି ଜୀର୍ଣ୍ଣ କରିଦେବି । ପୂର୍ବେ ବୃଷ୍ଟି ହୋଇଥିବା ଅମୃତ ( କନ୍ଦର୍ପର ଅସ୍ଥିରେ ଇନ୍ଦ୍ର ଅମୃତ ବୃଷ୍ଟି କରିବାରୁ ଏ ପୁରୁଷ ଜୀବନ ପାଇଅଛି, ସେହି ଅସ୍ଥିରେ ପଡ଼ିଥିବା ଅମୃତ) ପାନ କରି ମୁଁ ଅମର ହେବି ଓ ଏହି ଚିରଯୌବନା ସ୍ତ୍ରୀରତ୍ନକୁ ନେଇ ବନରେ ବିହାର କରିବି ।"

୧୦ମ ପଦ—"ଏ ସ୍ତ୍ରୀର ଅଙ୍ଗସୌରଭ ପାରିଜାତ ପୁଷ୍ପର ସୌରଭକୁ ଜିଣିଅଛି, ତେଣୁ ଏହାକୁ ଯୋଜନଗନ୍ଧା କହି ଡାକିବି । ଏହାର ରତି ନାମକୁ ଲୁଚାଇଦେବି । ମୋତେ ବିବାଦରେ ଜିଣିବାକୁ ସମର୍ଥ କିଏ ଅଛି ? ( ମୋତେ ବିବାଦରେ କେହି ଜିଣି ପାରିବେ ନାହିଁ )।" ଏହାପରେ ବିଚାର କରି ସେ ରାମ ଲକ୍ଷ୍ମଣ ଦୁହିଁଙ୍କି ଦୁଇ କାନ୍ଧରେ ବସାଇ ନେଇଗଲା ।

୧୧ଶ ପଦ—ପ୍ରବଳ ପବନ ବୃକ୍ଷକୁ ଉପାଡ଼ି ଉଡ଼ାଇ ନେଲାବେଳେ ବୃକ୍ଷର ଅଶ୍ଳିଷ୍ଟ ଲତାକୁ ପ୍ରଦର୍ଶିତ କରିବା ଉପମା ଏଠାରେ ବର୍ତ୍ତମାନ ହେଲା ।

ବିଶଦ ହୋଇ ବିଶଦ ଦେହରୁ | ରହିଲା ତୃଣାଙ୍କୁର ଯେଣୁ ମେରୁ |
ବାର ପଛେ ଯଥା ହଂସୀଗୋଡ଼ାଇ | ବଧିରେ ଯଥା ମାଗଧ ବନ୍ଦଇ |
ବିକଳ ଶୁଣି ସୋଦର ଦୁଇ | ଢାଳ ଧରି ହୋଇ ଲୋଟାଇ ମହୀ |୧୨
ବିଲୋମ ଲୋମ ଗତାଗତ ବଣେ | ବିରୋଧ ବଧ ଖ୍ୟାତ ଶୀତକୋଣେ
ବିମାନେ ସ୍ୱର୍ଗ ସୁତ ଦିବ୍ୟରୂପେ | ବନ୍ଦନା କଲେ ବିବୁଧକଳାପେ |
ବୈଦେହୀ ମହାସନ୍ତୋଷ ହେଲେ | ବୃକ୍ଷକ ମୂଳେ ସେଦିନ ରହିଲେ |୧୩

---

୧୨ଶ ପଦ—ବାର—ଘୋଡ଼ା | ମାଗଧ—ଭାଟ |

---

( ସେ ରାକ୍ଷସ ରାମଲକ୍ଷ୍ମଣଙ୍କୁ କାନ୍ଧରେ ବହି ଉଡ଼ାଇ ନେଉଥିବାରୁ ସୀତା ଭୟରେ କମ୍ପିବାକୁ ଲାଗିଲେ ) | ପୁଣି ସୀତାଙ୍କ ନିର୍ନିମେଷ ନେତ୍ରରୁ ଲୁହ ବାହାରୁଥିଲା | ତା ଦେଖି ମନେହୁଏ ମୀନ ମୋତିପନ୍ତି ବମନ କରୁଛି କି ?

୧୨ଶ ପଦ:—ଯେଣୁ ତୃଣାଙ୍କୁର ସଦୃଶ ବିରାଧ ରାକ୍ଷସ ମେରୁ ପର୍ବତ ତୁଲ୍ୟ ରାମ ଲକ୍ଷ୍ମଣଙ୍କୁ ବନ୍ଧନ କରି ବିଶଦ ଘଟଣା ଘଟାଇ ଦେଲା, ସେହି ହେତୁରୁ ମୀନ ମୋତି ବମନ କରିବା ରୂପ ବିଶଦ ଦୃଶ୍ୟ ଦେଖାଗଲା | ତତ୍ପରେ ସୀତା ଘୋଟକ ପଛରେ ହଂସୀ ଗୋଡ଼ାଇଲା ପ୍ରାୟ ରାକ୍ଷସ ପଛରେ ଗୋଡ଼ାଇଲେ ଓ ବଧିର ଆଗରେ ଭାଟ ସ୍ତୁତିପାଠ କଲା ପରି ରାକ୍ଷସକୁ ବହୁତ ଅନୁନୟ ବିନୟ କଲେ | ( ଯେପରି ସ୍ତୁତି ପାଠ କଲେ ସୁଦ୍ଧା ବଧିର ଯେପରି ନ ଶୁଣେ, ରାକ୍ଷସ ସେହିପରି ସୀତାଙ୍କ ଅନୁନୟ ବିନୟ ଶୁଣିଲା ନାହିଁ ) | ରାମ ଲକ୍ଷ୍ମଣ ଦୁଇ ଭାଇ ସୀତାଙ୍କ ବିକଳ କ୍ରନ୍ଦନ ଶୁଣି ରାକ୍ଷସର କେଶ ଧରି କାନ୍ଧରୁ ଡେଇଁ ପଡ଼ି ତାକୁ ଭୂମିରେ ଗଡ଼ାଇ ଦେଲେ |

୧୩ଶ ପଦ:—ସେ ଦୁଇଭାଇ ବିରାଧକୁ ଏଣିକି ତେଣିକି ଲୋଟରା ଲୋଟରି କରିବା ଦ୍ୱାରା ସେ ବଧ ହେଲା | ସେଠାରେ କ୍ରୋଶକ ପର୍ଯ୍ୟନ୍ତ ଖାଲ ହୋଇ ଯିବାରୁ ତାହା ବିରାଧ ଖାତ ନାମରେ ପ୍ରସିଦ୍ଧି ପାଇଲା | ରାକ୍ଷସ ଦିବ୍ୟରୂପ ଧରି ବିମାନରେ ବସି ରାମ ଲକ୍ଷ୍ମଣଙ୍କୁ ସ୍ତୁତି କରି ସ୍ୱର୍ଗପୁରକୁ ଗଲା | ଅନନ୍ତର ଦେବତାମାନେ ରାମ ଲକ୍ଷ୍ମଣଙ୍କୁ ବନ୍ଦନା କଲେ | ବିରାଧର ମୃତ୍ୟୁରେ ବୈଦେହୀ ଆନନ୍ଦିତା ହେଲେ | ସେ ଦିନ ଗୋଟିଏ ବୃକ୍ଷ ମୂଳରେ ସେ ତିନିଜଣ ରହିଲେ |

ବଧୂରେ ପୂର୍ବରୁ ହରି ହରିଣୀ । ବଖ୍ୟାତେ ସେହି ଲକ୍ଷ୍ମଣଙ୍କୁ ଅଣି ।
ବନେ ସବୁଦିନେ ସିନା ଶୟନ । ବନେ ହରିଲେ ଦିନ ନୋହି ଦୀନ
ବର୍ଣ୍ଣରେ ଖ୍ୟାତ ସୁବର୍ଣ୍ଣରୂପେ । ବନ୍ଦେ ଗତିବଶେ ଦ୍ୱିଜତପୁଷ୍ପେ ।୧୪।
ବଳାନ୍ତ ସହିତେ ଅତି ରଞ୍ଜନ । ବାୟୁସଖାରେ ହୁଅଇ ପୂଜନ ।
ବାଜଇ ସୀତାର ନୂପୁର ଘଣ୍ଟି । ବଶେ ମୃଗବର୍ଗ ପାଶେ ପ୍ରକଟି ।
ବଗତ ଭୟ ଦେଖି ସ୍ତବକତ । ବର୍ଜ୍ଜି ଭକ୍ତନେ ଗଢ଼ିଲ ବତ ।୧୫।

●

---

୧୪ଶ ପଦ—ହରି—ନାରାୟଣ, ସିଂହ । ହରିଣୀ—ସିଂହୀ, ଲକ୍ଷ୍ମୀ । ବନେ—ଜଳରେ, ଅରଣ୍ୟରେ । ଦ୍ୱିଜେ—ବ୍ରାହ୍ମଣମାନେ, ପକ୍ଷିସମୂହ ।

୧୫ଶ ପଦ—ବାୟୁସଖା—ଅଗ୍ନି ।

---

୧୪ଶ ପଦ—ରାମ ଓ ସୀତା ପୂର୍ବଜନ୍ମରେ 'ହରି ହରିଣୀ' ନାରାୟଣ ଲକ୍ଷ୍ମୀଙ୍କ ପରି ( ଲକ୍ଷ୍ମୀ ନାରାୟଣ ନିର୍ଭୟରେ ସମୁଦ୍ର ଜଳରେ ଅନନ୍ତ ଶୟନ କଲା ପରି) ନିର୍ଭୟରେ ସେହି ଲକ୍ଷ୍ମଣଙ୍କୁ ବହିଲେ ଅର୍ଥାତ୍ 'ହରି ହରିଣୀ' ସିଂହ ସିଂହୀ ନିର୍ଭୟରେ ବନରେ ଭ୍ରମଣ କଲା ପ୍ରାୟ ରାମ ସୀତା ନିର୍ଭୀକ ଚିତ୍ତରେ ସେ ବନରେ ବିହାର କଲେ । ପୂର୍ବେ ସବୁଦିନେ ସିନା ଜଳରେ ଶୟନ କରୁଥିଲେ, ଏବେ ବନରେ ଦୁଃଖ ଅନୁଭବ ନ କରି ମଧ୍ୟ ଦିନ କଟାଇଲେ । ସଂସାରରେ ସୁବର୍ଣ୍ଣମୟୀ ପ୍ରତିମାକୁ ବ୍ରାହ୍ମଣମାନେ ଗତି ମୁକ୍ତି ପାଇବାପାଇଁ ପୁଷ୍ପ ପ୍ରଦାନ କରି ପୂଜା କରିଥାନ୍ତି । ସେହିପରି ହଂସପକ୍ଷୀମାନେ ମନ୍ଦଗମନ ହେତୁ ସ୍ୱର୍ଣ୍ଣ ପ୍ରତିମା ସୀତାଙ୍କୁ ପୂଜା କରୁଅଛନ୍ତି । ଅନ୍ୟାର୍ଥ—ସୀତା ଗମନ ହେତୁ ପାଦ ପକାଇଲା ବେଳେ ହଂସମାନେ ଓ ପଦ୍ମପୁଷ୍ପମାନେ ସେ ଗମନକୁ ଓ ପାଦକୁ ସମାନ ନ ହେବାରୁ ବନ୍ଦନା କରୁଅଛନ୍ତି ।

୧୫ଶ ପଦ—ରାମ ଲକ୍ଷ୍ମଣଙ୍କର ତେଜ ଅତି ଉଜ୍ଜ୍ୱଳ ହୋଇଥିବାରୁ ଅଗ୍ନି ଦ୍ୱାରା ପୂଜିତ ହୁଏ । ( ଅଗ୍ନିଠାରୁ ଅଧିକ ତେଜ ହେବାରୁ ଅଗ୍ନି ପୂଜା କରେ ) । ସୀତାଙ୍କର ନୂପୁର ଘଣ୍ଟି ପ୍ରାୟ ଶବ୍ଦ କରେ । ରାମ ଲକ୍ଷ୍ମଣଙ୍କ ତେଜ ରୂପ ଅଗ୍ନି ଦେଖି ଓ ସୀତାଙ୍କ ନୂପୁର ଘଣ୍ଟି ଶବ୍ଦ ଶୁଣି ମୃଗମାନେ ବଶ ହୋଇ ଅସ ନିର୍ଭୟ ଚିତ୍ତରେ ପାଖରେ ମିଳିଲେ ଓ ରାମ ପ୍ରଭୁଙ୍କୁ ଦେଖି ବଢ଼ାଇ ନିମିତ୍ତ ବାସ୍ତ ଚିତ୍ରିତା ପ୍ରାୟ ସ୍ଥିର ଭାବରେ ଠିଆ ହେଲେ ।

ବକୁଳ ଅଶୋକ କଦମ୍ବ ଶ୍ରେଣି । ଲଭିଲି କୁସୁମ ଗନ୍ଧ ତହିଁ ।
ରାମା ବାମପାଦ ଲାଗି ଗମନେ । ବିଚିତ୍ରାଶେଷ ପାନର ପତନେ ।
ଲକ୍ଷୋଉଁ ପଥେ ଦୋଳ ରଚନେ । ବହୁ ସଖୀ କାମସ୍ନେହ ଚୁମ୍ବନେ ।୧୬
ଭଳସେ ଅଳିଅଳି ଭାଳନନେ । ବୋଧ ନିଦାଳପୁଲ ମଧୁପାନେ ।
ବାଞ୍ଛାକଳ୍ପତରୁ ବାଞ୍ଛବା ନିଷ୍ଠେ । ବିବିଧ ଫଳଗର୍ଭ ଦାନ ସଙ୍ଗେ ।
ବେଳରେ ମଧୁସୂଦନ ସେହୁ । ବସନ୍ତ ଭାଳକୁ ବିନୋଦ ବହୁ ।୧୭
ବିଖ୍ୟାତ ଅନନ୍ତ ଶକ୍ତିମାନ । ଅନାଶନରେ ଅନୁଜ ସୁମନ ।
ଇନ୍ଦ୍ରବଯୋଗୀ ଦୀକ୍ଷାରୁ କରି । ବାସର ନିଶା ନିଦ ନିଦ ହରି ।
ବସୁଧା ନ ଭଲେ ପିଶାଚୀଶ୍ରୀକ । ହୋଇନ୍ତ ଯେଣୁ ପଙ୍କତ ପାବନ ।୧୮

---

୧୭ଶ ପଦ :—ଅଳିଅଳି—ଭ୍ରମରସମୂହ । ମଧୁସୂଦନ—ମଧୁଦୈତ୍ୟହନ୍ତା ବା ରାମଚନ୍ଦ୍ର, ମଧୁଲିହ୍ ବା ଭ୍ରମର ।

୧୮ଶ ପଦ :—ଅନାଶନରେ—ଅନାହାରରେ । ଅନୁଜ—ସାନଭାଇ । ବସୁଧା—ପୃଥିବୀ ।

---

୧୬ଶ ପଦ :—ସୀତାଙ୍କର ଗମନ ସମୟରେ ତାଙ୍କର ବାମପାଦ ଲାଗି ଅଶୋକ ବୃକ୍ଷରେ, ଚର୍ବଣ ଶେଷ ପାନର ପତନରେ ବକୁଳ ଗଛରେ ପଥ ମଧ୍ୟରେ ଯାଉଁ ଯାଉଁ ଚଢିବା ମାନସରେ ଦୋଳି କରିବା ହେତୁ କଦମ୍ବ ଗଛରେ ସହଚରୀ ଦୋଳି କରି ସ୍ନେହରେ ଚୁମ୍ବନ ଦେବା ଦ୍ୱାରା ଅଁଳା ଗଛରେ ଫୁଲ ଫୁଟି ସୁଗନ୍ଧ ଚହଟି ଗଲା । ( ଏହା ଦ୍ୱାରା ଦୋହଦ ଲକ୍ଷଣ ସୂଚିତ ହେଲା ) ।

୧୭ଶ ପଦ:—ଏ ସମୟରେ ବକୁଳାଦି ବୃକ୍ଷମାନେ ପୁଷ୍ପିତ ହୁଅନ୍ତେ ଭ୍ରମରମାନେ ସେ ବନରେ ଲଳସିଲେ । ନିଦାଳ ଫୁଲ ଅର୍ଥାତ୍ ବର୍ଷା, ବସନ୍ତ ଓ ହେମନ୍ତ ଋତୁର ଫୁଲସବୁ ଏକ ସମୟରେ ଫୁଟିବାରୁ ସେମାନେ ମଧୁପାନ କରି ତୃପ୍ତ ହେଲେ । ଲୋକମାନଙ୍କୁ ବାଞ୍ଛିତ ଫଳ ପ୍ରଦାନ କରି ବାଞ୍ଛାକଳ୍ପତରୁ ହୋଇଥିବା ମଧୁଦୈତ୍ୟହନ୍ତା ରାମଚନ୍ଦ୍ର ଭ୍ରମର ପ୍ରାୟ ନିଦାଳପୁଷ୍ପୋପମା ସୀତାଙ୍କ ସହିତ ବିହାର କରି ନିଦାଘ କଟାଇଲେ ।

୧୮ଶ ପଦ :—ପ୍ରସିଦ୍ଧ ଓ ଅପରିମିତ ଶକ୍ତିମନ୍ତ ଅନୁଜ ଲକ୍ଷ୍ମଣ ଅଭୋଜନରେ ବିନିଦ୍ର ରହି ସୁଦ୍ଧା ଆନନ୍ଦ ମନରେ ଦିନ ଓ ରାତି କଟାଇଲେ । ସେ ଯେଣୁ ପଂକ୍ତିର ପବିତ୍ରକାରକ ଆଖ୍ୟା ପାଇଛନ୍ତି, ତେଣୁ 'ପିଶାଚ' ରାକ୍ଷସମାନଙ୍କୁ ନାଶ କରି ସ୍ୱର୍ଗଗତ ଦେବା ଦ୍ୱାରା ପବିତ୍ର କଲେ ।

ବାସତୀର୍ଥସ୍ଥ ତୀରରେ ଯେଣୁ । ବୁଲିଲେ ତୀର୍ଥମାନଙ୍କରେ ତେଣୁ ।
ବାଳା ସ୍ନେହ ସରସ୍ୱତୀକି ପାଳି । ବହନ ସରସ୍ୱତୀରେ ସେ ମିଳି ।
ବାଶିଷ୍ଠୀ ବାସୀସୁବାସୀ ସଙ୍ଗେ । ବଧୌତବବସ୍ତ୍ର ବାବେଶ୍ୱ ଭଙ୍ଗେ ।୧୯
ବହିର ନର୍ମଦା ସେନ ନର୍ମଦା । ବାହୁଦା ପ୍ଳବନେ କାନ୍ତ ବାହୁଦା ।
ବୁଡି ହଂସପରି ହଂସଜାନୀରେ । ବାରେ ଗମନ ପ୍ରସ୍ଥିର ରେବାତରେ ।
ବଚଶୀ ବାଣୀ-ସନ୍ନିଧେ ସ୍ନାୟୀ । ବିନ୍ଧ କନ୍ୟାରେ କନ୍ୟା ସେନପାଇ
ବେତ୍ରବତୀ ଗତ ଯୁବତୀ ତୋଷେ । ବ୍ରାହ୍ମୀ ଚଞ୍ଚଳ-କଲ୍ଲୋଳରେ ଘଷି ।
ବେଣୀଶୋଭା ନେଇ କୃଷ୍ଣ ବେଣୀକି । ନିକ୍ଷେପି ପାଣିରେ ଶିରେ ପାଣିକି ।
ବେଗରେ ଗମ୍ୟା ପ୍ରୟାଣ କରି । ବିକଶିତା ପୁଷ୍ପେ ସୀତା ମଞ୍ଜରୀ ।୨୧

---

୧୯ଶ ପଦ—ତୀର୍ଥସ୍ଥ—ସମୁଦ୍ର । ସରସ୍ୱତୀ—ବାଣୀ ବା ବଚନ । ବାଶିଷ୍ଠୀ—ଗୋମତୀ ନଦୀ । ବାସୀସୁବାସୀ—ସୌରଭ ମୟୀ । ବବସ୍ତ୍ର—ଶୋଭା । ଭଙ୍ଗେ—ତରଙ୍ଗରେ ।

୨୦ଶ ପଦ—ନର୍ମଦା—ଲୀଳାଦାୟିନୀ । ହଂସଜା—ଯମୁନା । ବିନ୍ଧ୍ୟକନ୍ୟା—ମହାନଦୀ ।

୨୧ଶ ପଦ—ପାଣିରେ—ହସ୍ତରେ । ପ୍ରୟାଣ—ଗମନ । ମଞ୍ଜରୀ—ଲତା ।

---

୧୯ଶ ପଦ—ଯେଉଁ ରାମଚନ୍ଦ୍ର ବର୍ତ୍ତମାନ ସମୁଦ୍ର ତୀରରେ ବାସ କରୁଅଛନ୍ତି (ଶ୍ରୀକ୍ଷେତ୍ରରେ ଦାରୁବ୍ରହ୍ମ ରୂପେ ଅବସ୍ଥାନ କରି ଶ୍ରୀକ୍ଷେତ୍ରକୁ ମହାନ ତୀର୍ଥ କରିଅଛନ୍ତି ) ସେହି ରାମଚନ୍ଦ୍ର ସେତେବେଳେ ନାନାତୀର୍ଥରେ ଭ୍ରମଣ କଲେ । ପ୍ରିୟା ସୀତାର ସ୍ନେହପୂର୍ଣ୍ଣ ବାଣୀକୁ ପାଳନ କରି ଶୀଘ୍ର ସରସ୍ୱତୀ ନଦୀ ତୀରରେ ମିଳିଲେ । ତତ୍ପରେ ସୌରଭମୟୀ ଓ ସୁବସନ ପରିହିତା ସୀତା ରାମଙ୍କ ସଙ୍ଗରେ ଯାଇ ବାବେଶ୍ୱ ନଦୀର ତରଙ୍ଗ ଭଙ୍ଗରେ 'ବବସ୍ତ୍ର' ଦେଖିକି ଯାଚିତ କଲେ ।

୨୦ଶ ପଦ—'ନର୍ମଦା' ଲୀଳାଦାୟିନୀ ସୀତାଙ୍କୁ ସଙ୍ଗରେ ନେଇ ରାମଚନ୍ଦ୍ର ନର୍ମଦା ନଦୀରେ କ୍ରୀଡ଼ା କଲେ । ବାହୁଦା ନଦୀ ପାର ହେଲା ବେଳେ ସୀତା ରାମଚନ୍ଦ୍ରଙ୍କୁ ବାହୁ ଦାନ କଲେ (ଅର୍ଥାତ୍ ରାମ ସୀତାଙ୍କ ବାହୁ ଧରି ନଦୀ ପହଁରି ନେଲେ ) । ଯମୁନା ଜଳରେ ହଂସ ହଂସୀପରି ବୁଡି ରେବାନଦୀକୁ ସ୍ନାନ ଯାଇଁ ଗମନ କଲେ । ବାଣୀକ୍ଷେତ୍ର ସମୀପବର୍ତ୍ତୀ ଗଙ୍ଗା ନଦୀରେ ସ୍ନାନ କରି ବିନ୍ଧ୍ୟକନ୍ୟା ମହାନଦୀକୁ ସୀତା ସହ ଗମନ କଲେ ।

୨୧ ପଦ—ତତ୍ପରେ ବେତ୍ରବତୀ ନଦୀକୁ ଯାଇ ଯୁବତୀ ସୀତାଙ୍କୁ ତୋଷ ପ୍ରଦାନ କଲେ । ବ୍ରାହ୍ମୀ ନଦୀର ଚଞ୍ଚଳ ଲହରୀଯୁକ୍ତ ଜଳରେ ( ଅର୍ଥାତ୍

ଦକ୍ଷିଣ ଫଲ୍‌ଗୁରେ ଫଲ୍‌ଗୁଧାମରେ । ବାଲିଗୋଟ ପିଣ୍ଡେ ଗୋଟ ଉଛାରେ
ନିସ୍ତାରି କରି ଦଶରଥ ତରୁ । ଅବଧି ରୁ ଶାପରେ ବାରି ତା ବାରୁ ।
ତାହାର ହାରଶୋଭିନୀ ଘେନି । ଅଗ୍ରେ କରନ୍ତି ବିପ୍ରଳାପ ଦ୍ୱିଜ ।୨୨।
ବର ବେଶ ଏକ ବରବରଣୀ । ଦୁଷ୍ଟ ଏ ଦୁଷ୍ଟପୀ ପଳାନ୍ତି ଘେନି ।
ବଜ୍ର ପଡ଼ୁ ଯାଉ ମସ୍ତକ ଫାଟି । ବଜ୍ର ଆଦି ବସ୍ତୁ କରିବା ଲୁଟି ।
ବାମାକ୍ଷୀ ବାମା ବସନାଞ୍ଚଳ । ବଳେ ଧରୁଁ ଧରଣୀଜା ଆକୁଳ ।୨୩

---

୨୨ଶ ପଦ—ଧାମରେ—ଅପାର କାମନାରେ ବା କୌତୁକରେ । ବାଲିଗୋଟ—ବାଲିସୃଷ୍ଟି ।

୨୩ଶ ପଦ—ବଜ୍ର—ହୀର । ବସନାଞ୍ଚଳ—ଲୁଗାପଣତ । ଧରଣୀଜା—ସୀତା ।

---

ଖରସ୍ରୋତା ବ୍ରାହ୍ମୀ ନଦୀର ଜଳରେ ) ପଶି ସ୍ନାନ କଲେ । ବେଣୀଶେଷ୍ଠ ସୀତାଙ୍କୁ କୃଷ୍ଣବେଣୀ ନଦୀକୁ ନେଇ ତାହା ଜଳକୁ ହସ୍ତରେ ଧରି ମସ୍ତକରେ ଛୁଇଁ ହେଲେ । ସେଠାରୁ ଶୀଘ୍ର ଗୟା ତୀର୍ଥକୁ ଗଲେ । ସେଠାରେ ଲଙ୍କା ପୁଷ୍ପିତା ହୋଇ ପ୍ରାୟ ସୀତା ପୁଷ୍ପବତୀ ହେଲେ ।

୨୨ଶ ପଦ—ତାହା ପରେ ସୀତା ଫଲ୍‌ଗୁ ନଦୀରେ ବସି ଖେଳ କୌତୁକରେ ବାଲି ସବୁକୁ ପିଣ୍ଡ କରି ଗୋଟି ଉଛାରଣ ପୂର୍ବକ ପ୍ରଦାନ କରନ୍ତେ, ଦଶରଥ ହସ୍ତ ବଢ଼ାଇ ପିଣ୍ଡ ନେଲେ ଓ ମୋକ୍ଷ ହୋଇଗଲେ । (ତତ୍‌ପରେ ରାମ ଆସି ପିଣ୍ଡ ଦେଲାବେଳେ ଦଶରଥ ପିଣ୍ଡ ନେଲେ ନାହିଁ । ରାମଚନ୍ଦ୍ର ଫଲ୍‌ଗୁନଦୀକୁ ଏହାର କାରଣ ପଚାରନ୍ତେ ନଦୀ କିଛି ଉତ୍ତର ନ ଦେବାରୁ ) ରାମଚନ୍ଦ୍ର ଅଭିଶାପ ଦ୍ୱାରା ତା ଜଳକୁ ନିବାରଣ କଲେ । ( ତୁ ନିର୍ଜଳା ହୋଇଯିବୁ କହିବାରୁ ନଦୀର ଜଳ ଶୁଷ୍କ ହୋଇଗଲା ) । ପୁନର୍ବାର ଫଲ୍‌ଗୁ ବିନୟ ପ୍ରକାଶ କରନ୍ତେ ବର ଦେଲେ,—'ତୋ ବାଲିକୁ ଅପାରଣ କଲେ ଜଳ ଦେଖାଯିବ ।' ସେଠାରୁ ହାରଶୋଭିଣୀ ସୀତାଙ୍କୁ ନେଇ ବାହାର ହୋଇ ଯିବାବେଳେ ତୀର୍ଥର ପୂଜକ ବ୍ରାହ୍ମଣମାନେ ବିରୋଧ ବଚନ ପ୍ରକାଶ କରି କହିଲେ—

୨୩ଶ ପଦ—ଗୋଟିଏ ବରବର୍ଣ୍ଣିନୀ ସ୍ତ୍ରୀ ସହିତ ଦୁଇଗୋଟି ପୁରୁଷ ଯାଉଛନ୍ତି, ଜଣା ଯାଏ ଦୁଷ୍ଟପୁରୁଷ ଦୁହେଁ ଦୁଷ୍ଟପୀ ସ୍ତ୍ରୀ କୁ ଘେନି ପଳାଇ ଯାଉଛନ୍ତି । ବଜ୍ର ପଡ଼ି ଏମାନଙ୍କର ମସ୍ତକ ଫାଟିଗଲେ, ଏ ସ୍ତ୍ରୀ ପାଖରେ ଥିବା ହୀର ଆଦି ବସ୍ତୁ ସବୁ ଆମେ ଲୁଟିକରି ନେଉନ୍ତେ ।" ଏହା କହି ସେ ବ୍ରାହ୍ମଣମାନେ ବାମଲୋଚନା ସୀତାଙ୍କ ଲୁଗା ପଣତ ବଳେ ଧରି ଟାଣିବାରୁ ସୀତା ଆକୁଳ ହେଲେ ।

କୋଳନ୍ତି କହି ଦଣ୍ଡଧର ପାଶେ । କହାଇ ଦଣ୍ଡ ବନ୍ଧାଇବା ଆଶେ, ।
କଟୁଛେଦ ସମ ସମା ବସ୍ତ୍ର ଖଡ଼ଗେ । ବେଗ ବେଗ ଯାଇ ଗୋଡ଼ାଇ ସଙ୍ଗେ
ବସାଇଁ ଗୃପେ ତୀକ୍ଷ୍ଣମାର୍ଗଣେ । ବୀର ଲକ୍ଷ୍ମଣ ପଳାନ୍ତି ମାର୍ଗଣେ ।୧୪
ବ୍ୟାକୁଳ କନାଶେ ନବୀନାମଣି । କମ୍ରାଙ୍ଗ ଚନ୍ଦ୍ରଭାଗାଳତା ପୁଣି ।
କପଟେ ଚନ୍ଦ୍ରଭାଗାରେ ସଞ୍ଚରି । ବାଲୁକାରେ ଶିବ ଶିବଦ କରି ।
କହ୍ମୀକ ଋଷିଙ୍କା ଋଷିବାଟେର । ବିନୋଦ ଋଷିବାଟକୁଲ୍ୟାତୀରେ ॥
ବହୁ ଭକ୍ତବସଦ ଇକ୍ଷ୍ୱାକୁରେ । ଭକ୍ତ ଅଛନ୍ତି ସଦା ଇକ୍ଷ୍ୱାକୁରେ ।
ବହନ୍ତେ ପଥ ପଦ୍ମିମଠେ ମିଳେ । ବିଧୁ ହେଲ ଯାହା ଲୋଚନମଳେ ।
ବାଞ୍ଛିଲେ ସୁକଲ୍ୟାଣ ସୁଦୟା । କହିଲେ ସୀତା ଦେଖି ଅନସୂୟା ॥

---

୨୪ଶ ପଦ—ଦଣ୍ଡଧର—ରାଜା । ଗୃପ—ଧନୁ । ତୀକ୍ଷ୍ଣମାର୍ଗଣେ—ତୀକ୍ଷ୍ଣ ଶରଦ୍ୱାରା ।

୨୫ଶ ପଦ—ନବୀନାମଣି—କାମିନୀଶ୍ରେଷ୍ଠା, ( ସୀତା ) । କମ୍ରାଙ୍ଗ—ଶୋଭମାନ । ଚନ୍ଦ୍ରଭାଗାଳତା—ଅର୍ଦ୍ଧଚନ୍ଦ୍ର ସଦୃଶ । ଶିବଦ—ମଙ୍ଗଳପ୍ରଦ । ଋଷିଜ—ଋଷିକନ୍ୟା ।

୨୬ଶ ପଦ—ଇକ୍ଷ୍ୱାକୁରେ—ସୂର୍ଯ୍ୟବଂଶରେ । ଇକ୍ଷ୍ୱାକୁରେ—ଇକ୍ଷୁଭୂମିରେ ।

---

୨୪ଶ ପଦ—ବ୍ରାହ୍ମଣମାନେ ସୀତାଙ୍କ ପଶନ୍ତ ଟାଣି କହିଲେ, "ରାଜା ଆଗରେ କହି ତୁମ୍ଭଙ୍କୁ ଦଣ୍ଡ କରାଇ ଦଉଡ଼ିରେ ବନ୍ଧାଇବୁ ।" ବ୍ରାହ୍ମଣମାନଙ୍କର ଏ ଆଚରଣ ଦେଖି ରାମଚନ୍ଦ୍ର ଛିଣ୍ଡିବାର ବସ୍ତ୍ର ଖଡ଼୍ଗରେ କାଟି ତରତରରେ ସେଠାରୁ ଚାଲିଗଲେ, ବିପ୍ରମାନେ ତାଙ୍କ ପଛରେ ଗୋଡ଼ାଇଲେ । ବୀର ଲକ୍ଷ୍ମଣ ଧନୁରେ ତୀକ୍ଷ୍ଣ ଶରକୁ ବସାଇ ଲକ୍ଷ୍ୟ କରନ୍ତେ, ଯାଚକ ବିପ୍ରମାନେ ଭୟରେ ପଳାଇଗଲେ ।

୨୫ଶ ପଦ—ବ୍ରାହ୍ମଣମାନେ ପଳାଇଯିବାରୁ ସୀତାଙ୍କର ବ୍ୟାକୁଳତା ଦୂର ହେଲା । ଅନନ୍ତର ରାମଚନ୍ଦ୍ର ଅର୍ଦ୍ଧଚନ୍ଦ୍ର ପରି ଶୋଭମାନ ଲଲାଟ ଯାହାର ଏପରି ଯେ ସୀତା, ତାଙ୍କୁ ସଙ୍ଗରେ ନେଇ କପଟରେ ଯାଇ ଚନ୍ଦ୍ରଭାଗା ନଦୀ ତଟରେ ପ୍ରବେଶ ହେଲେ । ମଙ୍ଗଳ କାମନା ପାଇଁ ସେଠାରେ ବାଲୁକାରେ ଶିବ ମୂର୍ତ୍ତି ବସାଇ ପୂଜା କଲେ । ତତ୍ପରେ ବୋଷ ବାଲ୍ମୀକି ଋଷିକନ୍ୟା ସୀତାଙ୍କ ସହ ଋଷିକୁଲ୍ୟା ନଦୀତଟକୁ ଯାଇ ରାମଚନ୍ଦ୍ର ସେଠାରେ କେଳି କଲେ ।

୨୬ଶ ପଦ—ଇକ୍ଷ୍ୱାକୁ ବଂଶର ପ୍ରଭୁ ରାମଚନ୍ଦ୍ର 'ଇକ୍ଷ୍ୱାକୁରେ' ଇକ୍ଷୁ ଭୂମିରେ ଭକ୍ତର ମୂର୍ତ୍ତି ଦେଖି ତାଙ୍କୁ ପୂଜା କରି, ପଥରେ ଯାଉ ଯାଉ ଯାହାଙ୍କ

ଅଚ୍ଛୋଦ୍ଭ ଅମ୍ଳାନଶାଢ଼ୀ ସୁଶୋଭ । ଅଦ୍ଭୁତପ୍ରଭା ଦୂର କରେ ପ୍ରଭ ।
ବୋଇଲେ ଯତନେ ତ ଉଜଳ ନାହିଁ । ବହ୍ନିରେ ଧୌତ ଯେବେ ମ୍ଳାନ ହୋଇ
ବୈଦେହୀ ଚିତ୍ତ ହରଷେ ସାନ୍ଦ୍ର । ବଡ଼ ଆନନ୍ଦ ଶୁଣି ରାମଚନ୍ଦ୍ର ।୨୭।
ବିହରୁ ବିହରୁ ଦଣ୍ଡକାରଣ୍ୟେ । ବୃନ୍ଦ ବୃନ୍ଦ ଋଷି ଦେଖି ସୁପୁଣ୍ୟେ ।
ଅଦେହ କୋଟି ଏକଦେହ ବହି । ବୋଇନ୍ତାଇ ଏ ଲକ୍ଷ କହୁ ନୋହି
ଘନଦ-ଶ୍ୟାମ କାନ୍ତି ଏ ଥିଲ । କରିଲ ଏ ରମା କି ତପ ବଳ ।୨୮।
ବିଧାତା ଅମ୍ଭଙ୍କୁ କରନ୍ତା ନାରୀ । ବର ହୁଅନ୍ତେ ଏ କୋଦଣ୍ଡଧାରୀ ।
ବ୍ରହ୍ମପଦବୀ ପାଇ ହେବ କସ । ବହିବା କି ଚିର କାମିନୀବେଶ ?
ଅଗ୍ରଜ ପୁଲକିତ ଶରୀରେ । ବେପଥୁ ଜନ୍ମି ଅନୁଜ ବୃକ୍ଷରେ ।୨୯।

---

୨୮ଶ ପଦ:—ଅଦେହ କୋଟି—କୋଟି-କନ୍ଦର୍ପ । ଘନଦଶ୍ୟାମ—ଘନଶ୍ୟାମ ।

୨୯ଶ ପଦ:—ବେପଥୁ—କମ୍ପନ ।

---

ନେଇ ମଳକୁ ଚନ୍ଦ୍ର ଜନ୍ମ ହୋଇଥିଲେ, ସେହି ଅତ୍ରି ଋଷିଙ୍କ ପଠରେ ପ୍ରବେଶ ହେଲେ । ସେ ଋଷି ଦୟା ସହିତ କଲ୍ୟାଣ ବାଞ୍ଛିଲେ । (ରାମ ଲକ୍ଷ୍ମଣ ନମସ୍କାର କରିବାରୁ ଋଷି କଲ୍ୟାଣ କଲେ) । ଅତ୍ରି ଋଷିଙ୍କ ପତ୍ନୀ ଅନସୂୟାଙ୍କୁ ଦେଖି ସୀତା ତାଙ୍କର ପାଦ ବନ୍ଦନା କଲେ [ ନମସ୍କାର କହିଲେ ] ।

୨୭ଶ ପଦ—ସେ ଅନସୂୟା ସୀତାଙ୍କୁ ଖୁବ୍ ସୁନ୍ଦର ଓ ଅଦ୍ଭୁତ୍ପ୍ରଭା ଜନ୍ଦ ସ୍ୱାପ୍ର ମାନ୍ ଅମ୍ଳାନ ଶାଢ଼ୀଟି ଦେଇ କହିଲେ, "ବନରେ ତ ଧୋବା ନାହାନ୍ତି । ଯେବେ ଏହା ମଇଳା ହେବ, ତେବେ ଏହାକୁ ଅଗ୍ନିରେ ଧୌତ କରିନେବ । ( ଅମ୍ଳାନ ବସ୍ତ୍ର ଅଗ୍ନିରେ ଧୌତ ହେଲେ, ତାହାର ମଳିନତା ଦୂରହୁଏ ଓ ଶୋଭା ବଢ଼େ ) । ଏହା ଶୁଣି ସୀତାଙ୍କ ମନ ହର୍ଷପୂର୍ଣ୍ଣ ହେଲା ଓ ରାମଚନ୍ଦ୍ର ଆନନ୍ଦିତ ହେଲେ ।

୨୮ଶ ପଦ—ରାମ, ଲକ୍ଷ୍ମଣ ଓ ସୀତା ଏହିପରି ଦଣ୍ଡକାରଣ୍ୟରେ ବୁଲି ବୁଲି ଅସଂଖ୍ୟ ଋଷି ଉତ୍ତମ ପୁଣ୍ୟଫଳରେ ତାଙ୍କୁ ଦର୍ଶନ କରି ମନରେ ବିଚାରିଲେ, 'କୋଟିଏ କନ୍ଦର୍ପ କୋଟିଏ ଦେହ ବହିଅଛନ୍ତି, ଏ ଲକ୍ଷ୍ୟ ଏହାଙ୍କୁ ହେଲେ ସୁଦ୍ଧା ସମାନ ହେବ ନାହିଁ । [କୋଟି କନ୍ଦର୍ପଙ୍କ ଶୋଭା ମଧ୍ୟ ଏ ଶୋଭାଠାରୁ ନ୍ୟୂନ ହେବ] ଏ ଘନଶ୍ୟାମ ମୂର୍ତ୍ତି କେଉଁଠାରେ ଥିଲେ ? ପୂର୍ବେ କି ତପ କରିଥିବାରୁ ଏ ସ୍ତ୍ରୀ ତାଙ୍କୁ ପତିରୂପେ ବରଣ କଲେ ?'

୨୯ଶ ପଦ—'ଯଦି ବିଧାତା ଅମ୍ଭମାନଙ୍କୁ ନାରୀ କରିଥାନ୍ତେ ଓ ଏହି କୋଦଣ୍ଡଧାରୀ ଅମର ବର ହୋଇଥାନ୍ତେ, ତେବେ ବ୍ରହ୍ମପଦବୀରେ ଅମର

ବିଭ୍ରମ ଉପୁଜିଗଲା ମାନସ । ବୋଇଲେ ସଖୀଙ୍କୁ ସଖି ଗୋ ଆସ ।
ବହୁବା ତୁମ୍ବୀକ ଉରରେ ରଖି । ବକ୍ଷୋରୁହ ହେଲା ଭାବରେ ସୁଖୀ ।
ବେଣୀ ଏ ସ୍ତବ ଜଟା ଲମ୍ବାଇ । ବିବିଧ କୁସୁମ ମଣ୍ଡିଲେ ନେଇ ।୩୦।
ବହୁଥିଲେ ଯେ ଅଦ୍ଭୁତ ପଂକ୍ତିର । ବିସ୍ମୋରିଲେ ସ୍ୱାହା ଆଦ୍ୟ ଅକ୍ଷର ।
ବନେ ଗୃହିଁ ତା ପୁନଃ ପୁନଃ କହୁ । ବିଚେଷ୍ଟା ତାଙ୍କର ସବୁ ଗୃହିଁ ।
ବୈଦେହୀ ଲକ୍ଷ୍ମଣଙ୍କ ଅନ୍ତର । ବାଞ୍ଛା ବରଦାନେ ଉଚନ ଗିର ।୩୧।
ବଲ୍ଲବୀ ତୁମ୍ଭେ ହୋଇବ ଦ୍ୱାପରେ । ବ୍ରଜେ ରହିବୁଁ ଅମ୍ଭେ କଂସ ଭୟେ
ବୃନ୍ଦାବନରେ ହେବ ରାସକେଳି । ବଲ୍ଲଭୀ ଏକା ଏ ଦେହେ ମୈଥିଳୀ ।
ବହିବୁଁ ଗୋପୀନାଥ ନାମକୁ । ବୋଲେ ଉପେନ୍ଦ୍ର ବେଧୁଗଲେ ତାଙ୍କୁ ।୩୨

୩୨ଶ ପଦ—ବଲ୍ଲବୀ—ଗୋପାଙ୍ଗନା । ବଲ୍ଲଭୀ—ପତ୍ନୀ ।

ଦରକାର କଣ ? ଏବେ ଅମେ କିପରି ନାରୀ ବେଶ ଧାରଣ କରିବା ?' ଏହା ବିଚାରନ୍ତେ ତାଙ୍କ ଶରୀର ରୋମାଞ୍ଚିତ ହେଲା । ସେପରି ଅନ୍ୟ ଭାବମାନ ଜନ୍ମିବାରୁ ସେମାନେ କୃଷ୍ଣଙ୍କୁ ଅଭଙ୍କ ଠିଆ ହେଲେ ।

୩୦ଶ ପଦ—ତାଙ୍କ ମନରେ ଭ୍ରମ ଜାତ ହେବାରୁ ସେମାନେ ସଖୀଙ୍କୁ 'ଗୋ ସଖି ଆସ' ଏହା କହିଲେ । ତାଙ୍କ ହାତରେ ଥିବା ଲାଉ ତୁମ୍ବୀକୁ ଛାତିରେ ରଖି ଏ ଆମ୍ଭର ସ୍ତନ ବୋଲି ଭାବି ସୁଖୀ ହେଲେ । ନିଜ ନିଜର ଜଟା ଫିଟେଇ ପକାଇ ତେଇ 'ଏ ଆମର ବେଣୀ' ଏପରି ଭାବି ତହିଁରେ ନାନାପ୍ରକାର ଫୁଲ ମଣ୍ଡିଲେ ।

୩୧ଶ ପଦ—ଯେଉଁ ଋଷିମାନେ ପଂକ୍ତିରେ ଅଦ୍ଭୁତ ଦେଉଥିଲେ, ସେମାନେ ସ୍ୱାହାର ଆଦ୍ୟ ଅକ୍ଷର ଅର୍ଥାତ୍ ସ୍ୱା ଭୁଲିଯାଇ କେବଳ ହା ହା ବାରମ୍ବାର କହି ରାମଚନ୍ଦ୍ରଙ୍କୁ ବନ୍ଧୁକରେ ଗୁହଁଲେ । ତାଙ୍କର ଏପରି ଚରିତ୍ର ଭାବମାନ ଦେଖି ରାଘବ ସୀତା ଓ ଲକ୍ଷ୍ମଣଙ୍କଠାରୁ ଅନ୍ତର ହୋଇ ଯାଇ ସେମାନଙ୍କୁ ମନ ଇଚ୍ଛା ବର ପ୍ରାପ୍ତି ହେବାପାଇଁ ଏହି ବାକ୍ୟ କହିଲେ;—

୩୨ଶ ପଦ—"ହେ ମୁନିମାନେ ! ଦ୍ୱାପର ଯୁଗରେ ତୁମ୍ଭେମାନେ ଗୋପୀ ହେବ । ମୁଁ କୃଷ୍ଣ ରୂପେ ଜାତ ହୋଇ କଂସ ଭୟରେ ବ୍ରଜପୁରରେ ରହିବି । ବୃନ୍ଦାବନରେ ତୁମ୍ଭର ଓ ମୋର ରାସକେଳି ହେବ । ତେଣୁ ମୁଁ ଗୋପୀନାଥ ନାମକୁ ବହିବି । ଏ ଅବତାରରେ ସୀତା ଏକମାତ୍ର ମୋର ପତ୍ନୀ ।" ଉପେନ୍ଦ୍ର କହେ, ରାମଚନ୍ଦ୍ର ଏହିପରି ଋଷିମାନଙ୍କୁ ବୋଧ ଦେଇ ଗଲେ ।

# ଦ୍ୱାବିଂଶ ଛାନ୍ଦ

## ଭାଗବତ ବୃତ୍ତେ

ବାତାପି ସୂଦନ ଆଶ୍ରମ । ବିପିନେ ପ୍ରବେଶ ଶ୍ରୀରାମ ।୧।
ବକସ୍ଥ ହଂସା ଚଞ୍ଚୁ ହତ । ବକସ୍ଥ ସନ୍ନିଧି କପୋତ ।୨।
ବାୟସ କଉଶିକ ମେଳ । ବସି ଅଛନ୍ତି ଏକ ଡାଳ ।୩।
ବ୍ୟାଳ ଫଣାକୁ ଟେକି ଖେଳ । ବରହୀ ପାଶେ ନୃତ୍ୟଶାଳୀ ।୪।
ବାରଣ ସିଂହ ଏକ ସ୍ଥାନ । ବିରଚି ଅଛନ୍ତି ଶୟନ ।୫।
ବ୍ୟାଘ୍ର କୁରଙ୍ଗ ରଙ୍ଗ ବହୁ । ବୃକାଳି ମିଳୁଛନ୍ତି କହୁଁ ।୬।
ବତ୍ସା ଧେନୁଙ୍କ ମହୀପିର । ବିଡ଼ାଳୀଠେ ପାନ କରେ କ୍ଷୀର ।୭।

---

୩ୟ ପଦ—ବାୟସ—କାକ । କଉଶିକ—ପେଚା ।
୪ର୍ଥ ପଦ—ବର୍ହୀ—ମୟୂର । ବ୍ୟାଳ—ସର୍ପ ।
୫ମ ପଦ—ବାରଣ—ହସ୍ତୀ ।
୬ଷ୍ଠ ପଦ—କୁରଙ୍ଗ—ହରିଣ । ବୃକାଳୀ—ବଣଆ କୁକୁରସମୂହ ।

---

## ଦ୍ୱାବିଂଶ ଛାନ୍ଦ

୧ମ ପଦ—ଅନନ୍ତର ଶ୍ରୀରାମ 'ବାତାପିସୂଦନ' ଅଗସ୍ତ୍ୟଋଷିଙ୍କ ଆଶ୍ରମବନରେ ପ୍ରବେଶ କଲେ । ( ଅଗସ୍ତ୍ୟଋଷି ବାତାପି ନାମକ ଅସୁରକୁ ଖାଇ ଜୀର୍ଣ୍ଣ କରି ଦେଇଥିଲେ ) ।

୨ୟ ପଦ—ସେ ବନରେ ଶତ୍ରୁ ଭୟ ହଂସାଙ୍କର ନାହିଁ । ତେଣୁ ସଞ୍ଚାଣପକ୍ଷୀ ପାଖରେ କପୋତ ରହିଅଛି ।

୩ୟ ପଦ—କାକ ଓ ପେଚା ଏକାଠି ଗୋଟିଏ ଡାଳରେ ବସିଅଛନ୍ତି ।

୪ର୍ଥ ପଦ—ସର୍ପ ଫଣାକୁ ଟେକି ଖେଳୁଅଛି ଓ ମୟୂର ତାହା ପାଖରେ ନୃତ୍ୟ କରିବାରେ ରତ ହୋଇଅଛି ।

୫ମ ପଦ—ହସ୍ତୀ ଓ ସିଂହ ଏକସ୍ଥାନରେ ଶୟନ କରିଅଛନ୍ତି ।

୬ଷ୍ଠ ପଦ—ବ୍ୟାଘ୍ର ଓ ମୃଗ ମିଶି କ୍ରୀଡ଼ା କରୁଥିଲେ ବଣଆକୁକୁର ଆସି ତାଙ୍କ ସହିତ ମିଳିତ ହେଉଅଛି ।

୭ମ ପଦ—ଗାଈମାନଙ୍କର ଛୁଆ ସବୁ ଅର୍ଥାତ୍ ବାଛୁରୀମାନେ ନିର୍ଭୟରେ ମାର୍ଜାରୀଠାରୁ ଦୁଧ ଖାଉଅଛନ୍ତି ।

ବକ ପାଶରେ ଜଳସାଟେ । ବଣାରକୁଳକୁ ଚଳଟେ ।୮।
ବ୍ରାହ୍ମଣ ତପୋବଳ ସାର୍ଥ । ବିସ୍ମୟ ଭଲେ ରଘୁନାଥ ।୯।
ବଲୋକ ସୀତା ଋଷିଶିଷେ । ବିତର୍କି ଏମନ୍ତ ମାନସେ ।୧୦।
ବୃଦ୍ଧଶ୍ରବାରେ କୋପୀ ପର । ବନେ ଅପ୍ସୁଲ ଗୃହ୍ମଧାସ ।୧୧।
ବୋଧିଛନ୍ତି ଗୋଡ଼ାଇ ସଙ୍ଗେ । ବିଦ୍ୟାଧର ଯୁଗଳ ରଙ୍ଗେ ।୧୨।
ବୋଧ ନ ଦେଲୁ କି ଅଦମ୍ଭା । ବଲେ ଜାନୁକେ ଯେଉଁ ରମ୍ଭା ।୧୩।
ବନଜପାଦେ ଦେଇ ଦେଖା । ବିନତ ଧର ଚିତ୍ରରେଖା ।୧୪।

---

୮ମ ପଦ—ବଣାରକୁଳ—ବଣାରକୁଳ—ମୀନ ସମୂହ ।
୧୦ମ ପଦ—ବୃଦ୍ଧଶ୍ରବା—ଇନ୍ଦ୍ର । ଗୃହ୍ମଧାସ—ଶଚୀ ।
୧୩ଶ ପଦ—ଅଦମ୍ଭା—ଅଧୈର୍ଯ୍ୟ ।
୧୪ଶ ପଦ—ବନଜପାଦେ—ପଦ୍ମପାଦରେ । ଚିତ୍ରରେଖା—ଅଳତା ରେଖା ।

---

୮ମ ପଦ—ଜଳସାଟରେ ବକ ପାଖରେ ମତ୍ସ୍ୟମାନେ ଉଲଟି ପାଲଟି ଖେଳା କରୁଅଛନ୍ତି ।

୯ମ ପଦ—ଏହା ଦେଖି ରଘୁନାଥ ବିସ୍ମୟ ଭଲେ, 'ଅଗସ୍ତ୍ୟ ଋଷିଙ୍କ ତପୋବଳ ସାର୍ଥକ ଅଟେ ।'

୧୦ମ ପଦ—ଅଗସ୍ତ୍ୟଙ୍କ ଶିଷ୍ୟମାନେ ସୀତାଙ୍କୁ ଦେଖି ମନରେ ବିସ୍ମୟ ଭଲେ—

୧୧ଶ ପଦ—'ଇନ୍ଦ୍ରଙ୍କଠାରେ କୋପ କରି ଶଚୀ ବନକୁ ଆଇଲା କି ?'

୧୨ଶ ପଦ—'ଦୁଇଟି ବିଦ୍ୟାଧର ସଙ୍ଗରେ ଗୋଡ଼ାଇ ନାନା ରଙ୍ଗରେ ବୋଧ ଦେଉଅଛନ୍ତି ।'

୧୩ଶ ପଦ—'ଶଚୀ ବୁଝି ଗୃହ ଯାଉଥିବାରୁ ସ୍ୱର୍ଗବେଶ୍ୟା ରମ୍ଭା କଦଳୀଗଛ ରୂପ ଧରି ବନାନ୍ତରରେ ଏହାଙ୍କ ଜାନୁ ସଙ୍ଗେ ଲଜ୍ଜିତ ହୋଇଅଛି କି ?' (ପାଦ ଧରି ଅନୁନୟ କରୁଅଛି) ।

୧୪ଶ ପଦ—'ପଦ୍ମପାଦରେ ଦେଖା ଯାଉଥିବା 'ଚିତ୍ରରେଖା' ଅଳତା ରେଖା ଦେଖି ମନେ ହୁଏ ସ୍ୱର୍ଗବେଶ୍ୟା ଚିତ୍ରରେଖା ଦୁଇପାଦ ଧରି ବିନତି କରୁଅଛି କି ?'

ବିମଳ ଶରୀରକୁ ଚୁଇଁ । ବିଜୟୀ ଚନ୍ଦ୍ରକଳା ହୋଇ । ୧୫ ।
ବାମପାର୍ଶ୍ୱରେ ଆଲିଙ୍ଗନ । ବିଚିତ୍ର କଳାବତୀ ଯେନ । ୧୬ ।
ବସିଛି ଯେ ସୁନ୍ଦରୀବୃନ୍ଦ । ବହେ ଏ ପୁରନ୍ଦରୀ ପଦ । ୧୭ ।
ବାମା ତହିଁରେ କେହି ହୋଇ । ବିରୋଧୀ କାନ୍ତେ କାହିଁପାଇଁ । ୧୮ ।
ବୋଲେ ସେ ଗୌତମ ଅବଳା । ବୃଷାସଙ୍ଗମ୍ ଶାପେ ଶିଳା । ୧୯ ।
ବିକୁକ୍ଷିବଂଶୀ ରାମପଦ । ବାଜି ତା ପୁରୁବ ସମ୍ପଦ । ୨୦ ।
ବଜ୍ରୀର ରସେ ବଡ ପ୍ରୀତ । ବଳାଉଥିବ ପୁଣି ମତ । ୨୧ ।
ବିଜ୍ଞ ସ୍ୱାଂଶ ସୁଦକ୍ଷିଣ । ବୋଇଲେ ଶୁଣି ତତକ୍ଷଣ । ୨୨ ।

---

୧୭ଶ ପଦ—ପୁରନ୍ଦରୀ—ଇନ୍ଦ୍ରାଣୀ ।
୧୯ଶ ପଦ—ବୃଷା—ଇନ୍ଦ୍ର । ଶିଳା—ପଥର ।
୨୦ଶ ପଦ—ବିକୁକ୍ଷିବଂଶୀ—ସୂର୍ଯ୍ୟବଂଶୀୟ ।
୨୧ଶ ପଦ—ବଜ୍ରୀର—ଇନ୍ଦ୍ରଙ୍କର ।

---

୧୫ଶ ପଦ—'ଚନ୍ଦ୍ରକଳା' ଚନ୍ଦ୍ରରେଖା ସଦୃଶ ନିର୍ମଳ ଓଷ୍ଠକୁ ଦେଖି ମନେ ହୁଏ ଚନ୍ଦ୍ରଲେଖା ନାମକ ସ୍ୱର୍ବେଶ୍ୟା ବିଜୟ ପ୍ରକାଶ କରୁଅଛି କି ?

୧୬ଶ ପଦ—ବିଚିତ୍ର କଳାବତୀ ଶାଢ଼ୀ ଦେହରେ ଜଡିତ ଥିବାରୁ ଜଣା ଯାଉଛି, କଳାବତୀ ନାମ୍ନୀ ସ୍ୱର୍ଗ ବେଶ୍ୟା ତାଙ୍କୁ ଆଲିଙ୍ଗନ କରିଅଛି ।

୧୭ଶ ପଦ—ସୁନ୍ଦରୀ ସମୂହରେ ବେଷ୍ଟିତା ହେବାରୁ ଏ ଇନ୍ଦ୍ରାଣୀ ପଦକୁ ବହିଅଛନ୍ତି ।

୧୮ଶ ପଦ—ଶିଷ୍ୟମାନଙ୍କ ମଧ୍ୟରୁ କେହି ପ୍ରତିବାଦ କରି କହିଲା, "ଶଚୀ କାନ୍ତଠାରେ ବିରୋଧୀ ହେବେ କାହିଁକି ?"

୧୯ଶ ପଦ—ପ୍ରଥମ ଶିଷ୍ୟ କହିଲା, "ଇନ୍ଦ୍ର ଗୌତମପତ୍ନୀ ଅହଲ୍ୟାଙ୍କ ସହିତ ପ୍ରୀତି କରିବାରୁ ଗୌତମଙ୍କ ଶାପରେ ଅହଲ୍ୟା ପାଷାଣ ହୋଇଥିଲେ ।"

୨୦ଶ ପଦ—"ସୂର୍ଯ୍ୟ ବଂଶରେ ଜନ୍ମ ହୋଇଥିବା ରାମଚନ୍ଦ୍ରଙ୍କ ପଦ ବାଜିବାରୁ ସେ ଅହଲ୍ୟା ପାଷାଣରୁ ମୁକ୍ତ ହୋଇ ପୂର୍ବରୂପ ପାଇଅଛନ୍ତି ।"

୨୧ଶ ପଦ—"ଇନ୍ଦ୍ରଙ୍କର ଅହଲ୍ୟାଠାରେ ବଡ ସ୍ନେହ ଥାଏ । ପୁଣି ସେ ଅହଲ୍ୟାଙ୍କୁ ମନ ବଳାଉଥିବେ; ତେଣୁ ଶଚୀ କୁପି ରହିଅଛନ୍ତି ।"

୨୨ଶ ପଦ—ଏହା ଶୁଣି ସେ କାଳଜ୍ଞ ପଣ୍ଡିତ ସୁଦକ୍ଷିଣ ( ଅଗସ୍ତ୍ୟ ଋଷିଙ୍କ ପୁତ୍ର ) ତତ୍କ୍ଷଣାତ୍ କହିଲେ—

ବିଦ୍ୟାଧର ନୋହେ ଏ ଦେବନି । ବନେ ରାମ ଲକ୍ଷ୍ମଣ ଘେନି । ୨୩ ।
ବିଶ୍ୱେ ମୋହନ ରୂପ ହୁଇ । ବିଧୁ ମଦନ ନ ଘଟଇ । ୨୪ ।
ବହେ କଳଙ୍କ ଏକ ପଙ୍କେ । ବିଦେହ ଏକ ଶୋଭା ଅଙ୍କେ । ୨୫ ।
ବିଦେହ ରାଜସୁତା ସଙ୍ଗେ । ବିହିଲ ଲକ୍ଷ୍ୟକୁ କି ରଙ୍ଗେ । ୨୬ ।
ବପୁଏ ହେଲେ ଲକ୍ଷ୍ୟ ଶଚୀ । ବହନ୍ତା ତାହୁଁ ଏତେ ରୁଚି । ୨୭ ।
ବର୍ଣ୍ଣନା କବିମାନଙ୍କର । ବହୁବା ସୀତାଠାରେ ସାର । ୨୮ ।
ବ୍ୟର୍ଥ ଅନ୍ୟ ସ୍ତ୍ରୀଙ୍କ ଠାବ । ବୋଲିବା ନ ଥିଲା ନୋହିବ । ୨୯ ।
ବର୍ତ୍ତିମାନରେ ଅଛି ଏହି । ବିଶ୍ୱେ ଖୋଜିଲେ ଆଉ ନାହିଁ । ୩୦ ।

---

୨୪ଶ ପଦ—ବିଧୁ—ଚନ୍ଦ୍ର । ମଦନ—କନ୍ଦର୍ପ ।
୨୫ଶ ପଦ—ବିଦେହ—ଦେହହୀନ ।
୨୭ଶ ପଦ—ରୁଚି—ଶୋଭା ।

---

୨୩ଶ ପଦ—"ଏ ସୁରୂପ ଦୁହେଁ ବିଦ୍ୟାଧର ନୁହନ୍ତି, ଲକ୍ଷ୍ମଣଙ୍କୁ ସଙ୍ଗରେ ଧରି ରାମଚନ୍ଦ୍ର ଅଟବି ଚରିଅଛନ୍ତି।"

୨୪ଶ ପଦ—"ଏ ଦୁହିଙ୍କ ରୂପ ଜଗତକୁ ମୋହିତ କରୁଛି । ଚନ୍ଦ୍ର ଓ କନ୍ଦର୍ପର ଶୋଭା ଏହାଙ୍କ ସହିତ ତୁଳନୀୟ ହୋଇ ନ ପାରେ ।"

୨୫ଶ ପଦ—"ଏହାଙ୍କ ଶୋଭା ଦେଖି ଲଜ୍ଜିତ ହୋଇ ଚନ୍ଦ୍ର ଦେହରେ କଳଙ୍କ ବହୁଅଛି ଓ କନ୍ଦର୍ପ ଅଦେହ ହୋଇଅଛି ।"

୨୬ଶ ପଦ—"ବିଦେହ ରାଜସୁତା ସୀତା ଏହାଙ୍କ ସଙ୍ଗରେ ଅଛନ୍ତି । ତୁମ୍ଭେ କୌତୁକରେ କି ଉପମା ବା ଦେବ ? ( ତୁମ୍ଭେ ଶଚୀ ସହିତ ଯେ ଉପମା ଦେବ, ସେ ତୁଚ୍ଛ ନୁହେଁ । ଶଚୀ ଏହାଙ୍କୁ ଲକ୍ଷ୍ୟ ନୁହନ୍ତି ) ।"

୨୭ଶ ପଦ—"ଲକ୍ଷସଂଖ୍ୟକ ଶଚୀ ଗୋଟିଏ ଶରୀର ବହିଲେ ସୁଦ୍ଧା ଏପରି ଶୋଭା ପାଇବେ କି ?"

୨୮ଶ ପଦ—"କବିମାନଙ୍କର ବର୍ଣ୍ଣନା [ସୌନ୍ଦର୍ଯ୍ୟ ବର୍ଣ୍ଣନା] କେବଳ ସୀତାଙ୍କଠାରେ ସାର୍ଥକ ହୋଇଅଛି ।"

୨୯ଶ ପଦ "ଅନ୍ୟ ସ୍ତ୍ରୀମାନଙ୍କଠାରେ ସେ ବର୍ଣ୍ଣନାସବୁ ବୃଥା ଅଟେ । ଅତୀତରେ ନ ଥିଲା କି ଭବିଷ୍ୟତରେ ନ ହେବ ।"

୩୦ଶ ପଦ—'ବର୍ତ୍ତିମାନ କେବଳ ଏହି ଏକା ଅଛନ୍ତି । ବିଶ୍ୱଯାକ ଖୋଜି ଆସିଲେ ବି ଆଉ ଗୋଟିଏ ମିଳିବ ନାହିଁ ।'

ବନଜାସନା ଯହିଁ ଯେତେ । ବାର ବାର ଜନ୍ମିବ ମର୍ତ୍ତ୍ୟେ ।୩୧।
ବହି ନ ଥିବ ନ ବହିବ । ଶରୀରେ ଏପରି ସ୍ୱଭାବ ।୩୨।
ବୋଲି ସେ ଅଶ୍ରମେ ପ୍ରବେଶି । ବାରିଧିଚଳୁକଙ୍କୁ ଭେଟି ।୩୩।
ବସାଇ ପ୍ରଣିପତ୍ୟ କ୍ଷଣେ । ବିଧିସମ ସେ ସବୁ ଜାଣେ ।୩୪।
କରନ୍ତି ମାନସିକ ପୂଜା । ବୈଦର୍ଭୀ ପାଶେ ଜନକଜା ।୩୫।
ବସିଲା କହ୍ଲାର ପାଶରେ । ବିକଚ ପଦ୍ମ ଯେ ପ୍ରକାରେ ।୩୬।
ବହୁଳେ ପ୍ରଶଂସିତ ସଦା । ବଡ଼ ସୁନ୍ଦରୀ ଲୋପାମୁଦ୍ରା ।୩୭।
ବୈଦେହୀ ତା ଲୋପ କରାଏ । ବାଛି ଅମୁଦ୍ରା ମୁଦ୍ରା ପ୍ରାୟେ ।୩୮।

---

୩୫ଶ ପଦ—ବୈଦର୍ଭୀ—ଅଗସ୍ତ୍ୟପତ୍ନୀ । ଜନକଜା—ସୀତା ।
୩୬ଶ ପଦ—କହ୍ଲାର—କଇଁ । ବିକଚ—ପ୍ରସ୍ଫୁଟିତ ।

---

୩୧ ଓ ୩୨ଶ ପଦ—"ପଦ୍ମାସନା ଲକ୍ଷ୍ମୀ ମର୍ତ୍ତ୍ୟରେ ବାରମ୍ବାର ଯେଉଁ ସ୍ଥାନରେ ଯେତେଥର ଜନ୍ମିଛନ୍ତି ସେ ଏପରି ଶୋଭା ଧରି ନାହାନ୍ତି, କି ଧରିବେ ନାହିଁ । (ଲକ୍ଷ୍ମୀ ମଧ୍ୟ ଏପରି ସର୍ବାଙ୍ଗସୁନ୍ଦରୀ ରୂପ ଧରି ନ ପାରନ୍ତି ।)"

୩୩ଶ ପଦ—ସୁଦକ୍ଷିଣ ଋଷି ଏହା କହିବା ସମୟରେ ରାମ, ଲକ୍ଷ୍ମଣ ଓ ସୀତା ଅଶ୍ରମରେ ପ୍ରବେଶ ହୋଇ, 'ବାରିଧି ଚଳୁକଙ୍କୁ' ଅଗସ୍ତ୍ୟ ଋଷିଙ୍କୁ ଭେଟିଲେ । ( ଅଗସ୍ତ୍ୟ କମଣ୍ଡଳ ମଧ୍ୟସ୍ଥ ପାଣିରୁ ଜନ୍ମ ହୋଇଥିଲେ, ମାତ୍ର ସମୁଦ୍ରକୁ ଗଣ୍ଡୂଷରେ ଚଳୁରୂପେ ପାନ କରି ଦେଇଥିଲେ ) ।

୩୪ଶ ପଦ—ଅଗସ୍ତ୍ୟଙ୍କୁ ନମସ୍କାର କରିବା ସମୟରେ ମୁନି ତାଙ୍କୁ ଆସନରେ ବସାଇଲେ । ସେ ମୁନି ବିଧାତା ପରି ସବୁ କଥା ଜାଣିପାରନ୍ତି । (ବିଷ୍ଣୁ ରାମ ଅବତାରରେ ରାବଣ ବଧ ନିମିତ୍ତ ବନରେ ବୁଲୁ ଅଛନ୍ତି—ଏ କଥା ସେ ଜାଣି ପାରିଲେ । )

୩୫ଶ ପଦ—ତେଣୁ ଅଗସ୍ତ୍ୟ ମନ ମଧ୍ୟରେ ରାମଚନ୍ଦ୍ରଙ୍କୁ ପୂଜା କଲେ । ଅଗସ୍ତ୍ୟ ଋଷିଙ୍କ ପତ୍ନୀ ବୈଦର୍ଭୀଙ୍କ ପାଖରେ ଜାନକୀ ପ୍ରବେଶ ହେଲେ ।

୩୬ଶ ପଦ—କହ୍ଲାର ପୁଷ୍ପ ପାର୍ଶ୍ୱରେ ପ୍ରସ୍ଫୁଟିତ ପଦ୍ମ ଯେପରି ଶୋଭାପାଏ, ଏ ସେହିପରି ଶୋଭା ପାଇଲେ । (ବୈଦର୍ଭୀ କହ୍ଲାର ଓ ସୀତା ପ୍ରସ୍ଫୁଟିତ ପଦ୍ମ) ।

୩୭ଶ ପଦ—ସବୁକାଳରେ ଲୋପାମୁଦ୍ରା (ବୈଦର୍ଭୀଙ୍କ ଅନ୍ୟ ନାମ) ବଡ଼ ସୁନ୍ଦରୀ ବୋଲି ପଣ୍ଡିତମାନଙ୍କ ଦ୍ୱାରା ପ୍ରଶଂସିତା ହୋଇଥାନ୍ତି ।

୩୮ଶ ପଦ—'ଲୋପାମୁଦ୍ରା ବଡ଼ ସୁନ୍ଦରୀ' ଏହି କଥାକୁ ସୀତା ମୁଦ୍ରା ନ ଥିବା ଅର୍ଥାତ୍ ସତ ନ ହେବା ବାକ୍ୟକୁ ବାଛି ଦେଇ ପ୍ରାୟ ଲୋପ କରି

ବିଧାତା ହୃଦ ସମ୍ପୁଟକୁ । ବୋଲିବା ଲୋପାମୁଦ୍ରା ତାକୁ ।୩୯।
ବପୁକୁ ସ୍ପୃହେଁ ଅପଣାର । ବଳେକେ ସୀତା ମନୋହର ।୪୦।
ବିନାଶନ ରୂପଗର୍ବିତା । ବଢ଼ାଇ ଚକ୍ଷୁଂ ହୋଇଲା ତା ।୪୧।
ବାର ବାର ନେତ୍ର ଢୋକାଅଳି । ବଚିତ୍ରବଲ୍ଲୀ ପରେ ଢାଳି ।୪୨।
ବିମଳ ଜଳ ସ୍ଥଳ ଫୁଲ । ବଦନ ସ୍ପୃହ ଷଟ ମେଳ ।୪୩।
ବକ୍ଷରେ ଏଡ଼ାରେ ରଞ୍ଜିତା । ବାଣୀ ପଦ୍ମମା ରସଲତା ।୪୪।

---

୪୨ଶ ପଦ—ଢୋକାଅଳ—ଢୋକାରୂପ ଭ୍ରମର ।

---

ଦେଲେ । (ସୀତାଙ୍କ ସୌନ୍ଦର୍ଯ୍ୟ ନିକଟରେ ଲୋପାମୁଦ୍ରାଙ୍କ ସୌନ୍ଦର୍ଯ୍ୟ ହୀନପ୍ରଭ ହୋଇଗଲା) ।

୩୯ଶ ପଦ—ବିଧାତାଙ୍କ ହୃଦୟ ରୂପ ସମ୍ପୁଟରେ ଯେତେ ସୌନ୍ଦର୍ଯ୍ୟ ଥିଲା, ବୈଦର୍ଭୀ ସେ ସବୁ ଲୋପ କରି ଦେଲେ । ତେଣୁ ତାଙ୍କୁ ଲୋପାମୁଦ୍ରା କୁହାଯାଏ । ( ବିଧାତାର ଯେତେ ଶୋଭା ଲକ୍ଷଣ ଥିଲା, ସେ ସମସ୍ତ ନେଇ ବିଧାତା ଲୋପାମୁଦ୍ରାଙ୍କୁ ନିର୍ମାଣ କରିଥିଲେ ) ।

୪୦ଶ ପଦ—ସେ ଲୋପାମୁଦ୍ରା ନିଜ ଦେହକୁ ସ୍ପୃହା ପୂର୍ଣ୍ଣ ସୀତାଙ୍କ ସୌନ୍ଦର୍ଯ୍ୟକୁ ନିରୀକ୍ଷଣ କଲେ ।

୪୧ଶ ପଦ—ସୀତାଙ୍କ ଶୋଭା ଦେଖି ଲୋପାମୁଦ୍ରାଙ୍କର ସୌନ୍ଦର୍ଯ୍ୟ ଗରିମା ମନରୁ ବିନାଶ ହେଲା ।

୪୨ଶ ପଦ—ସେ ଲୋପାମୁଦ୍ରା ବାରମ୍ବାର ନିଜର ନେତ୍ର ଢୋକାରୂପ ଭ୍ରମରକୁ ସୀତା ରୂପ ଅଶ୍ଚର୍ଯ୍ୟ ଲତିକା ଉପରେ ଢାଳିଲେ । ( ସୀତାଙ୍କୁ ବାରମ୍ବାର ସ୍ପୃହିଲେ ) ।

୪୩ଶ ପଦ—(ସୀତା ଅଶ୍ଚର୍ଯ୍ୟ ଲତା କିପରି ହେଲେ ?) ନିର୍ମଳ ଜଳ ସମ୍ବନ୍ଧୀୟ ଚାରିଗୋଟି ଓ ସ୍ଥଳ ସମ୍ବନ୍ଧୀୟ ଛଅଗୋଟି ଫୁଲ ଏକତ୍ରିତ ହୋଇ ସେ ବିଚିତ୍ର ଲତାରେ ଅର୍ଥାତ୍ ସୀତାଙ୍କ ଦେହରେ ବିକଶିତ ହୋଇଅଛି । [ଜଳ ସମ୍ବନ୍ଧୀୟ ଚାରିଗୋଟି ଫୁଲ, ଯଥା—ମୁଖ—ଶ୍ୱେତପଦ୍ମ । ନେତ୍ର - ନୀଳୋତ୍ପଳ, ଚରଣ—ରକ୍ତପଦ୍ମ, ହାସ୍ୟ—କହ୍ଲାର । ସ୍ଥଳ ସମ୍ବନ୍ଧୀୟ ଛଅଗୋଟି ଫୁଲ; ଯଥା—ଅଧର—ବନ୍ଧୁଲି, ନାସା—ତିଳ ଫୁଲ, ଅଙ୍ଗୁଳି—ଚମ୍ପକ କଳିକା, କାନ୍ତି—କେତକୀ, ଦନ୍ତ—କୁନ୍ଦ କଳିକା, ନଖ—ଜାଈ କଳିକା ) ।

୪୪ଶ ପଦ—ଲୋପାମୁଦ୍ରା ସୀତାଙ୍କୁ ଦେଖି ବିଚାର କଲେ, "ମୁଁ କେଉଁଠି, ଏହି ବୈଦ୍ରୁମା ନାୟିକାକୁ ରହିଲା ନାହିଁରେ ଲଜ୍ଜିତ ହେବା ଉଚିତ ।"

ବିନ୍ଧ୍ୟଭୂଚ୍ଛେଦ ସ୍ୱୟେ ତହିଁ । ବ୍ରହ୍ମାସ୍ତ୍ର ଚାପ ତୂଣ ଦେଇ ।୪୫।
ବୋଇଲେ ଏ ଶରେ ରାବଣର । ବଧ କରିବ ରଘୁବୀର ।୪୬।
ଦନ୍ତାବଳଙ୍କୁ ବଳ ତେଜେ । ବଡ଼ ଏ ନାରାଚସମାଜେ ।୪୭।
ଶଙ୍କରା ତ୍ରିପୁରେ ଚଳିଙ୍କ । ବୃଷାଙ୍କ ଧନୁ ଜଳିଥିବା ।୪୮।
ବାଣାସନକୁ ତଥା ଭେନ । ବଜ୍ରାଗ୍ନି ଦହଇ କି ଘନ ? ।୪୯।
ଅଜସ୍ର ତୂଣ ଝର ଶର । ବାଣ ବହନ୍ତୁଥିଲେ ନ ସର ।୫୦।

---

୪୫ଶ ପଦ—ବିନ୍ଧ୍ୟଭୂଚ୍ଛେଦ—ଅଗସ୍ତ୍ୟ । ଚାପ—ଧନୁ । ତୂଣ—ଶରତୂଣୀ ।

---

୪୫ଶ ପଦ—'ବିନ୍ଧ୍ୟଭୂଚ୍ଛେଦ' ଅଗସ୍ତ୍ୟ ଋଷି (ବିନ୍ଧ୍ୟ ପର୍ବତ ଦିନକୁ ଦିନ ବଢ଼ୁଥିବାରୁ ଅଗସ୍ତ୍ୟ ତାକୁ ଭୂଇଁର ନମ୍ର ଅବସ୍ଥାରେ ରଖି ଦାକ୍ଷିଣାତ୍ୟକୁ ଯାଇଥିଲେ । ସେ ଫେରିଆସିଲେ ବିନ୍ଧ୍ୟ ପୁଣି ବଢ଼ିବାର କଥା ଥିଲା । ମାତ୍ର ସେ ଆଉ ନ ଫେରିବାରୁ ବିନ୍ଧ୍ୟ ବଢ଼ି ନ ପାରି ସେହିପରି ରହିଲା) ରାମଚନ୍ଦ୍ରଙ୍କୁ ତାଙ୍କ ଆଶ୍ରମରେ ରଖାଇଲେ ଓ ବ୍ରହ୍ମଶର, ଧନୁ, ତୂଣୀର ଦେଇ କହିଲେ,—

୪୬ଶ ପଦ—"ହେ ରଘୁବୀର ! ଏ ଶରଦ୍ୱାରା ରାବଣର ବିନାଶ ସାଧନ କର ।"

୪୭ଶ ପଦ—"ଏ ଶରର ତେଜ ବଜ୍ରାଗ୍ନିର ତେଜଠାରୁ ଅଧିକ ଓ ଏହା ଶରସମୂହରେ ଶ୍ରେଷ୍ଠ ଅଟେ ।"

୪୮ଶ ପଦ—"ମହାଦେବ ତ୍ରିପୁରାସୁର ବଧ କରିବା ମାନସରେ ଏ ଶରକୁ ଅଜଗବ ଧନୁରେ ବସାଲେ, ତାହା ଜଳିଗଲା । ତେଣୁ ଶିବ ତାହା ବ୍ରହ୍ମାଙ୍କୁ ଦେବାରୁ ବ୍ରହ୍ମା ତୁମ୍ଭଙ୍କୁ ଦେବା ନିମିତ୍ତ ମୋ ପାଖରେ ରଖାଇ-ଥିଲେ ।"

୪୯ଶତ ପଦ—ତାଲେ ରାମ କହିବେ, 'ଏ ଶର ମହାଦେବଙ୍କ ଧନୁକୁ ଜାଳି ଦେଇଛି, ମୋର ଏ ଧନୁକୁ ଜାଳି ନ ଦେବ କିଆଁ ?' ସେଥିପାଇଁ ଅଗସ୍ତ୍ୟ କହୁଛନ୍ତି, "ଯେପରି ବଜ୍ରାଗ୍ନି ମେଘରେ ଥାଇ ମେଘକୁ ନଷ୍ଟ କରିପାରେ ନାହିଁ, ସେହିପରି ଏ ଶର ଏ ଧନୁକୁ ପୋଡ଼ିଦେଇ ନ ପାରେ ।"

୫୦ଶତ୍ ପଦ—"ଏ ଅଜସ୍ର ତୂଣରୁ ଯେତେ ଶର ବାହାର କର ବହିଲେ ସୁଦ୍ଧା ତା ଭିତର ଖାଲି ପଡ଼ି ଶେଷ ହେବ ନାହିଁ ।"

ବନରେ ପଞ୍ଚବଟୀ ସାର । କେଣ୍ଟ ତହିଁରେ ଯାଇ କର ।୫୧।
ବାଟଦେଖାଳୁ ଶିଷ୍ୟେ ଦେଲେ । ବଇସ୍ତ ସେ ସ୍ଥାନରେ କଲେ ।୫୨।
ବିଲୋକି ନଦୀ ଗୋଦାବରୀ । ଭାଗ କି ଶୁକ୍ଳ-ଅଭିସାରୀ ।୫୩।
ବସନ ଫେନ ପାଟ ଶାଢ଼ୀ । ବାନ୍ଧି ହୋଇଛି ପୂଲ ଗଣ୍ଡି ।୫୪।
ବସ୍ତ୍ର ଦଶା ସ୍ଥିତ ହୋଇ । ସାରି ଚରକୁ ଟେକି ଦେଇ ।୫୫।
ଭଂଶେଷ କୁମୁଦ ଛଟକ । ଭସକେ ରଙ୍ଗତ କଟକ ।୫୬।
ଚୂଡ଼ ଭଠଲ ଚକ୍ର ବସି । ବାସ ଖଟି କ ସ୍ତନ ଦଶି ।୫୭।

---

୫୧ଶତ୍ ପଦ—କେଟ୍—ଗୃହ ।

---

୫୧ଶତ୍ ପଦ—"ବନମାନଙ୍କ ମଧ୍ୟରେ ପଞ୍ଚବଟୀ ଶ୍ରେଷ୍ଠ ଅଟେ । ତୁମ୍ଭେ ଯାଇ ସେହି ବନରେ ଗୃହ କରି ରହ ।"

୫୨ଶତ୍ ପଦ—ଅଗସ୍ତ୍ୟ ଏହା କହିସାରି ବାଟ ଦେଖାଇ ଦେବାପାଇଁ ଶିଷ୍ୟମାନଙ୍କୁ ତାଙ୍କ ସଙ୍ଗତ ପଠାଇଲେ । ରାମ, ଲକ୍ଷ୍ମଣ, ସୀତା ପଞ୍ଚବଟୀରେ ପହଞ୍ଚିଲେ ।

୫୩ଶତ୍ ପଦ—ସେଠାରେ ଗୋଦାବରୀ ନଦୀକୁ ଦେଖି, 'ଏ ଶୁକ୍ଳାଭିସାରିଣୀ ନାୟିକା କି ?' ଏପରି ମନେ କଲେ [ଗୋଦାବରୀର ଜଳ ଶୁଭ୍ର ଓ ସ୍ୱଚ୍ଛ]।

୫୪ଶତ୍ ପଦ—ଶୁକ୍ଳାଭିସାରିଣୀ ନାୟିକା ଫୁଲଧଡ଼ି ଯୁକ୍ତ ଶୁକ୍ଳ ପାଟ ଶାଢ଼ୀ ପିନ୍ଧିଥାଏ, ଏ ନଦୀ ତୀରରେ ଥିବା ବୃକ୍ଷମାନଙ୍କର ଫୁଲରୂପ ଧଡ଼ି ପଡ଼ିଥିବା ଶୁକ୍ଳ ଫେନ ରୂପ ପାଟଶାଢ଼ୀ ପିନ୍ଧିଅଛି ।

୫୫ଶତ୍ ପଦ—ଅଭିସାରିଣୀ ନାୟିକା ଜାନଶୀଘ୍ରାରେ ଦୁର୍ବଳା ହୋଇଥିବା ହେତୁ ଭୂଷଣ ଭାର ସହି ନ ପାରି ତାହା ଏପାଖ ସେପାଖ ଦୋହଲାଇଲା ପରି ଗୋଦାବରୀ ଢେଉଁ ଖେଳରେ ମାଡ଼ ଲହରୀ ରୂପ କରକୁ ଦୋହଲାଉଅଛି ।

୫୬ଶତ୍ ପଦ—ଶୁକ୍ଳାଭିସାରିଣୀର ରୂପା କଙ୍କଣ ସଦୃଶ ଗୋଦାବରୀର କଇଁଫୁଲ ସବୁ ହସୁଅଛନ୍ତି ।

୫୭ଶତ୍ ପଦ—ଚକ୍ରବାକ ପକ୍ଷୀ ଜଳରେ ବୁଡ଼ି ଉଠି ପଡ଼ୁଥିବେଳେ ବୋଧ ହେଉଛି, ଅଭିସାରିକା ଶୀଘ୍ର ଗତିରେ ଗମନ କରିବା ହେତୁ ଦେହରୁ ବସ୍ତ୍ର ଖସିଯିବାରୁ ସ୍ତନମଣ୍ଡଳ ଦେଖାଯାଉଅଛି କି ?

ଅଥିର ପବନେ ପୁଳୀନ । ଅପୂର୍ବ ଉରୁ ଦରଶନ ।୫୮।
ଅସ୍ୱରେ କ୍ରୀଡେ ହଂସଶ୍ରେଣୀ । ବାନ୍ଧନ୍ତି ନିଃସ୍ୱନ କଙ୍କିଣୀ ।୫୯।
ବାରିଜନେତ୍ରେ ଭୃଙ୍ଗ ଖେଳା । ଜଳସେ କି ଚଞ୍ଚଳ ଡୋଳା ।୬୦।
ଘଣ ଘନରସରେ ଅତି । ଭୁଡ଼ାଇ କୂ [କୂ]ଳ ସଦା ଗତି ।୬୧।
ଝଉଁପୀମାନେ ଦେଖ ପାଶେ । ଅସତୀ ବାଧା କରନ୍ତେ ସେ ।୬୨।
ବିବିଧ ଗୋତ୍ର ଦ୍ୱିଜେ ବହୁ । ବୋଲନ୍ତି ଗଉତମୀ ତୁହି ।୬୩।

---

୫୮ତମ ପଦ— ପୁଳୀନ—ନଦୀ ମଧ୍ୟସ୍ଥିତ ବାଲିକୂଦ ତଟଦେଶ ।
୫୯ତମ ପଦ—ଅସ୍ୱରେ—ନିଃଶବ୍ଦରେ । ନିଃସ୍ୱନ—ସ୍ୱନହୀନ ।
୬୧ତମ ପଦ - ଘନରସ—ନିବିଡ଼ ଶୃଙ୍ଗାର ରସ, ବହୁଜଳ ।
୬୩ତମ ପଦ—ବିବିଧଗୋତ୍ର—ନାନାଜାତି ବା ନାନାପ୍ରକାର । ଦ୍ୱିଜ—ପକ୍ଷୀ, ବ୍ରାହ୍ମଣ ।

---

୫୮ତମ ପଦ—ଶୀଘ୍ର ଗମନ ହେତୁ ଅଭିସାରିକାର ପୃଥୁଳ ଜଙ୍ଘ କେବେ କେବେ ଦେଖାଗଲା ପରି ନଦୀ ମଧ୍ୟସ୍ଥ ବାଲିକୂଦ ପବନ ଯୋଗେ ହେଉଥିବା ଲହରୀଦ୍ୱାରା କେବେ କେବେ ଅଚ୍ଛନ୍ନ ହୋଇ ପୁଣି ଦେଖାଯାଉ ଥାଏ ।

୫୯ତମ ପଦ—ଅଭିସାରିକା ସ୍ୱନହୀନ କଙ୍କିଣୀ କଟିରେ ବାନ୍ଧି ଯେମନ ଚଲା ପରି ନଦୀର ଜଳରେ ହଂସମାନେ ନିଃଶବ୍ଦରେ କ୍ରୀଡ଼ା କରୁଅଛନ୍ତି ।

୬୦ ତମ ପଦ—ଅଭିସାରିକାର ନେତ୍ରରେ ଡୋଳା ଚଞ୍ଚଳଗତିରେ ଖେଳା କଲାପରି ନଦୀ ଜଳରେ ଫୁଟିଥିବା ପଦ୍ମଫୁଲରେ ଭ୍ରମରମାନେ ଚଞ୍ଚଳ ଗତିରେ କ୍ରୀଡ଼ା କରୁଅଛନ୍ତି ।

୬୧ତମ ପଦ—ଅଭିସାରିକା ନିବିଡ଼ ଶୃଙ୍ଗାର ରସରେ ଅତିଶୟ ଘନ ହୋଇଥିବାରୁ କୁଳ ମର୍ଯ୍ୟାଦା ଲଙ୍ଘନ କରି ନାୟକ ପାଖକୁ ଗମନ କଲା ପ୍ରାୟ, ଗୋଦାବରୀ ବହୁ ଜଳରେ ପୂର୍ଣ୍ଣ ହୋଇ ଉଭୟ କୂଳ ବୁଡ଼ାଇ ସର୍ବଦା ଗତି କରୁଅଛି ।

୬୨ତମ ପଦ—ଅଭିସାରିକାକୁ ତା ପାଖରେ ଥିବା ଅସତୀ ସଖୀମାନେ ଯେପରି ବାରଣ କରନ୍ତି ନାହିଁ, ସେହିପରି ନଦୀର ଦୁଇ ତୀରରେ ଥିବା 'ଝଉଁପି' ବୃକ୍ଷମାନେ ନଦୀର ଗତିକୁ ବାଧା ଦେଉ ନାହାନ୍ତି ।

୬୩ତମ ପଦ—ନଦୀ ତୀରସ୍ଥ ବୃକ୍ଷମାନଙ୍କରେ ଥିବା 'ବିବିଧଗୋତ୍ର' ବ୍ରାହ୍ମଣରୂପ ନାନାପ୍ରକାର ପକ୍ଷୀମାନେ କହୁଅଛନ୍ତି, 'ଗୌତମୀ—ଗୌତମ ଋଷିଙ୍କର କନ୍ୟା ସତ୍ୟ ?' ( ଅର୍ଥାତ୍ ବ୍ରାହ୍ମଣ କନ୍ୟା ହୋଇ ଅସତ୍ ପଥରେ ଯାଉଅଛୁ । )

ବନ୍ଧୁ ରସ ତୃଷ୍ଣେ ନ ଭୁଲ । ବାର୍ଦ୍ଧି ଲବଣୀପ୍ସା ନ କର୍ତ୍ତୁ ।୬୪।
ବନ୍ଧୁଲକ୍ଷଣି ଭାବେ ପ୍ରୀତ । ବିଧ୍ୱଂସ ହେବ ସ୍ୱାଦୁ ଜାତ ।୬୫।
ବର୍ଜ୍ଜନା କି ଯେମିକ ତୀର । ବିବେଦ୍ୟ କାମ ଶସ୍ୟାକର ।୬୬।
ବୁଧେ ରୂପକଶ୍ଳେଷ ମିଶା । ବୁଝ କବିରଚନା ସ୍ପଷ୍ଟା ।୬୭।
ବଢ଼ାଇ ତୋଷ ବନ ପୁଣି । ବିଭର୍ତ୍ତି ତରୁ କି ତରୁଣୀ ।୬୮।
ବନ୍ଧ୍ୟା ନୁହନ୍ତି ଫଳବତୀ । ବୋଧି ସମସ୍ତେ କାନ୍ତ ପ୍ରୀତ ।୬୯।

---

୬୪ତମ ପଦ—ବାର୍ଦ୍ଧି—ସମୁଦ୍ର ।
୬୬ତମ ପଦ—କାମଶସ୍ୟ—ହଂସପକ୍ଷୀ ।

---

୬୪ତମ ପଦ—"ବନ୍ଧୁଜନରୂପ ତୃଷ୍ଣାର ରସରେ ପୂର୍ଣ୍ଣ ହୋଇ କିଟ ପୁରୁଷ ରୂପୀ ସମୁଦ୍ରଠାରେ ଭୁଲି ଯାଉଅଛୁ ? ସମୁଦ୍ର ଲୁଣିଆ—ଏହା ବିଚାର କରୁ ନାହିଁ ?" ( ତୋର ମଧୁର ଜଳ ନେଇ ସମୁଦ୍ରର ଲବଣ ଜଳରେ ମିଶାଇ ଦେଉଅଛୁ କାହିଁକି ? )

୬୫ତମ ପଦ—"ତାହା ସହିତ ପ୍ରୀତି କଲାକ୍ଷଣି ତୋହର ମଧୁର ଗୁଣ ରୂପ ଉତ୍ତମ ଜାତି ଅର୍ଥାତ୍ କୁଳ ମର୍ଯ୍ୟାଦା ବିନାଶ ହୋଇଯିବ । ( ତୋର ଜଳ ଲୁଣିଆ ହୋଇଯିବ ।"

୬୬ତମ ପଦ—ଅଭିସାରିକାର କୁଚଦ୍ୱୟ କାମଶରରେ ବିଦ୍ଧ ହୋଇଥାଏ, ତେଣୁ ସେ ତାହାର ନିଷେଧ କାହାର ମାନେ ନାହିଁ । ସେହିପରି କାମପକ୍ଷୀ, ହଂସରାଜ ପକ୍ଷୀ ଗୋଦାବରୀ ଜଳକୁ ଛାଡ଼ି ଦୂର ଦୂରରୁ ଅଛନ୍ତି ଏବଂ ନଦୀ ସ୍ରୋତବନ୍ଧ ରହିତ ହୋଇ ଗତି କରୁଅଛି ।

୬୭ ତମ ପଦ—ହେ ପଣ୍ଡିତମାନେ ! ରୂପକ ଶ୍ଳେଷ ମିଶା କବିଙ୍କ ରଚନା ସ୍ପଷ୍ଟରୂପେ ବୁଝ ।

୬୮ତମ ପଦ—ପଞ୍ଚବଟୀ ବନର ସନ୍ତୋଷକୁ ବର୍ଦ୍ଧନ କରେ । ଯହିଁରେ ପୁଣି ରହିଥିବା ବୃକ୍ଷମାନେ ପ୍ରତ୍ୟେକ ଗୋଟିଏ ଗୋଟିଏ ତରୁଣୀ ସ୍ତ୍ରୀ ପରି ।

୬୯ତମ ପଦ—ତରୁଣୀମାନେ ପୁଷ୍ପବତୀ ହେବା ସମୟରେ ପତିଙ୍କୁ ରତିଦାନ ପୂର୍ବକ ତାଙ୍କର ମନ ସନ୍ତୋଷ କଲେ ଯେପରି ବନ୍ଧ୍ୟା ନ ହୋଇ ପୁତ୍ର କନ୍ୟା ପ୍ରାପ୍ତ ହୁଅନ୍ତି, ସେହିପରି ତରୁମାନେ ପୁଷ୍ପିତା ହେବା କାଳରେ ( ବସନ୍ତ ଋତୁରେ ) ତାଙ୍କ ପତି ବସନ୍ତ ସମୟର ତୋଷଦାତା ହୋଇ ବନ୍ଧ୍ୟାତ୍ୱ ନ ପାଇ ଫଳବତୀ ହୋଇଅଛନ୍ତି । ( ବସନ୍ତର ସମାଗମରେ ବୃକ୍ଷସବୁ ପୁଷ୍ପିତ ଓ ଫଳରେ ଭୂଷିତ ହୋଇ ଅଛନ୍ତି । )

ବ୍ୟତିକ୍ରମ ସସସ୍ତ ଶୋଭୁ । ବଲ୍ଲୀ ଧବ ସମୀପେ ରହୁ ।୨୦।
ବଞ୍ଚାଇ କୁସୁମ ବିକାଶେ । ଅଳି ଯେ ସେ ମଧୁପେ ରସେ ।୨୧।
ବାସ ପବନ ଦଣ୍ଡପାଣି । ବଳେ ହରଇ ବୋଲି ଦୋଷୀ ।୨୨।
ବିଦ୍ୟା ଚନ୍ଦନ ନଷ୍ଟହୃଷ୍ଟ । ଅହେ ସେ ଭୁଜଙ୍ଗରେ ପ୍ରୀତ ।୨୩।
ବିଦେଶୀ ପ୍ରାପ୍ତ ପଶ୍ୱପନ୍ତ । ଗତ ଅଗତ ହୁଅନ୍ତି ।୨୪।
ବିଦିତ ଗୁଳ୍ମ ସ୍ୱୟଂଦୂତୀ । ବିଶ୍ରାମ ଏଠାରେ କରନ୍ତି ।୨୫।
ବସି ଯା କପୋତ ସସ୍ୱନ । ବଚନ କରି ତାହା ଯେନ ।୨୬।

---

୨୨ ତମ ପଦ—ଦଣ୍ଡପାଣୀ—ରାଜା ।
୨୫ ତମ ପଦ—ଗୁଳ୍ମ—କ୍ଷୁଦ୍ର ବୃକ୍ଷ ।

---

୨୦ ତମ ପଦ—ପ୍ରୋଷିତଭର୍ତ୍ତୃକା ସ୍ତ୍ରୀ ନାୟକ ପାଖରେ ଶୋଭା ପାଇଲା ପରି ଲତାସବୁ ଧବ ବୃକ୍ଷ ନିକଟରେ ଶୋଭା ପାଉ ଅଛନ୍ତି ।

୨୧ତମ ପଦ—ପ୍ରୋଷିତଭର୍ତ୍ତୃକା ସ୍ତ୍ରୀ ପୁଷ୍ପବତୀ ହୋଇଛି ବୋଲି କହି ନିଜ ସ୍ୱାମୀକୁ ଠକାଏ ଓ ବିଶେଷ ଆଳାପ କରୁଥିବା ମଦ୍ୟପ ପୁରୁଷଠାରେ ରସେ । ତଦ୍ରୂପ ଲତା ପୁଷ୍ପିତା ସମୟରେ ବସନ୍ତ କାନ୍ତକୁ ଠକାଇ 'ମଧୁପ' ଭ୍ରମର ଆଳାପରେ ରସି ତା ସଙ୍ଗେ କ୍ରୀଡ଼ା କରୁଅଛି ।

୨୨ତମ ପଦ—ରାଜା ଯେପରି ଦୋଷୀ ବୋଲି ଦୋଷ୍ଟବୁଣୀର ଗୃହ ଲୁଟିକରି ସମସ୍ତସବୁ ନେଇଯାଏ, ପବନ ସେହିପରି ବଳାତ୍କାରରେ ଲତାର ପୁଷ୍ପବାସନାକୁ ହରଣ କରି ନେଉଅଛି ।

୨୩ତମ ପଦ—ଅସତୀ ଦୂତୀ ସଖୀ କାର୍ଯ୍ୟରେ ପ୍ରେରିତ ହୋଇ ମୁଖା ନିକେ ବିଟପୁରୁଷ ସହିତ ରତ କଲାପରି, ଚନ୍ଦନବୃକ୍ଷ ସର୍ପ ସହିତ ପ୍ରୀତ କରୁଅଛି ।

୨୪ତମ ପଦ—ପଣ୍ଡୁସମୂହ ବିଦେଶୀ ଲୋକଙ୍କ ପରି ଗତାୟାତ କରୁଅଛନ୍ତି ।

୨୫ ଓ ୨୬ତମ ପଦ—ସ୍ୱୟଂ ଦୂତୀ (ଯେଉଁ ନାୟିକା ନିଜେ ଦୂତୀର କାର୍ଯ୍ୟ କରେ) ଯେପରି ନାୟକକୁ 'ଏଠାରେ ବିଶ୍ରାମକର,' ବୋଲି କହନ୍ତି; ସେହିପରି ଗୁଳ୍ମମାନେ ତଦୁପରି ବସିଥିବା କପୋତର ସ୍ୱନ ଛଳରେ ବିଦେଶୀଙ୍କୁ କହୁଅଛନ୍ତି—ଏଠାରେ ବସ ।

ବିହଙ୍ଗ ସ୍ତନ ଚଞ୍ଚୁ ଫଳ । ବିଘଣ୍ଟ ପକ୍ଷ ପତ୍ରାବଳୀ ।୭୭।
ବନ୍ଦ୍ୟ ହୃଦ ଶୋଭେ କୁଞ୍ଜ । ବିକାଶେ ସୁମନ ପ୍ରମୋଦ ।୭୮।
ବିଧାନ କରଣ ଆଶ୍ରମ । ବସନ୍ତି ଲକ୍ଷ୍ମଣ ସୀତା ରାମ ।୭୯।
ବାସବରେ ଯେ ପ୍ରଶଂସିତା । ବିଖ୍ୟାତ ଜଟାୟୁ ନାମ ତା ।୮୦।
ବିବସ୍ଵାନବଂଶରେ ପ୍ରୀତ । ବୈଦେହୀ ରକ୍ଷଣେ ସମ୍ମତ ।୮୧।
ବୟ୍ୟାଣୀ ପଦେ ଛାନ୍ଦ ପ୍ରାନ୍ତ । ବୀରବର ଭଞ୍ଜର କୃତ ।୮୨।

---

୭୭ତମ ପଦ—ବିଘଣ୍ଟ—ସାନ୍ଦ୍ର, ନିବିଡ଼ । ପତ୍ରାବଳୀ—ଦନ୍ତୁରି, ଗୈରିକାଦିର ରଙ୍ଗ ।

୭୮ତମ ପଦ—ବନ୍ଦ୍ୟ—ପ୍ରଶଂସନୀୟ । ସୁମନ—ପୁଷ୍ପ, ଆନନ୍ଦ ।

୮୦ତମ ପଦ—ବାସବରେ—ଇନ୍ଦ୍ରଙ୍କ ଦ୍ଵାରା ।

୮୧ତମ ପଦ—ବିବସ୍ଵାନବଂଶୀ—ସୂର୍ଯ୍ୟବଂଶୀୟ ।

---

୭୭ତମ ପଦ—ସେହି ବୃକ୍ଷମାନଙ୍କ ଉପରେ ବସିଥିବା ପକ୍ଷୀମାନେ ସ୍ଵୟଂଦୂତୀ ନାୟିକାର ସ୍ତନ ଓ ବୃକ୍ଷମାନଙ୍କର ନିବିଡ଼ପତ୍ର ସମୂହ ସ୍ତନ ଉପରେ ଲିଖିତ ପତ୍ରାବଳୀପରି ଶୋଭା ପାଉଅଛି ।

୭୮ତମ ପଦ—ବୃକ୍ଷ ମଧ୍ୟସ୍ଥ ପତ୍ରାଚ୍ଛାଦିତ କୁଞ୍ଜ ସ୍ଵୟଂଦୂତୀର ପ୍ରଶଂସନୀୟ ହୃଦୟପରି ହୋଇଅଛି । ସ୍ଵୟଂଦୂତୀ ଆନନ୍ଦ ହେତୁ ପୁଲକିତ ହେଲାପରି ବୃକ୍ଷ ବଣଲୟ ଓ କଳିକାରେ ରୋମାଞ୍ଚିତ ହୋଇଅଛି ।

୭୯ତମ ପଦ—ସେ ବନରେ ଆଶ୍ରମ ନିର୍ମାଣ କରି ରାମ, ଲକ୍ଷ୍ମଣ ଓ ସୀତା ରହିଲେ ।

୮୦ ଓ ୮୧ତମ ପଦ—ସେଠାରେ ବାସ କରୁଥିବା ଇନ୍ଦ୍ର ଦ୍ଵାରା ପ୍ରଶଂସିତ ବିଖ୍ୟାତ ଜଟାୟୁ ପକ୍ଷୀ ସୂର୍ଯ୍ୟବଂଶୀୟ ରାମଙ୍କ ସହିତ ପ୍ରୀତି କଲା ଏବଂ ସୀତାଙ୍କୁ ଜଗି ରହିବା ପାଇଁ ସମ୍ମତ ହେଲା ।

୮୨ତମ ପଦ—ବୀରବର ଭଞ୍ଜଙ୍କ କୃତ ଏ ଛାନ୍ଦ ବୟ୍ୟାଣୀ ପଦରେ ଶେଷ ହେଲା ।

---

# ତ୍ରୟୋବିଂଶ ଛାନ୍ଦ

## ରାଗ—ଚନ୍ଦ୍ରାଦେଶାକ୍ଷ

ବୈଦେହୀ ଶ୍ରୀରାମ କ ସେ କରଣୀ କରି ।
ବନୋଦ ନଦୀରେ କୁଞ୍ଜକୁଟୀରେ କରି । ୧ ।
ବନ୍ଧୁଳ ମାନସ ପ୍ରେମମଦ ଅଳସା ।
ବଳାଜାତ ପଦ୍ମ କରେ ପରାଗଭୂଷା । ୨ ।
ବଲ୍ଲୀରେ ବନବିହାର ଲଙ୍କା ଭଞ୍ଜିନେ ।
ବସନ୍ତ ଶିଳାମାନରେ ଅତ ରଞ୍ଜିନେ । ୩ ।

---

୧ମ ପଦ—କରି କରଣୀ—ହସ୍ତୀ ହସ୍ତିନୀ । ବନୋଦ—କ୍ରୀଡ଼ା ।

୩ୟ ପଦ—ଲଙ୍କା—ବୃକ୍ଷଶାଖା ।

---

# ତ୍ରୟୋବିଂଶ ଛାନ୍ଦ

୧ମ ପଦ—ହସ୍ତୀ ଓ ହସ୍ତୀଙ୍କ ଦୁହେଁ ନଦୀ ଓ କୁଞ୍ଜ ମଧ୍ୟରେ ଯେଉଁ ପରି ରାମ ଓ ସୀତା ଯେତେବେଳେ ଗୋଦାବରୀ ନଦୀରେ ଓ ଯେତେବେଳେ ବନର କୁଞ୍ଜ ମଧ୍ୟରେ କ୍ରୀଡ଼ା କଲେ ।

୨ୟ ପଦ—ହସ୍ତୀ ଓ ହସ୍ତିନୀ ଯେପରି ଯେତେବେଳେ ପ୍ରେମ ରସରେ ଲେଲ୍ପତାଙ୍କ ହେତୁରୁ ବହଳ ହୋଇ ଜଳରେ ବୁଡ଼ିବା ହାସ୍ ଜଳ ବନ୍ଦୁରେ ଶୋଭିତ ଓ ଯେତେବେଳେ ଧୂଳିରେ ଗଡ଼ି ଧୂଳି ଭୂଷିତ ହୁଅନ୍ତି, ସେହିପରି ରାମ ଓ ସୀତା ଶୃଙ୍ଗାର ରସ ଲେଲ୍ପ ହେତୁରୁ ସମାନ ଭାବରେ ବହଳ ହୋଇଥାନ୍ତି । ପ୍ରେମ ନଙ୍କ ହସ୍ତରେ ପଦ୍ମ ଥିବା ହେତୁ ଶୋଭା ପାଉଥାନ୍ତି ଓ କ୍ରୀଡ଼ା କାଳରେ ପୁଷ୍ପ ରେଣୁରେ ଭୂଷିତ ହେଉଥାନ୍ତି ।

୩ୟ ପଦ—ହସ୍ତୀ ଓ ହସ୍ତିନୀ ନଦୀତୀରେ ବୃକ୍ଷ ଶାଖାମାନ ଭାଙ୍ଗି ଅରଣ୍ୟରେ ବିହାର କରନ୍ତି । ସେହିପରି ରାମ ସୀତା ନଦୀ କୂଳରେ ଲତାପୁଷ୍ପ ଭାଙ୍ଗି ବାପାଇ ବନବିହାର କଲେ । ହସ୍ତୀ ହସ୍ତିନୀ ଅତ ସ୍ନେହରେ ଶିଳା ଭ୍ରମଣରେ ବସନ୍ତି । ତଦ୍ରୂପ ରାମ ସୀତା ଅତ୍ୟନ୍ତ ଅନୁରାଗରେ ସହିତ ପ୍ରସ୍ତରଖଣ୍ଡମାନଙ୍କ ଉପରେ ବସୁଥାନ୍ତି ।

ବୁଲିଅସି ସୂର୍ପଣଖା ନାମେ ରାକ୍ଷସୀ ।
କୁଞ୍ଜାନ୍ତରେ ରହି ଚାହିଁ ହୋଇଲା ତୋଷୀ ।୪।
ଗଳା ଧଇର୍ଯ୍ୟ ହୋଇ ସେ ରାମ ଗୁଣରେ ।
ବର୍ଣ୍ଣଇ ପୁନରୁକ୍ତ ବଦାଭାସରେ ।୫।
ବିଭୁ ବିଧି ମଦନ ଦର୍ପ ହରଣ ।
ବର କାନ୍ତ ପତି ମୋର ହୁଅନ୍ତେ ପୁଣ ।୬।
ବାସର ଦିବସ ନିଶି ଲୀଳ କରନ୍ତି ।
ବଧୂଜନ ରତି କରି ମତି ତୋଷନ୍ତି ।୭।
ବାଳୀକି ନାହିଁ ଭୁବନେ ଲୋକରେ ବଳି ।
ବର୍ଣ୍ଣେ ଚମ୍ପକ କନକ ସୁବର୍ଣ୍ଣ ଦଳି ।୮।

---

୪ର୍ଥ ପଦ—କୁଞ୍ଜାନ୍ତରରେ—ଝଙ୍କ ଉହାଡ଼ରେ ।

୫ମ ପଦ—ପୁନରୁକ୍ତ ବଦାଭାସ—ଏକ ଶବ୍ଦକୁ ପୁନଃ ପୁନଃ କହିଲାପରି ପ୍ରସ୍ତାବନା ।

୬ଷ୍ଠ ପଦ—ବିଭୁ—ବିଧାନ କର୍ତ୍ତା । ବର—ଅତିଶୟ । କାନ୍ତ—ସୁନ୍ଦର । ପତି—ସ୍ୱାମୀ ।

୭ମ ପଦ—ବାସରେ—ଗୃହ ମଧ୍ୟରେ । ବଧୂଜନ—କାମିନୀ ।

୮ମ ପଦ—ବାଳୀକ—ସ୍ତ୍ରୀକି । ଚମ୍ପକ—ଚମ୍ପାଫୁଲ—କନକ—ସୁନା । ସୁବର୍ଣ୍ଣ—ଉତ୍ତମ ବର୍ଣ୍ଣ ।

---

୪ର୍ଥ ପଦ—ସୂର୍ପଣଖା ନାମକ ରାକ୍ଷସୀ ବୁଲି ଆସିଥିଲା । କୁଞ୍ଜ ଉହାଡ଼ରେ ରହି ରାମ ସୀତାଙ୍କୁ ଦେଖି ସେ ଆନନ୍ଦିତ ହେଲା ।

୫ମ ପଦ—ସେ ସୂର୍ପଣଖା ରାମଙ୍କ ପ୍ରୀତିବଶରେ ଅଧୈର୍ଯ୍ୟ ହୋଇ ପୁନରୁକ୍ତ ବଦାଭାସ ଅଳଙ୍କାରରେ ବର୍ଣ୍ଣନ କଲା ।

୬ଷ୍ଠ ଓ ୭ମ ପଦ—ବିଧାତା କାମକୁ ଗର୍ବହୀନ କରିବାପାଇଁ ଏହାକୁ ଗଢ଼ିଲା କି ? ଏପରି ଶ୍ରେଷ୍ଠ ମନୋହର ପୁରୁଷ ମୋର ପତି ହେଲେ; ମୁଁ ଗୃହ ମଧ୍ୟରେ ସୁରତରେ ପ୍ରୀତି କରି ମନ ତୋଷ କରନ୍ତି ଓ ରତିବଧୂଙ୍କୁ ଲଜ୍ଜେ ମାନି ସମସ୍ତ କରି ବସନ୍ତି ।

୮ମ ପଦ—ସଂସାର ଲୋକଙ୍କ ମଧ୍ୟରେ ଏ ବାଳାକୁ ବଳି ଅଧିକ ସୁନ୍ଦରୀ ଆଉ ନାହିଁ । ଏହାର ଦେହର କନକଚମ୍ପା କାନ୍ତି ଉତ୍ତମ ସୁବର୍ଣ୍ଣକୁ ଜିଣା କରୁଅଛି ।

ବିଧୁ ଅବ୍ଜ ଚନ୍ଦ୍ର ଆବରଣ ନିନ୍ଦନ ।
ବଦନ ଅନଙ୍ଗ ଲକ୍ଷ୍ୟ ଶୋଭାସଦନ । ୯ ।
ବଡ଼ ଶୋଭା ରତି ଅଛି ଶମ୍ବରପୁରେ ।
ବ୍ୟସ୍ତ କରିଦେବା ଏହା ଊଣା ତା ଶିରେ । ୧୦ ।
ବିଭୋଗୀ ଏହାରେ ଯେଉଁ ଦିବ୍ୟ ପୁରୁଷ ।
ବିହ୍ୱଳିବ ନାହିଁ ପରା ମୋରେ ମାନସ । ୧୧ ।
ବିଗୃହିଲା ଭୃଙ୍ଗ ପୁଣି ମାଳତୀ ସ୍ନେହୀ ।
ବାସଙ୍ଗେ ସଙ୍ଗ ହୁଅଇ ସରାଗ ବହି । ୧୨ ।
ବିଧାତାକୁ ସ୍ତୁତି କଲା କରି ସୁଦଶା ।
ବସାଇଲା ପ୍ରାୟ ଚନ୍ଦ୍ର କୋଳରେ ଶଶା । ୧୩ ।
ବନ୍ଧସଂଯୋଗ ଏହାର ମୋର ହୋଇଲେ ।
ବଶ ହୋଇ ଗୋଡ଼ାଇବ ମୋହର କୂଳେ ।

---

୯ମ ପଦ—ବିଧୁ—ଚନ୍ଦ୍ର । ଅବ୍ଜ—ପଦ୍ମ । ଚନ୍ଦ୍ର ଆବରଣ—ନିର୍ମଳ ଦର୍ପଣ । ବଦନ – ମୁଖ । ଶୋଭା ସଦନ – ସୌନ୍ଦର୍ଯ୍ୟପୂର୍ଣ୍ଣ ଗୃହ ।

୧୪ଶ ପଦ—ବନ୍ଧ ଚଉଷଠି-ପ୍ରକାର ସୁରତ ବନ୍ଧ ।

---

୯ମ ପଦ—ଚନ୍ଦ୍ର, ପଦ୍ମ ଓ ସୁବର୍ଣ୍ଣ ନିର୍ମିତ ଦର୍ପଣକୁ ନିନ୍ଦା କରୁଥିବା ପୁଣି ଶୋଭାର ଗୃହସ୍ୱରୂପ ହୋଇଥିବା ଏହାର ମୁଖକୁ ଆଉ ଲକ୍ଷ ନାହିଁ।

୧୦ମ ପଦ—ଶ୍ରେଷ୍ଠ ସୁନ୍ଦରୀ ରତିଦେବୀ ଶମ୍ବରପୁରର ଗୃହରେ ଅଛି, ଏହାର ଊଣା ଅଙ୍ଗ ଅର୍ଥାତ୍ ପାଦ ପ୍ରଭୃତି ନିକୃଷ୍ଟ ଅଙ୍ଗ ତାହାର ମସ୍ତକ ସହିତ ତୁଳନା କରିବା ଉଚିତ । ( ରତିର ବଦନ ଶୋଭା ଏହାର ପାଦ ଶୋଭା ସହିତ ସମାନ ହୋଇପାରେ । )

୧୧ଶ ପଦ—ଏ ଯେଉଁ ଦିବ୍ୟ ପୁରୁଷ ଏହାକୁ ଉପଭୋଗ କରୁଅଛି, ସେ ମୋ ସହିତ ବିହାର କରିବାକୁ ମନ କରିବ ନାହିଁ ପରା ! (ସନ୍ଦେହୋକ୍ତି) ।

୧୨ଶ ପଦ—ଶୂର୍ପଣଖା ପୁଣି ବିଗୃହିଲା, ଭ୍ରମର ମାଳତୀ ପୁଷ୍ପରେ ସ୍ନେହୀ ହୋଇଥାଏ; ସେ ପୁଣି କି ସବୁ ପୁଷ୍ପରେ ଅନୁରାଗ ବହି ସଙ୍ଗ ହୁଏ । (ଏ ସୁନ୍ଦରୀକୁ ଉପଭୋଗ କରୁଥିଲେ ସୁଦ୍ଧା ସେ ପୁରୁଷ ମୋ ପ୍ରତି ଅବା ଅନୁରକ୍ତ ହେବେ) ।

୧୩ଶ ପଦ—ଶୂର୍ପଣଖା ବିଧାତାକୁ ସ୍ତୁତି କରି କହିଲା, "ମୋର ଉତ୍ତମ ଦଶା ହେଉ । ଚନ୍ଦ୍ର କୋଳରେ ଶଶାକୁ ବସାଇଲା ପ୍ରାୟ ଏ ପୁରୁଷ ମୋତେ କୋଳରେ ଯେପରି ବସାଇବ ।"

୧୪ଶ ପଦ—ଏହାର ମୋହର ରତି ବନ୍ଧ ଯୋଗେ ସଂଯୋଗ ହେଲେ, ଏ ବଶ ହୋଇ ମୋ ସହିତ ଗୋଡ଼ାଇବ ।

ବେଶ୍ୟା ସଙ୍ଗତ ହୋଇଲେ ରସିକ ପୁଂସ ।
ବୋଲ'ଇ କି ସ୍ୱକାନ୍ତାରେ ସେ ଅଭିଳାଷ ? ୧୫।
ତଣ କରି ପ୍ରେମେ ଶତ୍ରୁ ନାଶିବ ସ୍ତ୍ରୀରୁ ।
ବସ୍ତ୍ରେଧୋକ୍ତ ନ ଲଙ୍ଘିବେ ଅନୁରୋଧରୁ ।୧୬।
ବହିଲା ସୁନ୍ଦର ରୂପ ଏମନ୍ତ ଲଳି ।
ବନାଶିବ ଯୋଗୀଯୋଗ ଗୃହିଁଲେ ତାଳି ।୧୭।
ବୈରବୁଦ୍ଧି କେତକନମାରେ ଉଦ୍ଭବ ।
ବନ୍ଧି ଅନୁକୂଳେ ଯୁକ୍ତ ଅଶୁଭ ହେବ ।୧୮।
ତାହାର ତରୁ ଅନ୍ତରୁ ଗୋଚର ହୋଇ ।
ବାଟେ ନ ସହାର ଦେଉଅଛି ଫୁଲଇ ।୧୯।

---

୧୫ଶ ପଦ – ସ୍ତ୍ରୀରୁ—ସ୍ତ୍ରୀରୁ ।
୧୬ଶ ପଦ—ବସ୍ତ୍ରେଧୋକ୍ତ—ବପସ୍ଥିତ କଥା ।
୧୯ଶ ପଦ—ତରୁ ଅନ୍ତରୁ—ଗଛ ଉହାଡ଼ରୁ ।

---

୧୫ଶ ପଦ—ରସିକ ପୁରୁଷ ବେଶ୍ୟା ସଙ୍ଗମ ପାଇଲେ ଆପଣା ସ୍ତ୍ରୀଠାରେ ଅଉ ମାନସ ବଳାଏ କି ?

୧୬ଶ ପଦ—ପ୍ରେମରେ ଏହା ଶତ୍ରୁ ନାଶ କରି ଏହାର ସ୍ତ୍ରୀକୁ ବିନାଶ କରିବି । ଉପରୋଧ ହେତୁ ସେ ବିରୋଧ ବଚନ କହିବ ନାହିଁ । ( ମୋ ପ୍ରତି ସ୍ନେହ ପ୍ରଗାଢ଼ ହୋଇଗଲେ ସ୍ତ୍ରୀକୁ ମାରିଲେ ସୁଦ୍ଧା ସେ ବିରକ୍ତ ହେବ ନାହିଁ ) ।

୧୭ଶ ପଦ—ଏହା ବିଚାରି ସେ ସୂର୍ପଣଖା ସୁନ୍ଦର ମୂର୍ତ୍ତି ଧରିଲା । ସେ କେହ ତାଳ ଗୃହିଁଲେ ଯୋଗୀର ଯୋଗ ଭଙ୍ଗ ହୋଇଯିବ ।

୧୮ଶ ପଦ—ଯେଉଁଲୋକ ମାତାଠାରେ ଶତ୍ରୁଜନ ଭାବ କରେ, ତାହାର ଅନୁକୂଳରେ ବନ୍ଧିଯୋଗ ହେବା ଅଶୁଭ ହୁଏ । ସୂର୍ପଣଖା ଲକ୍ଷ୍ମୀରୂପା ସୀତାଙ୍କଠାରେ ଶତ୍ରୁ ବୁଦ୍ଧି ଭାବ କଲା, ତେଣୁ ତାହାର ଅନୁକୂଳ ବନ୍ଧିଯୁକ୍ତ ହେଲା, ଅମଙ୍ଗଳ ନିଶ୍ଚୟ ହେବ ।

୧୯ଶ ପଦ—ସେ ସୂର୍ପଣଖା ବୃକ୍ଷ ଉହାଡ଼ରୁ ଗୋଚର ହୋଇ ନାସିବାରୁ ଯୋଡ଼ାଏ ସୂତା ଫୁଲିଲ ବେଳ ତାହାର ହେଲା ।

ବସଣୀ ଟେକି ହେବାର କି ମନୋରମ ।
ବସଣି କରୁକି ଯୁବା ଚିତ୍ତରେ ପ୍ରେମ ।୧୦।
ବାହୁ ଖଡୁ ଝାଡ଼ି ମନ-ମୀନକୁ ନେଇ ।
ବାହୁ କୁଚ-କୁବେଣୀରେ ଥୋଇ ଘେରଇ ।୧୧।
ବନ୍ଧକୀ ଜଙ୍ଘରୁ ଚେଲ ଗ୍ରହିବା ରଙ୍ଗ ।
ବନ୍ଧନ ସେ ସ୍ତମ୍ଭେ ଇଚ୍ଛେ ମନ-ମାତଙ୍ଗ ।୧୨।
ବଣିବେ ଭ୍ରୂରୁ କମ୍ପାଇ ତୋଳା ଖେଳାଇ ।
ବିଶିଖକମାଣେ ସନ୍ଧି ବନ୍ଧ ନ ଦେଇ ।୧୩।
ବଦାଉଛି ମଦନସମରେ ମୁଁ ଏକ ।
ବଦନ୍ତି ଭାଲେ ଟେକିଛି ଖଡ୍ଗ ତିଳକ ।୧୪।

---

୧୦ମ ପଦ—ବସଣୀ—ନାସିକାର ଅଳଙ୍କାର ବିଶେଷ । ବସଣି—ବସିବା ।

୧୨ଶ ପଦ—ବନ୍ଧକୀ—ଅସତୀ । ଚେଲ—ବସ୍ତ୍ର । ମନମାତଙ୍ଗ—ମନରୂପ ମତ୍ତ ହସ୍ତୀ ।

୧୩ ପଦ —କମାଣ—ଧନୁ । ବିଶିଖ—ଶର ।

୧୪ଶ ପଦ—ମଦନ ସମରେ—କାମଯୁଦ୍ଧରେ ।

---

୧୦ମ ପଦ— ତା ନାକପୁଡ଼ା ଫୁଲିବାରୁ ବସଣୀ ଟେକି ହୋଇ ଯାଇ କି ସୁନ୍ଦର ଦିଶୁଅଛି ! ତାହା ଦେଖି ଯୁବକଙ୍କ ଚିତ୍ତରେ ପ୍ରେମ ବସତ ସ୍ଥାପନ କରଇ ।

୧୧ଶ ପଦ—ଯେପରି ମତ୍ସ୍ୟଜୀବୀ ଜାଲ ପାଣିକି ଝାଡ଼ି ଦେଇ ମୀନକୁ ନେଇ ଖାଲେଇରେ ପୂରାଏ, ସେହିପରି ସୂର୍ପଣଖା ଖଡୁ ବାହୁକୁ ଝାଡ଼ି ଦେବାରେ ଯୁବା ପୁରୁଷର ମନ-ମୀନକୁ ନେଇ କୁଚ ରୂପ ଖାଲୋଇରେ ରଖି ଦେଉ । (ତାର ହାତ ଛଟା ଦେଖି ଯୁବା ତାକୁ ଗୃହିଲ ମାତ୍ରେ ଯୁବାର ମନ ତାର ସ୍ତନଠାରେ ଲାଗି ରହୁଛି )।

୧୨ଶ ପଦ—ଅସତୀ ସୂର୍ପଣଖା ତାର ଜଙ୍ଘରୁ ଥରେ ଥରେ ଲୁଗା କାଢ଼ି ଦେଉଅଛି । ତହିଁରୁ ଜଣା ଯାଉଛି, ସେ ତାର ଉରୁ ରୂପ ସ୍ତମ୍ଭରେ ଯୁବା ପୁରୁଷର ମନରୂପ ହସ୍ତୀକୁ ବନ୍ଧନ କରିବାକୁ ଇଚ୍ଛା କରୁଛି କି ?

୧୩ଶ ପଦ—ସେ ସୂର୍ପଣଖା ଭ୍ରୂଲତାକୁ ଖୁବ୍ ଶୀଘ୍ର ଗତିରେ ଚଳାଇ ତୋଳା ଖେଳାଉଅଛି । ତାହା ଦେଖି ମନେ ହୁଏ, ସେ ଭ୍ରୂଲତା ଧନୁରେ ନେତ୍ରଶର ସନ୍ଧାନ କରି ମାତ୍ର ବନ୍ଧ ନ ଦେଇ ରଖିଅଛି ।

୧୪ଶ ପଦ—ସେ ଭାଲପଟରେ ତିଳକ ରୂପ ଖଡ୍ଗ ଟେକି ରଖିବା ଦ୍ୱାରା ବୁଝାଉଛି ଯେ, କାମ ଯୁଦ୍ଧରେ ମୋ ବ୍ୟତୀତ ଅଉ କେହି ନାହିଁ । ( ତା ଭାଲ ପଟରେ ଥିବା ତିଳକ ଖଣ୍ଡା ଧାର ପରି ଦେଖା ଯାଉଛି )।

ବଳା ତେଜସ୍ୱ ଦେଇ କି ଅପସରସା ।
ବଳାହ୍ଲାଦରେ ଶୋଭିଗୁଣେ ଛଡ଼ାଇ ରସା ।୨୪।
ବହୁ ରଙ୍ଗ ତାମ୍ବୁଳ ସଞ୍ଚରି ଅଧରେ ।
ବହୁରଙ୍ଗରୂପା ମିଳେ ରାମ ପାଶରେ ।୨୫।
ବୋଲଇ ଅରଣ୍ୟବାସୀ କିପାଁ ସୁନ୍ଦର ?
ବୋଳ ଭସ୍ମ ଅଙ୍ଗେ ଶିରେ ଜଟା କି ଧର ।୨୬।
ବନ୍ଧ କାଣ୍ଡ କୋଦଣ୍ଡ ଯତିକି ପରସ୍ତ ।
ବହନ କଥନ କର ଛେଦ ସଂଶୟ ।୨୮
ବଟେ ଏସନେ ଯୋଗୀଛ ରସିକପଣେ ।
ବଟେ ଛ ମୃଗ ଗଣ୍ଡକ ପିନ୍ଧୁ ତୋଷଣେ ।୨୯।

---

୨୪ଶ ପଦ—ଅପସରସା—ଅପ୍‌ସରାମାନେ । ରସା— ପୃଥିବୀ ।
୨୫ଶ ପଦ—ବହୁରଙ୍ଗ ରୂପା—କାନ୍ତିରେ ସୁନ୍ଦର ରୂପା ।
୮ ପଦ—କୋଦଣ୍ଡ—ଧନୁ ।

---

୨୪ଶ ପଦ—ସେ ବଳା ପିନ୍ଧିଅଛି । ଗୃହଗଲବେଳେ ସେ ବଳା ଶଙ୍କରୂପ ତେଜସ୍ୱ କାନ୍ତି ବଢ଼ାଇ ଜଣାଇ ଦେଉଛି ଯେ, ଶୋଭାଗୁଣରେ ମୁଁ ଅପ୍‌ସରାମାନଙ୍କୁ ଜୟ କରି କଳାହ୍ଲାଦରେ ତାଙ୍କୁ ପୃଥିବୀକୁ ତଡ଼ି ଦେଇ ସ୍ୱର୍ଗେ ରଖିଅଛି ।

୨୫ଶ ପଦ – ତାହାର ଓଷ୍ଠରେ ପାନ ପିକ ବୋହୁ ପଡ଼ୁଛି । ତାହାରେ ସୁନ୍ଦରୀ ରୂପ ସାଜିଥିବା ସେହି ରାକ୍ଷସୀ ରାମଙ୍କ ନିକଟରେ ପ୍ରବେଶ କଲା ।

୨୬ଶ ପଦ—ସୂର୍ପଣଖା ରାମଙ୍କୁ କହିଲା, "ହେ ସୁନ୍ଦର ! ତୁମ୍ଭେ ବନବାସୀ କାହିଁକି ହେଲ ? ଦେହରେ ଭସ୍ମ କପାଁ ବୋଳି ହୋଇଅଛ ? ମସ୍ତକରେ ଜଟା କାହିଁକି ବାନ୍ଧିଅଛ ?"

୨୮ଶ ପଦ—"ପୁଣି ଯତି ହୋଇ ପ୍ରାୟ ଧନୁଶର ଧରିଅଛ । ଏ କାରଣ-ମାନ ଶୀଘ୍ର କହି ମୋର ସନ୍ଦେହ ନିବାରଣ କର ।"

୨୯ଶ ପଦ—"ପୁଣି ରସିକ ପରି ଗୋଟିଏ ସ୍ତ୍ରୀ ସଙ୍ଗରେ ଯୋଗୀ ଅଛ ଓ ପିନ୍ଧୁ ଗୁଣରେ ସନ୍ତୋଷପାଇ ମୃଗ-ଗଣ୍ଡା ଆଦି ପଶୁଙ୍କୁ ବଧ କରୁଅଛ ।"

ବୀର ସକଳ ପ୍ରକାଶି ବଚନେ ଅପୂର୍ବା ।
ବିରସସ୍ୱରେ କହିଲା ଶୁଣ ହେ ଯୁବା ।୩୦।
ବଶୀଭୂତ ହୋଇ ତବ ଶୋଭାକୁ ଚାହିଁ ।
ବସିବାକୁ ତୁମ୍ଭ କୋଳେ ଆସିଛି ମୁହିଁ ।୩୧।
ବନ୍ଧନ କରି କୁଞ୍ଜରେ ଜାଣଇ ସତ ।
ବନ୍ଧରେ ଯେ ସୁଖକନ୍ଦ ପୁରୁଷାୟିତ ।୩୨।
ବିଶ୍ରବାନନ୍ଦନା ମୁଁ ଯେ କୁଳରେ ସାଧୁ
ବିସ୍ରବାଇ ଓଷ୍ଠୁ ପିଅ ମଧୁରମଧୁ ।୩୩।
ବକ୍ଷଜାତ ହରେ ଦେଲେ କମଳକର ।
ବତ୍ସଳେ ସେ ଫଳେ ହେବ ରଜା ସ୍ୱର୍ଗର ।୩୪।
ବାରବେଳପୁରେ ରଜା ମୋର ସୋଦର ।
ବାରତା ପାଇ ହୋଇବେ ହରଷଭର ।୩୫।

---

୩୨ଶ ପଦ—ପୁରୁଷାୟିତ—ବିପରୀତ ରତି ।
୩୩ଶ ପଦ—ବିସ୍ରବାଇ— ତରଳାଇ ।
୩୪ଶ ପଦ—ବତ୍ସଳେ—ସ୍ନେହଯୁକ୍ତ ହୋଇ ।
୩୫ଶ ପଦ—ବାରବେଳପୁର—ଚତୁର୍ଦ୍ଦଶପୁର । ସୋଦର—ଭ୍ରାତ ।

---

୩୦ଶ ପଦ—ସୂର୍ପଣଖାର ପ୍ରଶ୍ନ ଶୁଣି ବୀର ରାମଚନ୍ଦ୍ର ବନକୁ ଆସିବା ଚରିତମାନ ପ୍ରକାଶ କଲେ । ତାହା ଶୁଣି ସୂର୍ପଣଖା ବିରସ ସ୍ୱରରେ କହିଲା, "ହେ ଯୁବା ! ଶୁଣ ।"—

୩୧ଶ ପଦ -"ମୁଁ ତୁମ ସୌନ୍ଦର୍ଯ୍ୟ ଦେଖି ବଶୀଭୂତ ହୋଇ ତୁମ କୋଳରେ ବସିବା ପାଇଁ ଆସିଅଛି ।"

୩୨ଶ ପଦ—"ଭୁଜ ବନ୍ଧନ ରୂପ ବନ୍ଧୁତ ପ୍ରକାର ଆଲିଙ୍ଗନ ଏବଂ ଚଉଷଠୀ ବନ୍ଧ ମଧ୍ୟରେ ଚନ୍ଦ୍ର ବନ୍ଧ ଓ ବିପରୀତ ବନ୍ଧ ମୁଁ ଜାଣେ ।"

୩୩ଶ ପଦ—"ମୁଁ ବିଶ୍ରବା ଋଷିଙ୍କ କନ୍ୟା, ତେଣୁ ମୋର ଜାତ ଉତ୍ତମ ଅଟେ । ମୋ ଓଷ୍ଠରୁ ସୁମିଷ୍ଟ ମଧୁ ଝରାଇ ପାନ କର ।"

୩୪ଶ ପଦ—"ମୋହର ବକ୍ଷଜାତ ଶମ୍ଭୁରେ ସ୍ନେହଯୁକ୍ତ ହୋଇ (ସ୍ତନରେ) ହସ୍ତ ପଦ୍ମ ଦେଲେ, ତାହାର ଫଳରେ ତୁମ୍ଭେ ସ୍ୱର୍ଗର ରାଜା ହେବ । (ମୋ ସ୍ତନରେ ହାତ ଦେଲେ ତୁମ୍ଭେ ସ୍ୱର୍ଗସୁଖ ଅନୁଭବ କରିବ )।"

୩୫ଶ ପଦ—"ମୋର ଭାଇ ଚଉଦ ଭୁବନର ରାଜା ଅଟେ । ସେ ଏ କଥା ଶୁଣି ପାରିଲେ ଅତ୍ୟନ୍ତ ହର୍ଷ ହେବ, ତା ଫଳରେ ତୁମର ମଙ୍ଗଳ ହେବ ।"

ବିରଞ୍ଚି ଲେଖିଛି ଭାଳପଟେ ତୁମ୍ଭର ।
ବରଣିବ ନନ୍ଦନବନରେ ବିହାର ।୩୬।
ବିନୋଦ ଯେଉଁ ରାମାରେ କରିବ ମତି ।
ବିନୋଦ୍ଧ ନୋହୁଁ ଧରିବି ମୁଁ ସେହି ମୂର୍ତ୍ତି ।୩୭।
ବୋଇଲେ ରଘୁନନ୍ଦନ ଶର ସୁମାଧର !
ବ୍ରତ ଆଚରଣ ଏକପତ୍ନୀ ମୋହର ।୩୮।
ବଡ଼ କୁଳେ ଜାତ ଭୂପ ଭଗିନୀ ତୁହି ।
ବୃଷସ୍ୟନ୍ତୀ ଆଚରଣ ଭଲ ତ ନୋହି ।୩୯।
ବାସ୍ତୋଷ୍ପତି ପଦ୍ମବାଞ୍ଛେ କି କାର୍ଯ୍ୟ ମୋର ?
ବହି ନ ପାରେ ଯେହ୍ନ ନେତ୍ର ସହସ୍ର ।୪୦।
ବିଟଭାବ ଲମ୍ପଟେ କେମନ୍ତ ସେହି ।
ବିପତ୍ତେ ଶିଳାସ୍ୱରୂପ ନ କର ତୁହି ।୪୧।

---

୩୬ଣ ପଦ—ବିରଞ୍ଚି—ବିଧାତା ।
୩୯ଣ ପଦ—ଭୂପ—ରାଜା । ବୃଷସ୍ୟନ୍ତୀ— କାମୁକୀ ।
୪୦ଣ ପଦ—ବାସ୍ତୋଷ୍ପତି—ଇନ୍ଦ୍ର ।

---

୩୬ଣ ପଦ—"ବିଧାତା ତୁମ୍ଭ କପାଳରେ ଲେଖିଛି ଯେ, ତୁମ୍ଭେ ସ୍ୱର୍ଗର ନନ୍ଦନ କାନନରେ ବିହାର କରିବ । ଏହା ଅନ୍ୟଥା ହୋଇ ନ ପାରେ ।"

୩୭ଣ ପଦ—"ତୁମ୍ଭେ ଯେଉଁ କାମିନୀ ସଙ୍ଗେ କେଳି କରିବାକୁ ମନ କରିବ, ମୋତେ ବିନୟ ନ ହେଉଣୁ ମୁଁ ସେହି ମୂର୍ତ୍ତି ଧାରଣ କରିବି ।"

୩୮ଣ ପଦ—ଶୂର୍ପଣଖାର ଉତ୍ତରରେ ରାମଚନ୍ଦ୍ର କହିଲେ, "ରେ ସୁମାଧର, ମୁଁ ଏକପତ୍ନୀ ବ୍ରତ ଗ୍ରହଣ କରିଅଛି । [ଅନ୍ୟ ସ୍ତ୍ରୀ ମୋର ଦରକାର ନାହିଁ ।]"

୩୯ଣ ପଦ—"ତୁ ବଡ଼ ବଂଶରେ ଜାତ, ପୁଣି ରାଜାର ଭଉଣୀ ଅଟୁ । ତୋର ଏପରି କାମୁକୀ ପରି ଆଚରଣ କରିବା ତ ଭଲ ନୁହେଁ ।"

୪୦ଣ ପଦ—"ଇନ୍ଦ୍ରର ସମ୍ପତ୍ତିରେ ମୋର କାର୍ଯ୍ୟ ନାହିଁ । କାରଣ ମୁଁ ଦେହରେ ଏତେ ଆଖି ବହି ପାରିବି ନାହିଁ । (ଇନ୍ଦ୍ର ପରସ୍ତ୍ରୀ ହରଣ କରି ବହୁ ନେତ୍ର ବହି ଅଛନ୍ତି । ମୁଁ ପର ସ୍ତ୍ରୀ ହରଣ କଲେ ତ ସେହି ଫଳ ପାଇବି) ।"

୪୧ଣ ପଦ—"ଇନ୍ଦ୍ର ବିଟଭାବରେ ଲମ୍ପଟୀ ହୋଇ ପର ସ୍ତ୍ରୀ ଅହଲ୍ୟାଠାରେ ଆସକ୍ତ ହେବାରୁ ଏପରି ସହସ୍ର ନେତ୍ର ଧାରଣ କଲେ । ତୁ କିନା କାରଣରେ ଅହଲ୍ୟା ପରି ପାଷାଣ ରୂପ ହୁଅ ନାହିଁ ।"

ବିନାଶନ ମୋ ବଲ୍ଲଭ ଶୀଘ୍ରେ ଚପଳ ।
ବିନାଶନରେ ଅମୃତ କରୁଁତ ତାଳ ।୪୨।
ବଡ଼ ମାନଷୀରୁ ଯେଣୁ ଦାନବୀ ବାଳୀ ।
ବସାଅ ହୃଦୟ ତୁଳପାତ୍ରରେ ତୁଳି ।୪୩।
ବିଶେଷେ ରତିରେ ଯେ ହୋଇବ ବହୁର ।
ବଣିକ ଭାବରେ ତହିଁ ବଣିଜ କର ।୪୪।
ବିଷ୍ଣୁପଦୀ ଜଳ ଯେତେ ନିର୍ମଳ ଯୋଷା ।
ବାରିଦ ଅଜଳ ଜଳେ ଚାତକ ଆଶା ।୪୫।
ବହ୍ନିକଣା ଗିଳା ଚକୋର ହେ ନାଗର !
ବିଧୁକର ସ୍ୱାଦୁ ଯେଣୁ ଲୋଭୀ ତହିଁର ।୪୬।

---

୪୨ଶ ପଦ—ବିନାଶନ—ଅର୍ଥାତ ମୃତ । ବଲ୍ଲଭ—ସ୍ୱାମୀ । ଚପଳ—ଶୀଘ୍ର । ବିନାଶନରେ— ନ ଖାଇ ।

୪୫ଶ ପଦ—ବିଷ୍ଣୁପଦୀ—ଗଙ୍ଗା । ଯୋଷା— ସ୍ତ୍ରୀ । ବାରିଦ—ମେଘ ଅଜଳ ଜଳ—ଘୋଳିଆ ପାଣି ।

୪୬ଶ ପଦ—ବହ୍ନିକଣା —ନିଆଁ ଝୁଲ । ବିଧୁକର—ଚନ୍ଦ୍ର କିରଣ ।

---

୪୨ଶ ପଦ – ସୂର୍ପଣଖା ଶୀଘ୍ର କହିଲା, "ମୋର ସ୍ୱାମୀ ମୃତ ହୋଇଅଛି । ଆଉ କିଏ ଶାପ ଦେଇ ମୋତେ ପାଷାଣ କରିବ ? ତୁମ୍ଭେ ଭୋଜନ ନ କରି [ଉପଭୋଗ ନ କରି] ମୋ ପରି ଅମୃତକୁ ହସ୍ତରୁ ଫିଙ୍ଗି ଦେଉଅଛ କାହିଁକି ?"

୪୩ଶ ପଦ—"ରାକ୍ଷସୀ ସ୍ତ୍ରୀ ମନୁଷ୍ୟ ସ୍ତ୍ରୀ ଠାରୁ ବଡ଼ ଅଟେ । ଏହା ତୁମ୍ଭ ହୃଦୟ ରୂପ ନିକିତିରେ ବସାଇ ଓଜନ କର ।"

୪୪ଶ ପଦ—"ରତିରେ କିଏ ଅଧିକ ହେବ ଏହା ବିଚାର କରି ବଣିକ ଭାବରେ ତାହାଠାରେ ବେପାର କର । (ବଣିଆ ରତି ପକାଇ ସୁନା ଓଜନ କରେ ଓ ଯେ ଅଧିକ ହୁଏ ତାକୁ କିଣି ବେପାର କରେ । ସେହିପରି ତୁମ୍ଭେ ଯାହାକୁ ଅଧିକ ରତି ନିପୁଣା ବିଚାରିବ, ତାହା ସହିତ କ୍ରୀଡ଼ା କରିବ )।"

୪୫ଶ ପଦ—ରାମଚନ୍ଦ୍ର ଉତ୍ତର କଲେ, "ହେ ରମଣି ! ଗଙ୍ଗାର ଜଳ ଯେତେ ନିର୍ମଳ ହେଲେ ସୁଦ୍ଧା ଚାତକ ପକ୍ଷୀର ଆଶା ତହିଁରେ ନ ଥାଏ । ମେଘର ଘୋଳିଆ ପାଣିକୁ ତାହାର ଆଶା ଥାଏ । (ସେହିପରି ତୁ ରତିନିପୁଣା ହେଲେ ମଧ୍ୟ ମୋ ମନ ନ ଯାଇ ସୀତା ପ୍ରତି ଆକୃଷ୍ଟ ହୋଇଅଛି )।"

୪୬ଶ ପଦ— ସୂର୍ପଣଖା କହିଲା, "ହେ ନାଗର ! ଅଗ୍ନିକଣା ଗିଳୁଥିବା ଚକୋର ପକ୍ଷୀ ଚନ୍ଦ୍ର କିରଣର ସ୍ୱାଦୁ ପାଇଲେ ତହିଁରେ ଲୋଭୀ

ବଶ୍ରେଣୀ ଅସୁରୀ ଏ ବଞ୍ଚନ ନ କର ।
ବିଷ୍ଣୁ ବଶ ଜଳନ୍ଧର ମନୋହାରୀର ।୪୭।
ବଟେଇ ଚଳ ଉଠି କୁଞ୍ଜେ କରିବା କେଳି ।
ବକ୍ତ୍ରା ହେଲେ ରାମ ସ୍ମିତ ଫଣ୍ଟାଳ ବାଳୀ ।୪୮।
ବକ୍ରାକ୍ଷି ମନୁଜେ ନାହିଁ ଅନୁଜେ ସୁହାଁ ।
ବୁଧ ସେ ମୋ ଆଜ୍ଞା କଲେ ହୋଇବ ନାହା ।୪୯।
ବାମଲୋଚନା ସଙ୍ଗ ତ ନାହିଁ ତାହାର ।
ବାମ ନୋହୁ ତହିଁ ଲଭିବ ସ୍ୱୀକାର ।୫୦।
ବିଲୋକି ସେ ଅଲୋକିତ ସୁନ୍ଦର ରୂପ ।
ବେଗେ ଯାଇ କାମୁକୀ ଲକ୍ଷ୍ମଣ ସମୀପ ।୫୧।

---

୪୯ଶତ୍ ପଦ— ବକ୍ରାକ୍ଷି—କୁଟିଳ ନୟନା । ମନୁଜେ —ମନୁଷ୍ୟମାନଙ୍କ ମଧ୍ୟରେ । ଅନୁଜ—ସାନଭାଇ । ବୁଧ—ପଣ୍ଡିତ ।
୫୦ଶତ୍ ପଦ—ବାମଲୋଚନା— ସ୍ତ୍ରୀ ।

---

ହୋଇଥାଏ । (ତୁମ୍ଭେ ମୋ ସହିତ ରତି କଲେ, କାଳେ କାଳେ ମୋ ପ୍ରତି ଅନୁକୂଳ ହେବ )।”

୪୭ଶ ପଦ—“ମୁଁ ଅସୁରୀ, ତେଣୁ ଭେଟଯୋଗ୍ୟା ନୁହେଁ,—ଏହା ଭାବି ମୋତେ ତୁଚ୍ଛ ଜ୍ଞାନ କର ନାହିଁ । ଦେଖ ଜଳନ୍ଧର ଅସୁରର ଭାର୍ଯ୍ୟା ବୃନ୍ଦାବତୀଠାରେ ବିଷ୍ଣୁ ବଶ ହୋଇଥିଲେ ।”

୪୮ଶ ପଦ—“ଉଠି କୁଞ୍ଜ ଭିତରକୁ ଚାଲି ଚଳ । ସେଠାରେ କେଳି କରିବା ।” ସୂର୍ପଣଖାର ଏ ବଚନ ଶୁଣି ରାମଚନ୍ଦ୍ର କହିଲେ, “ହେ ବାଳା ! କଟାଳ କର ନାହିଁ ।”

୪୯ଶତ୍ ପଦ—“ମୋର ଅନୁଜ ଲକ୍ଷ୍ମଣ ପରି ସୁନ୍ଦର ମନୁଷ୍ୟମାନଙ୍କ ଭିତରେ ଆଉ କେହି ନାହାନ୍ତି । ତାକୁ କଟୁ ଦୃଷ୍ଟିରେ ଚାହଁ । ସେ ପଣ୍ଡିତ ଲୋକ, ମୋର ଆଜ୍ଞା ଦେବା କଥା କହିଲେ, ସେ ତୋର ପତି ହେବ ।”

୫୦ଶତ୍ ପଦ—“ସେ ଭାଇର ସ୍ତ୍ରୀ ସଙ୍ଗମ ନାହିଁ । ତେଣୁ ସେ ତୋଠାରେ ପ୍ରତିକୂଳ ନ ହୋଇ ତୋ କଥା ଶୁଣିବା ମାତ୍ରକେ ରାଜି ହୋଇଯିବ ।”

୫୧ଶତ୍ ପଦ—ରାମଚନ୍ଦ୍ରଙ୍କଠାରୁ ଶୁଣି କାମୁକୀ ସୂର୍ପଣଖା ଲକ୍ଷ୍ମଣଙ୍କର ଅଲୌକିକ ସୁନ୍ଦର ରୂପ ଦେଖି ଶୀଘ୍ର ତାଙ୍କ ପାଖକୁ ଗଲା ।

ଅନୟୀ ହୋଇ ନକଷାତନୟୀ କହୁ ।
ବକ୍ତବ୍ୟ ତରୁଣ ରାମ ସେବକ ମୁହୁଁ ।୫୨।
ବ୍ରହ୍ମାଣ୍ଡେ ଏକ ରାଜନଭଗ୍ନୀ ହେବ କି ?
ଛନ୍ନ ଭୂମି-ଗୃହ ଜାତ-କନ୍ୟା ସେବକୀ ।୫୩।
ବସେ ସ୍ୱପ୍ନ ଯୋଗୀ ପ୍ରାୟ ନିଦ୍ରାକୁ ତେଜି ।
ବାହୁଡ଼ ରେ ବରାଙ୍ଗନା ମୋତେ ନ ଭଜ ।୫୪।
ବାହୁଡ଼ିଲା ସେ ଶେଷେ କାମବଶେ ଭୂଷିତା ।
ଅଲୋକୁ ମୋତେ ଯେମନ୍ତ ନଷ୍ଟଯୋଷିତା ।୫୫।
ବୀଭତ୍ସରସରେ ତବ ସ୍ୱାଧୀନଭର୍ତ୍ତା ।
ଅଯୋଗ କରିବ ରଖି ନ ପାରେ ଧାତା ।୫୬।

---

୫୨ଶତ୍ ପଦ—ନକଷାତନୟୀ—ସୂର୍ପଣଖା । ତରୁଣ—ଯୁବକ ।
୫୫ଶତ ପଦ—ନଷ୍ଟଯୋଷିତା—ନୃତ୍ୟକାରିଣୀ ବେଶ୍ୟା ।

---

୫୨ଶତ୍ ପଦ—ନିକଷାତନୟା ସୂର୍ପଣଖା ଲକ୍ଷ୍ମଣଙ୍କ ପାଖକୁ ଯାଇ ଅନୟ ଛଳରେ ନିଜ କଥା କହିଲା । ତା କଥା ଶୁଣି ତରୁଣ ଲକ୍ଷ୍ମଣ କହିଲେ, "ମୁଁ ରାମଙ୍କର ସେବକ ଅଟେ ।"

୫୩ଶତ୍ ପଦ—"ବ୍ରହ୍ମାଣ୍ଡମଧ୍ୟରେ ଯେ ସର୍ବଶ୍ରେଷ୍ଠ ରାଜାର ଭଗ୍ନୀ, ସେ ଭୂମି ଚଷୁ ଚଷୁ ଜାତ ହୋଇଥିବା କନ୍ୟାର ସେବକୀ ହେବ କି ? (ତୁମ୍ଭେ ମୋର ସ୍ତ୍ରୀ ହେଲେ ସୀତାଙ୍କର ଦାସୀ ହେବ, ମାତ୍ର ତା ଅନୁଚିତ । କାରଣ ତୁମ୍ଭେ ସର୍ବଶ୍ରେଷ୍ଠ ରାଜାଙ୍କ ଭଗ୍ନୀ ଓ ସୀତା ମାଟିତଳୁ ଜାତ କୃଷକ କନ୍ୟା )।"

୫୪ଶତ୍ ପଦ— 'ରେ ବରାଙ୍ଗନା ! ମୁଁ ନିଦ୍ରା ନ ଯାଇ ସ୍ୱପ୍ନରେ ଯୋଗୀ ପ୍ରାୟ ଜାଗି ବସେ । ଏପରି ଅବସ୍ଥାରେ ମୋତେ ମନ ନ ବଳାଇ ଫେରିଯାଅ ।"

୫୫ଶତ୍ ପଦ—ଲକ୍ଷ୍ମଣଙ୍କର ନାସ୍ତି ବାକ୍ୟ ଶୁଣି କାମାତୁରା ସୂର୍ପଣଖା ଶେଷରେ ଫେରିଯାଇ ରାମଚନ୍ଦ୍ରଙ୍କୁ କହିଲା, "ମୋତେ ବେଶ୍ୟାପରି କି ଅନ୍ୟ ପୁରୁଷମାନଙ୍କୁ ପଠାଉଅଛ ।"

୫୬ଶତ୍ ପଦ—"ତୁମ୍ଭର ପ୍ରିୟବନ୍ତା ଭାର୍ଯ୍ୟାକୁ ବୀଭତ୍ସରସରେ ରକ୍ତ, ମାଂସ ଖାଇ ଦେଇ ବିନାଶ କରିବି, ବିଧାତା ଏହା ଅନ୍ୟଥା କରି ନ ପାରିବ ।"

ବଢାଇଁ ହସ୍ତ ସୀତାର ନାଶ ଅର୍ଥରେ ।
ବହୁ ଲେଖ ଦେଲେ ତାକୁ ରାମ ଶ୍ଳେଷରେ । ୫୭ ।
ବାବୁ ନାକ ଶିରୀ ଦାନ ଯୋଗ୍ୟ ଯୋଷାକୁ ।
ବହୁର କାନନ କର ଅଲଙ୍ଘନକୁ । ୫୮ ।
ବଇଦେହୀଦାସୀ ଏ କି ଯୋଗ୍ୟ ହୋଇବ ?
ବଧୂରେ ଇନ୍ଦ୍ର ପ୍ରଶଂସା ତୁମ୍ଭେ ପାଇବ । ୫୯ ।
ବୋଧ ମତ ତାମାଙ୍କେ ନ ବୁଝି ହସିଲା ।
ବାହୁଡାଇବେ ନାହିଁ ତ ଅଙ୍ଗ ଲମ୍ପିଲା । ୬୦ ।

---

୫୮ଶତ ପଦ—ନାକଶିରୀ—ସ୍ୱର୍ଗସୁଖ, ନାସିକା ଶୋଭା । ଦାନ—ଛେଦନ, ଦେବା ।

୫୯ତମ ପଦ—ବଧୂରେ—ଦୈବ ଯୋଗରେ; ମୂର୍ଖଙ୍କ ମଧ୍ୟରେ ।

---

୫୭ଶତ ପଦ—ଏହା କହି ସୂର୍ପଣଖା ସୀତାଙ୍କ ବିନାଶ ପାଇଁ ହସ୍ତ ବଢାନ୍ତେ, ରାମଚନ୍ଦ୍ର ଶ୍ଳେଷୋକ୍ତିରେ ପତ୍ର ଲେଖି ସୂର୍ପଣଖାକୁ ଦେଲେ ।

୫୮ଶତ ପଦ—ସୂର୍ପଣଖା ବୁଝିବା ଅର୍ଥ—ହେ ବାବୁ ଲକ୍ଷ୍ମଣ ! ସ୍ୱର୍ଗ ସମ୍ପତ୍ତିକୁ ଦେବାପାଇଁ ଯୋଗ୍ୟ ଏ ଯେଉଁ ରମଣୀ, ଏହାକୁ ବୋଲ ଧରି ବନରେ ଏହା ସହିତ ବିହାର କର ।

ପ୍ରକୃତ ଅର୍ଥ—ହେ ବାବୁ ! ଏ କାମିନୀର ନାସିକା ଶୋଭା ଛେଦନ ଯୋଗ୍ୟ ଅଟେ ( ଏହାର ନାକ କାଟିବା ଉଚିତ ) । ଅଲଙ୍ଘନ ନ କରି ଏହାର କାନକୁ ବିଶେଷରୂପରେ ହରଣ କର ।

୫୯ତମ ପଦ—ସୂର୍ପଣଖା ବୁଝିବା ଅର୍ଥ—ଏ ଜଣେ ପ୍ରଧାନ ରାଜାର ଭଉଣୀ, କେଣୁ କାହିଁକି ଏ ସୀତାଙ୍କର ଦାସୀ ହେବ ? ଦୈବବଳରେ ତୁମ୍ଭେ ଏହାକୁ ବିବାହ କଲେ ଇନ୍ଦ୍ର ତୁଲ୍ୟ ପ୍ରଶଂସାଲାଭ କରିବ ।

ପ୍ରକୃତ ଅର୍ଥ—ଏ ସ୍ତ୍ରୀ କି ଗୁଣ ଯୋଗୁ ସୀତାଙ୍କର ଦାସୀ ହେବ ? (ଦାସୀ ହେବାର ମଧ୍ୟ ଅନୁପଯୁକ୍ତ) । ଏହାକୁ ଗ୍ରହଣ କଲେ, ତୁମ୍ଭେ ମୂର୍ଖଙ୍କମଧ୍ୟରେ ଶ୍ରେଷ୍ଠ, ଏହି ପ୍ରଶଂସା ପାଇବ । ( ମୂର୍ଖ ଶ୍ରେଷ୍ଠ ବୋଲି ନିନ୍ଦା ପାଇବ ) ।

୬୦ତମ ପଦ—ସୂର୍ପଣଖା କାମରେ ଅନ୍ଧ ହୋଇଥିବାରୁ ପତ୍ରର ପ୍ରକୃତ ଅର୍ଥ ବୁଝି ନ ପାରି ମନବୋଧ ହୋଇଥିବାରୁ ଆନନ୍ଦରେ ହସିଲା । ପୁଣି କହିଲା, "ଆଉ ବାହୁଡାଇବେ ନାହିଁ ତ ?"

ବୋଲେ ଦାଶରଥି ନାହିଁ ନାହିଁ ତକ୍ଷଣ ।
ତେଣୁ ଉତ୍ତର ଦେବାରେ ପଡ଼ି ଲକ୍ଷ୍ମଣ । ୨୧ ।
ବାହୁ ଟେକ ଉଠ ଚର୍କି ବାର୍ଯ୍ୟ ସଫଳ ।
ବାହେ ସତ ଏହିକ୍ଷଣି କରବ ବୋଲ । ୨୨ ।
ବାଳ ଧରୁଁ ବିଗୁରଲ କର୍ଣ୍ଣାଟ ନାରୀ ।
ବନ୍ଧ ସଂଯୋଗେ ନାୟକ କୁନ୍ତଳ ଧରି । ୨୩ ।
ବଢ଼େଇଗୀ ଏହାଙ୍କ ଦେଶେ ଏରୂପେ ପୁଂସେ ।
ବସୁଧାରେ ଧାଡ଼ୁଁ ଗଲେ ରଡ ପ୍ରକାଶେ । ୨୪ ।
ବଛେଦୁଂ ନାସା ଶ୍ରବଣ ଦୀର୍ଘ ରହିଲା ।
ବଧାତ୍ରୁ ଝିଙ୍କ ହରିଣୀ ଲକ୍ଷୀ ସହିଲା । ୨୫ ।

---

୨୧ତମ ପଦ -ରାମଚନ୍ଦ୍ର ଉତ୍ତର ଦେଲେ, "ନାହିଁ ନାହିଁ । (ପ୍ରକୃତ ଅର୍ଥ;—ତୁ ଯେ କହିଲୁ ବାହୁଡ଼ାଇବେ ନାହିଁ ? ତହିଁର ନାହିଁ ଶବ୍ଦ ନାହିଁ । ଅର୍ଥାତ୍ ବାହୁଡ଼ାଇବେ ) ।" ରାମଚନ୍ଦ୍ର ଦୁଇ ଅର୍ଥବୋଧକ ପଦ ଲେଖିବାର ପଡ଼ି ଲକ୍ଷ୍ମଣ ପ୍ରକୃତ ଅର୍ଥ ବୁଝିଲେ ।

୨୨ତମ ପଦ—ଲକ୍ଷ୍ମଣ ବାହୁଦ୍ୱୟ ଟେକ ଉଠିବାରୁ ସୂର୍ପଣଖା ମନରେ ବିଗୁରଲା, "ବାର୍ଯ୍ୟ ସଫଳ ହେଲା । ଏ ଯତ ଏହିକ୍ଷଣି ବାହୁଦ୍ୱୟରେ ମୋତେ କୋଳ କରବ ।"

୨୩ତମ ପଦ—ଲକ୍ଷ୍ମଣ ସୂର୍ପଣଖାର କେଶ ଧରନ୍ତେ, ସେ ବିଗୁରଲା, 'କର୍ଣ୍ଣାଟ ଦେଶୀୟ ନାରୀମାନେ ବନ୍ଧସଂଯୋଗ ସମୟରେ ପୁରୁଷର କେଶ ଧରଥାନ୍ତି ।'

୨୪ତମ ପଦ—'ଏହାଙ୍କ ଦେଶରେ କର୍ଣ୍ଣାଟ ଦେଶୀୟ ସଂଯୋଗ ପରି ପୁରୁଷମାନେ ନାରୀର କେଶ ଧରି ବୋଧ ହୁଏ ସଂଯୋଗ କରନ୍ତି ।' ଲକ୍ଷ୍ମଣ ତାକୁ ମାଟି ତଳେ ପକାନ୍ତେ, ସେ ବିଗୁରିଲା, 'ବର୍ତ୍ତମାନ ଏ ରତ କରିବେ ।'

୨୫ତମ ପଦ—ବିଧାତା ହରିଣୀକି ମାଡ଼ ବସି ବଦାରନ୍ତେ, ସେ ଯେପରି ରଡ଼ ଦଏ, ଲକ୍ଷ୍ମଣ ସୂର୍ପଣଖାର ନାସା କର୍ଣ୍ଣ ଛେଦନ କରନ୍ତେ ସୂର୍ପଣଖା ସେହିପରି ରଡ ଦଲା ।

ବିଦାରି ମୃଗୀ ଶାର୍ଦ୍ଦୂଳ ପିଙ୍ଗିଲା ଯିବ ।
ବିରୂପ କରି ପଠାଇ ଦେବେ ସେ ଜିବ । ୬୬ ।
ବିଦ୍ରାବ କ୍ଷିପ୍ରାର ରକ୍ତ ବସନ ବୁଢ଼ ।
ବାଟେ ପୁଷ୍ପିତ ମନ୍ଦାର ବୃକ୍ଷ କି ଉଢ଼ ? ୬୭ ।
ବାୟୁବେଗେ ଜନସ୍ଥାନେ ମିଳିତ ଯୋଷା ।
ବୋଲେ ଖର ଦେଖିକି କେ କଲା ଏ ଦଶା ? ୬୮ ।
ବିକାଳରେ କାଳ ହେବା ଶଙ୍କା ନ କରି ।
ବ୍ୟାଳମୁଖେ ଦେଲା କେଉଁ କରକୁ ଭରି ? ୬୯ ।
ବ୍ୟାଳ ବୋଲୁ ଅଛ କି ବାସୁକି ବଦନ ।
ବାଉ ସେ ଏମନ୍ତ ପ୍ରତେ କାହିଁ ତା ସ୍ଥାନ ? ୭୦ ।

---

୬୬ତମ ପଦ—ଶାର୍ଦ୍ଦୂଳ—ବ୍ୟାଘ୍ର ।
୬୭ତମ ପଦ—ବିଦ୍ରାବ—ବହି ପଡୁଥିବା ।
୬୯ତମ ପଦ—ବିକାଳରେ—ଅସମୟରେ । କାଳ—ମୃତ୍ୟୁ । ବ୍ୟାଳ—ସର୍ପ ।

---

୬୬ତମ ପଦ—ବ୍ୟାଘ୍ର ମୃଗୁଣୀକୁ ବିଦାରଣ କରି ଫିଙ୍ଗିଦେଲା ପରି ଲକ୍ଷ୍ମଣ ଶୂର୍ପଣଖାକୁ ବିରୂପ କରି ବେଗରେ ପଠାଇ ଦେଲେ ।

୬୭ତମ ପଦ—ଶୂର୍ପଣଖାର ନାସା ଓ କର୍ଣ୍ଣ ଛେଦନ ହୁଅନ୍ତେ ତାହାର ମୁଖରୁ ଜଳଧାରରେ ରକ୍ତ ବୋହିଲା । ସେ ରକ୍ତରେ ପିନ୍ଧିଥିବା ଲୁଗା ଜନ୍ତି ଗଲା । ସେ ସେଠାରୁ ପଳାଇଲାବେଳେ ମନେ ହେଲା, ଫୁଲ ଫୁଟିଥିବା ମନ୍ଦାର ବୃକ୍ଷ ପବନରେ ଉଡି ଯାଉଛି କି ?

୬୮ତମ ପଦ—ପବନ ବେଗରେ ଶୂର୍ପଣଖା ପଳାଇ ଯାଇ 'ଜନସ୍ଥାନ' ରାକ୍ଷସଙ୍କ ବାସସ୍ଥାନରେ ମିଳିଲା । ତାହାକୁ ଦେଖି ଖର ଦୈତ୍ୟ କହିଲା, "ରାଜ-ଜେମାଙ୍କୁ ଏ ଅବସ୍ଥା କିଏ କଲା ?"

୬୯ତମ ପଦ—"ଅକାଳରେ ମୃତ୍ୟୁ ଲଭିବାର ଭୟ ନ କରି କିଏ ସର୍ପ ମୁଖରେ ହସ୍ତ ପୂରାଇଲା ?"

୭୦ତମ ପଦ—"ସର୍ପ କହିବାରେ ପୁଣି ସାଧାରଣ ସର୍ପ ନୁହେଁ । ସର୍ପରାଜ ବାସୁକି ମୁହଁରେ ଯେ ହସ୍ତ ପୂରାଇଲା, ସେ ନିଶ୍ଚୟ ପାଗଳ ବୋଲି ପ୍ରତୀତ ହେଉଛି । ସେ କେଉଁଠାରେ ରହିଅଛି ?"

ବଂଶ ସଉମିତ୍ରୀ ଉକ୍ତେ ପଞ୍ଚବଟୀରେ ।
ବସା କରିଛନ୍ତି ଦଶରଥ କୁମରେ । ୭୧ ।
ବାମା ସେନା ବାମ ହେଲେ ମୁହିଁ ଗ୍ରାସନ୍ତେ ।
କହି ଦଣ୍ଡ ଦଣ୍ଡକରେ ଦଣ୍ଡକ ମୋତେ । ୭୨ ।
ବଳ ସାର୍ଜିଣ ଦୂଷଣ ତ୍ରିଶିର ଖର ।
ବାହାର ବୀର ଡାକରେ ଉଚ୍ଛନ୍ନ ସୁର । ୭୩ ।
ବ୍ୟାକୁଳ ଭଯ୍ୟେ ତ୍ରିଦଶ ଲୁଟିବେ ସ୍ୱର୍ଗ ।
ବେପଥୁବଶ ହେଲା ସତ୍ୱରେ ଧରା । ୭୪ ।
ବସର୍ଜିନେ ନଳୀ ଗୁଳ ସୁର ଭାବନ୍ତି ।
ବଂଶେ ମୋ ବାଧୀ ମୋତେ କି ଲାଞ୍ଛ ଭଉନ୍ତି ?

---

୭୪ତମ ପଦ—ତ୍ରିଦଶ—ଦେବତାମାନେ । ବେପଥୁ—କମ୍ପନ ଧରା—ପୃଥିବୀ ।

୭୫ତମ ପଦ—ସୁର—ସୂର୍ଯ୍ୟ ।

---

୭୧ତମ ପଦ—ଖର ରାକ୍ଷସର ଏହି କଥା ଶୁଣି ରାବଣ ଭଉଣୀ ସୂର୍ପଣଖା କହିଲା, "ପଞ୍ଚବଟୀ ବନରେ ଦଶରଥ ରାଜାଙ୍କର ଦୁଇ ପୁଅ ବସା କରି ରହି ଅଛନ୍ତି ।"

୭୨ତମ ପଦ—"ସେ ତାଙ୍କ ସ୍ତ୍ରୀଙ୍କୁ ସଙ୍ଗରେ ନେଇ ରହି ଅଛନ୍ତି । ମୁଁ ସେ ସ୍ତ୍ରୀକୁ ଗ୍ରାସ କରିବାକୁ ଯାନ୍ତେ ସେ ପ୍ରତିକୂଳ ହେଲେ । ଦଣ୍ଡକାରଣ୍ୟରେ ଦଣ୍ଡଧର ମଧ୍ୟରେ ମୋତେ ଏ ଦଣ୍ଡ ଦେଲେ ।"

୭୩ତମ ପଦ—ଦୂଷଣ, ତ୍ରିଶିର, ଖର ଏହି ତିନି ଅସୁରେ ସୈନ ସଜ କରି ବାହାର ହେଲେ । ତାଙ୍କ ବୀର ଡାକରେ ଦେବତାମାନେ ଭୀତ ହେଲେ ।

୭୪ତମ ପଦ—'ଏମାନେ ସ୍ୱର୍ଗ ଲୁଟି ନେବେ ସତ ?'—ଏହା ଭାବି ଦେବତାମାନେ ବ୍ୟାକୁଳ ହେଲେ । ତାଙ୍କ ପାଦଭରରେ ପୃଥିବୀ ଦେବୀ ଶୀଘ୍ର କମ୍ପମାନ ହେଲା ।

୭୫ତମ ପଦ—ଖର ଦୂଷଣାଦିଙ୍କ ସୈନ୍ୟମାନେ ନଳୀରୁ ଗୁଳି ଛାଡନ୍ତେ ସୂର୍ଯ୍ୟ ଭାବନ୍ତି, 'ମୋ ବଂଶର ରାମଚନ୍ଦ୍ର ବାଧୀ ହେବାରୁ ଏମାନେ ମୋତେ ଲାଞ୍ଛ କରୁଅଛନ୍ତି କି ?'

ବଳଟିର ପୂର୍ଣ୍ଣ ଅମ୍ବୁ ଧୂଳି ଉଡ଼ିଲ ।
ବିମ୍ବ ଅଚ୍ଛାଦନେ ଶଙ୍କା ରବିଂ ସ୍ଫୁରିଲ ।୭୬।
ବସୁଧାସୁତାଙ୍କୁ ସୌମିତ୍ରେୟ ରକ୍ଷିତ ।
ବିରାଧବଧ ପଣ୍ଡିତ ଯୁଦ୍ଧକୁ ଗତ ।୭୭।
ବର୍ଷୁକ ଘନ ସମ୍ବନ୍ଧେ ରକ୍ଷେ ଘୋଟିଲେ ।
ବାଣଗଣ ଜଳଧାର ପତନ କଲେ ।୭୮।
ବିଜୁଳି ସେନାମା ଖଡ୍ଗ ଝଲକ ପ୍ରଦା ।
ବଜ୍ରପାତ ଭୟଙ୍କର ଶିଳୁ ଗଦା ।୭୯।
ବହ୍ନିଜାତ ତହିଁଙ୍କୁ ହୁଅନ୍ତେ ଘାତ ।
ବଜ୍ରଯୁକ୍ତ ପରାଜେ ରଘୁନାୟକ ।୮୦।
ବରଣ ତନୁ କବାଟ ପୃଷ୍ଠ ହୃଦୟ ।
ବାହୁ ସ୍ତମ୍ଭ ଉରୁ ଅର୍ଗଳରେ ଉଦୟ ।୮୧।

---

୭୮ତମ ପଦ—ବର୍ଷୁକ ଘନ—ବର୍ଷଣକାରୀ ମେଘ ।
୮୧ତମ ପଦ—ବରଣ—ପ୍ରାଚୀର । ତନୁ—ଦେହ ।

---

୭୬ତମ ପଦ—ସେହି ସୈନ୍ୟ ବଳ ଚଳିତ ପୂର୍ଣ୍ଣ ତର ଅମ୍ବରରୁ ଧୂଳି ଉଡ଼ିଲା । ସେ ଧୂଳିରେ ସୂର୍ଯ୍ୟମଣ୍ଡଳ ଆଚ୍ଛାଦିତ ହୁଅନ୍ତେ ସୂର୍ଯ୍ୟଙ୍କର ଭୟ ଦୂର ହେଲା ।

୭୭ତମ ପଦ—ଏହାପରେ ରାକ୍ଷସ ସୈନ୍ୟ ଆସିବାର ଦେଖି ବିରାଧଅରି ରାମଚନ୍ଦ୍ର ସୀତାଙ୍କୁ ଲକ୍ଷ୍ମଣଙ୍କ ହାତେ ଜଗାଇ ଯୁଦ୍ଧକୁ ଗଲେ ।

୭୮ତମ ପଦ—ରାକ୍ଷସ ସୈନ୍ୟମାନେ ବର୍ଷୁକ ମେଘ ପ୍ରାୟ ରାମଚନ୍ଦ୍ରଙ୍କୁ ବେଢ଼ି ଜଳଧାର ସମାନ ଶରସମୂହ ବୃଷ୍ଟିକଲେ ।

୭୯ ଓ ୮୦ତମ ପଦ—ସୈନ୍ୟମାନଙ୍କର ଖଡ୍ଗର ତେଜ ବିଜୁଳି ପ୍ରାୟ ଦେଖାଗଲା ଏବଂ ଗଦା ଓ ଶୂଳ ପ୍ରଭୃତିର ପତନ ଶବ୍ଦ ବଜ୍ରପରି ଶୁଣାଗଲା । ଅସ୍ତ୍ର ଶସ୍ତ୍ର ଘର୍ଷଣରେ ଅଗ୍ନି ଜାତ ହେଲା, ବଜ୍ରଯୁ ବୃଷ୍ଟିରେ ଅକ୍ଷୁଣ୍ଣ ପର୍ବତ ନିଷ୍ଫଳ ହେଲା ପରି ରାମଙ୍କଠାରେ ଖଡ୍ଗ, ତ୍ରିଶୂଳ, ଗଦା ପ୍ରଭୃତି ଅସ୍ତ୍ର ଶସ୍ତ୍ର ନିଷ୍ଫଳ ହେଲା ।

୮୧ ଓ ୮୨ ତମ ପଦ—ଦୁର୍ଗରୂପ ରାମଚନ୍ଦ୍ରଙ୍କ ଦେହ ବଳପ୍ରାଚୀର, ବକ୍ଷସ୍ଥଳ କବାଟ ପ୍ରାୟ, ଭୁଜଦ୍ୱୟ ଦ୍ୱାରବନ୍ଧ, ଉରୁ ଅର୍ଗଳ ପ୍ରାୟ ଅଟେ । ସେହି

ବେଷ୍ଟନରେ ରହି ସହି ବହୁତ ଘାତ।
କ୍ରୋଧାନ୍ୱିତ ଅସ୍ତ୍ର ମୋଚନରେ ପ୍ରବୃତ୍ତ। ୮୨।
ଜଳ ସିନ୍ଧୁ ଦଳକୁ ଅଗସ୍ତ୍ୟ ପରି।
ବତାସ କି ଶିବ ଶିର ତାଳଫଳର। ୮୩।
ଦଣ୍ଡକ ବଇଦ ହୋଇ ସେ ବନ-କାୟାକୁ।
ସଂଶୋଧିଲେ ଦୂଷଣକୁ ଗୁଣ ପ୍ରଭୁଙ୍କ। ୮୪।
ବ୍ୟାଘ୍ର ନଖେ କନ୍ଦର୍ପଣ ନାସ୍ତିକସାର।
ଛଡ଼ାଇ ତଳେ ପକାଇ ଉପିଟେ ଖର। ୮୫।
ବେଗରେ ମନ୍ତ୍ରରେ ଯୁକ୍ତ ଗୁଣିଆ ଘେନି।
ଦକୁର ହୋଇଲା ଶୂର୍ପଣଖା ଡାକିନୀ। ୮୬।
କାହୁଡ଼ାକେ ରାଘବ ଜନସଦନେ।
ମନ୍ଦ ମନ୍ଦ ହାସ ରହିଅଛି ବଦନେ। ୮୭।

---

୮୩ତମ ପଦ—ଜଳସିନ୍ଧୁ—ସୈନ୍ୟସମୁଦ୍ର।
୮୫ତମ ପଦ—ନାସ୍ତିକ ସାର—ଶ୍ରେଷ୍ଠ ଶର। ଖର—ଗଧ।

---

ରାମଚନ୍ଦ୍ର ସୈନ୍ୟ ଭିତରେ ରହି ବହୁତ ଘାତ ସହିବା ଯୋଗେ କ୍ରୋଧଯୁକ୍ତ ହୋଇ ଅସ୍ତ୍ର ପ୍ରହାର କଲେ।

୮୩ତମ ପଦ—ସୈନ୍ୟରୂପୀ ସମୁଦ୍ରକୁ ରାମଚନ୍ଦ୍ରଙ୍କ ଶର ରୂପ ଅଗସ୍ତ୍ୟ ଶୋଷ କଲା। କି ଶିବ ରାକ୍ଷସର ଶିର ବତାସରେ ତାଳ ଝଡ଼ିଲା ପ୍ରାୟ ରାମଙ୍କ ଶରରେ ଝଡ଼ି ପଡ଼ିଲା।

୮୪ତମ ପଦ—ରାମଚନ୍ଦ୍ର ବଇଦ ପରି ଦଣ୍ଡକାରଣ୍ୟ ରୂପ କାୟାକୁ ଦୂଷଣ ରାକ୍ଷସ ରୂପ ଦୋଷରୁ ନିଜ ଶୌର୍ଯ୍ୟ ଗୁଣରେ ସଂଶୋଧନ କରି ଦେଲେ। (ଯେପରି ବୈଦ୍ୟ ପଣ୍ଡିତ କାୟାକୁ ଦୋଷ କାଟି ଦେଇ କାୟାକୁ ସୁସ୍ଥ କରି ଦିଏ, ସେହିପରି ରାମଚନ୍ଦ୍ର ଦୂଷଣକୁ ନାଶ କରି ଦଣ୍ଡକାରଣ୍ୟକୁ ଉତ୍ତମ କରି ଦେଲେ)।

୮୫ତମ ପଦ—ରାମଚନ୍ଦ୍ରଙ୍କ ଶ୍ରେଷ୍ଠ ଶର ବ୍ୟାଘ୍ର ପରି ଚର୍ମ ଖାଇ ଗଧରୂପୀ ଖର ଅସୁରକୁ କଅଁଳ ମାଂସକୁ ଛଡ଼ାଇ ତଳେ ପକାଇ ଦେଲା।

୮୬ତମ ପଦ—ରାମଚନ୍ଦ୍ର ଅସ୍ତ୍ର ପ୍ରୟୋଗରେ ମନ୍ତ୍ର ଯୁକ୍ତ ହୋଇଥିବାରୁ ଗୁଣିଆ ମନ୍ତ୍ର ପାଠ କଲେ ଯେପରି ଡାକିଣୀମାନେ ଅଁ କରି ପଳାଇଯାନ୍ତି, ସେହିପରି ଶୂର୍ପଣଖା ପଳାଇଗଲା।

୮୭ତମ ପଦ—ତତ୍ପରେ ରାମଚନ୍ଦ୍ର ପଞ୍ଚବଟୀକୁ ଫେରି ଗଲେ। ସେତେବେଳେ ତାଙ୍କ ମୁଖରେ ମନ୍ଦ ମନ୍ଦ ହାସ ଲାଗି ରହିଥାଏ।

ବନରୁହରୁ ଜନମ ହୋଇ ଭୃଙ୍ଗାର ।
ବସୋଧୀ ନାହିଁ ଅଧିକେ ବଶି ରୁଚିର ।୮୮।
ବର୍ଷ୍ମ ସ୍ବେଦେ ରକ୍ତପାତେ ପବନବଳେ ।
ବଦ୍ରୁମ ଅଙ୍କୁର ଦେଇ ମର୍କତଶିଳେ ।୮୯।
ବଶିବ ବର୍ମକୁତରୁ ଅଦ୍ଭୁତ ହୋଇ ।
ତାହାର ଗନ୍ଧକୁ ରାମ ଅନୁଜ ଦୁଇ ।୯୦।
ବଖ୍ୟାତ ଓଳଗ ବହୁ ମହାସନ୍ତୋଷ ।
ବଧୌତ ଅଙ୍ଗ ସବୁକେ ଜାନକୀ- ଈଶ ।୯୧।
ବଯ୍ୟାଖୋଇ ପଦେ ଛନ୍ଦ ଅତି ମାଧୁରୀ ।
ସାରବର ଉପେନ୍ଦ୍ର ଭଞ୍ଜ ବସ୍ତୁର ।୯୨।

---

୮୭ତମ ପଦ—ପଙ୍କଜବଦନ—ଭୃଙ୍ଗଆସର । ବଦନ—ମୁଖ ।
୮୮ତମ ପଦ—ବନରୁହ—ପଦ୍ମ । ଭୃଙ୍ଗାର—ସ୍ବର୍ଣ୍ଣଝରି । 
୮୯ତମ ପଦ—ବର୍ଷ୍ମ—ଦେହ । ସ୍ବେଦ—ଝାଳ । ବଦ୍ରୁମ—ପୋହଳା ।

---

୮୮ତମ ପଦ—ପଦ୍ମରୁ ତାଦର ଜାତ ହୋଇ ତାହାର ଶନ୍ଦ ହୋଇଥାଏ, ମାତ୍ର ସେ ସ୍ବେଦବିନ୍ଦୁ ରୂପ ତାଦର ମୁଖପଦ୍ମରୁ ଜାତ ହୋଇ ପୁରା ଶନ୍ଦ ହୋଇ ନାହିଁ । ବରଂ ଅଧିକରେ ମନୋହରତା ବଢ଼ାଇ ଅଛି ।

୮୯ତମ ପଦ—ଦେହ ଝାଳଯୁକ୍ତ ହୋଇଥିବାରୁ ଓ ତହିଁରେ ବାୟୁଯୋଗେ ଅସି ରକ୍ତବିନ୍ଦୁମାନ ଲଗିଥିବାରୁ, ତାହା ମରକତ ଶିଳାରେ ପୋହଳା ଗଛ ରଳ ପ୍ରାୟ ଶୋଭା ଦେଖାଯାଉ ଅଛି ।

୯୦ତମ ପଦ—ରାମଚନ୍ଦ୍ର ଅଦ୍ଭୁତ ବର୍ମ ଧରିବାରୁ ସିନା ଏପରି ଅଦ୍ଭୁତ ଘଟନା ଘଟିଲା । (ମରକତ ଶିଳାରୁ ପୋହଳା ଗଜରିବ) । ରାମଙ୍କୁ ଦେଖି ସୀତା ଓ ଲକ୍ଷ୍ମଣ ପଙ୍କଜ ଗନ୍ଧରୁ ତାହାବିଲେ ।

୯୧ତମ ପଦ—ରାମଙ୍କୁ ଦେଖି ସୀତା ଓ ଲକ୍ଷ୍ମଣ ଦୁହେଁ ମହାସନ୍ତୋଷ ହୋଇ ଓଳଗିଲେ । ରାମ ଗୋଦାବରୀ ଜଳରେ ସର୍ବାଙ୍ଗ ଧୌତ କଲେ ।

୯୨ତମ ପଦ—ଏହି ଛନ୍ଦ ବୟାଖୋଇ ପଦରେ ସାରବର ଉପେନ୍ଦ୍ର ଭଞ୍ଜ ଅତି ମାଧୁରୀର ସହିତ ବର୍ଣ୍ଣନ କଲେ ।

## ଚତୁର୍ବିଂଶ ଛାନ୍ଦ

### ରାଗ—କମ୍ଭକାମୋଦୀ

ବିନାଶ ନାସା ଶ୍ରବଣ ସୂର୍ପଣଖା ପ୍ରବେଶ ଲଙ୍କାର ।
ବୃକ୍ଷ ପାଟଳୀରୁ ଫୁଲ ଝାଡ଼ି ଉଡ଼ି ଯାଉଛି କି କୀର ?
ବହେ ନେତ୍ରୁ ଅଶ୍ରୁ ପତ୍ରୁ କି ଖସୁଛି ଝଡ଼ି ତୁଷାର ।
ବାତବାୟୁରେ ଧୈର୍ଯ୍ୟ ମୂଳ ଉପୁଡ଼ି ହେଲା ପ୍ରକାର ।୧।
ବିଂଶପାଣି ଅଗେ ପଡ଼ି ପୃଚ୍ଛି ବେଗେ ଏ ଦଣ୍ଡ କେ ଇଚ୍ଛି ।
ଭଗ୍ନୀ ତୁ ମୋର ନ ଜାଣି ସଂସାରମଧ୍ୟରେ କେ ଅଛି ?
ବୃଷା ବୃଷାସନ ବାସୁକି ବିଧାନ ନୋହେ ଏ ଜଗତେ ।
ବନ୍ଦୀ ସୁତେ କୈଳାସ ଉପାଡ଼ନ୍ତେ ଜାଣନ୍ତି ସେ ମୋତେ ।୨।

---

୧ମ ପଦ – କୀର—ଶୁକପକ୍ଷୀ ।

୨ୟ ପଦ— ବିଂଶପାଣି—ରାବଣ । ବୃଷା—ଇନ୍ଦ୍ର । ବୃଷାସନ—ମହାଦେବ ।

---

## ଚତୁର୍ବିଂଶ ଛାନ୍ଦ

୧ମ ପଦ—ନାସା ଓ ଶ୍ରବଣ ଛେଦିତ ହୋଇଥିବା ସୂର୍ପଣଖା ଯାଇ ଲଙ୍କାପୁରରେ ପ୍ରବେଶ ହେଲା । ସେ ଶୀଘ୍ର ଗତିରେ ଗଲାବେଳେ ବୋଧହେଲା, ପାଟଳି ବୃକ୍ଷରୁ ଫୁଲସବୁକୁ ଝଡ଼ାଇ ଦେଇ ଶୁକପକ୍ଷୀ ଉଡ଼ିଯାଉଛି କି ? ଶୀତରେ ପାଟଳିପତ୍ରରେ ପଡିଥିବା କାକର ପତ୍ରରୁ ଖସିପଡିଲା ପ୍ରାୟ ତା ନେତ୍ରରୁ ଲୋତକ ବହୁଅଛି, ବତାସ ପବନରେ ପାଟଳି ବୃକ୍ଷଉପୁଡି ପଡିଲା ପରି ସୂର୍ପଣଖାର ଧୈର୍ଯ୍ୟ ବୃକ୍ଷ ଉପୁଡ଼ି ପଡିଲା ।(ସୂର୍ପଣଖାର ଦେହ ପାଟଳି ବୃକ୍ଷ, କର୍ଣ୍ଣ ଓ ନାସିକାରୁ ବନ୍ଧ ବନ୍ଧ ହୋଇ ଖସି ପଡୁଥିବା ରକ୍ତ ପାଟଳି ଫୁଲ ସଙ୍ଗେ ଉପମିତ )

୨ୟ ପଦ—ସୂର୍ପଣଖା ଯାଇ ରାବଣ ଅଗ୍ରତରେ ପଡ଼ିଯାନ୍ତେ, ସେ ଶୀଘ୍ର ପଚାରିଲା, "ତୋତେ ଏ ଦଣ୍ଡ କିଏ ଦେଲା ? ତୁ ମୋର ଭଉଣୀ, ଏହା ସଂସାରମଧ୍ୟରେ କିଏ ନ ଜାଣିଛି ? ସ୍ୱର୍ଗର ଇନ୍ଦ୍ର,ମର୍ତ୍ତ୍ୟର ମହାଦେବ,ପାତାଳର ବାସୁକିଙ୍କ ଦ୍ୱାରା ଏହା ଘଟିବା ସମ୍ଭବ ନୁହେ । କାରଣ ମୋ ପୁତ୍ରଦ୍ୱାରା ବନ୍ଦୀ ହୋଇଥିବାରୁ ଏବଂ ମୁଁ କୈଳାସ ପର୍ବତ ଉପାଡ଼ନ୍ତେ ଇନ୍ଦ୍ର, ମହାଦେବ ଓ ବାସୁକି ମୋତେ ଜାଣିଛନ୍ତି ।"

ବାଜିବଦନବର ଶିଷ୍ୟ ପଣ୍ଡିତ କରିବ ପରବୋଧ ।
ବଡ଼ି ବ ରୋଗ ଏ ଜଣା ଦେଲ ରୋଗ ନ ଦେଲେ ଔଷଧି ।
ବୋଇଲା ଅନୁଜା ନାଗଜାତ ରାଜା ଜଗତବଳସ୍ତି ।
ଏହୁ କି ହେବ ନେଇ ମଦେ ମୁଦ୍ରିତ ଗୂଢଚକ୍ଷୁ ପର ।୩।
ବାର୍ତ୍ତାବହ ହୀନ ବସ୍ତୁ ସ୍ଥାନମାନ ଗୋଚର ହେବାକୁ ।
ବଧି ନିଶିର ଦୂଷଣ ଖର ମୋତେ ଏ ଦଣ୍ଡ ଦେବାକୁ ।
ବନୌକା ବେଶେ ନାମ ରାମ ଲକ୍ଷ୍ମଣ ଅଯୋଧ୍ୟା ନରେଶ ।
ବେନିକୁମର ବାମା ତାଙ୍କ ସଙ୍ଗର ଦଣ୍ଡକେ ନିବାସ ।୪।
ବ୍ରହ୍ମା କୋଟିଏ କନ୍ୟା ପର ଗୋଟିଏ ଗଢ଼ିବେ କି କର ।
ବ୍ରହ୍ମାଣ୍ଡ ଲକ୍ଷରେ ଖୋଜିଲେ ଲକ୍ଷ୍ୟରେ ନ ଥିବ ସୁନ୍ଦରୀ ।

---

୩ୟ ପଦ—ବାଜିବଦନବର—ଅଶ୍ୱିନୀକୁମାର ( ସ୍ୱର୍ଗବୈଦ୍ୟ ) । ଶିଷ୍ଟ—ସମସ୍ତ । ଅନୁଜା—ସାନ ଭଉଣୀ । ମଦେ—ଗର୍ବରେ ।

୪ର୍ଥ ପଦ—ବାର୍ତ୍ତାବହ—ଦୂତ । ବନୌକା—ବନବାସୀ, ଋଷି । ବାମା—ସ୍ତ୍ରୀ ।

---

୩ୟ ପଦ—"ମୁଁ ଅଟେ ସ୍ୱର୍ଗବୈଦ୍ୟ ଅଶ୍ୱିନୀକୁମାରଙ୍କ ସମସ୍ତ ନକ୍ଷ ଚରିତ୍ରବେଦ୍ୟ କି ସେହ ହୋଇ ବଡ଼ ବଡ଼ ରୋଗ ଏ ଜଣା ବଟଇ; ନାକ କାନ ଛେଦନ—ସେଥିପାଇଁ କିସ ଔଷଧ ନ ଦେଲେ ତାହାଙ୍କୁ ?" ଏହା ଶୁଣି ସାନ ଭଉଣୀ ସୂର୍ପଣଖା କହିଲା, "ରାଜାମାନେ ନାଗସର୍ପଙ୍କ ପରି ଜଗତର ଶତ୍ରୁ ଅଟନ୍ତି, ତୁମ୍ଭର ଚକ୍ଷୁ ଥାଇ କା ଫଳ ହେବ ? ଗର୍ବରେ ତା ମୁଦ୍ରିତ ହୋଇ ଯାଇଛି । ସେଥିପାଇଁ ତୁମ୍ଭର ଗୂଢଚକ୍ଷୁ (ଚଷମା) ଦେବା ଦରକାର ପଡୁଛି ।"

୪ର୍ଥ ପଦ—"ଲୋକଙ୍କ ହେଲେ ଗୂଢଚକ୍ଷୁ ଲଗାଇ ଯେପରି ଦେଖି ପାରନ୍ତି, ସେହିପରି ରାଜାମାନେ ଦୂତରୂପ ଗୂଢଚକ୍ଷୁ ଦ୍ୱାରା ସଂସାରର କଥାମାନ ଜାଣିପାରନ୍ତି । ତୁମ୍ଭର ଦୂତରୂପ ଗୂଢଚକ୍ଷୁ ନ ଥିବାରୁ ତୁମ୍ଭେ କିଛି ଜାଣିପାରୁ ନାହିଁ । ଏ ନିଶିର, ଦୂଷଣ ଓ ଖର ଏ ତିନି ରାକ୍ଷସଙ୍କୁ ବିନାଶ କରି ମୋତେ ଏ ଦଣ୍ଡ ଦେବାପାଇଁ ଅଯୋଧ୍ୟା ଦେଶର ନରପତି ଦଶରଥଙ୍କ ଦୁଇ ପୁଅ ଗୋଟିଏ ସ୍ତ୍ରୀ ସଙ୍ଗରେ ବେନି ବନବାସୀ ହୋଇ ଦଣ୍ଡକାରଣ୍ୟରେ ରହିଅଛନ୍ତି ।

୫ମ ପଦ—"କୋଟିଏ ବ୍ରହ୍ମା ମିଳିତ ହୋଇ ସେହି ସ୍ତ୍ରୀପରି ଆଉ ଗୋଟିଏ ସ୍ତ୍ରୀ ଗଢ଼ି ପାରିବେ ନାହିଁ । ଲକ୍ଷ ସଂଖ୍ୟକ ବ୍ରହ୍ମାଣ୍ଡରେ ଖୋଜିଲେ ସେ ସ୍ତ୍ରୀ ସଦୃଶ ସୁନ୍ଦରୀ ଆଉ ମିଳିବେ ନାହିଁ । ମୁଁ ଦେଖିଛି,—ରମ୍ଭା, ଉର୍ବଶୀ ତା ଆଗରେ ଫିକି

ଏତେ ନୃତ୍ୟେ ଅସି ରମ୍ଭା ଉର୍ବଶୀ ତୋ ଅଗେ ଓହ୍ଲାସିଛନ୍ତି ।
କନକାମଣି ଦାସୀପଣେ ନ ଗଣି ମୋ ମନେ ରଖିଛି । ୫ ।
ବଦନ ଓଷ୍ଠ ସୁଷମା ଭରୁ ପୃଷ୍ଟ ପୂର୍ଣ୍ଣମୀ ପ୍ରାଚୀକି ।
ବିଧୁ ବାଳାର୍କ ବ୍ୟାଜେ ରୌପ୍ୟ ମାଣିକ୍ୟ ସ୍ଥାଳୀକି ରଖ କି ?
ବନ୍ଦାଣ ମାସରେ ଉଭେ ବେ ଉତ୍ସବେ ବେ ଶାଟୀ ବନ୍ଦାଇ ।
ବିହଙ୍ଗ ଅଳୀ ଦ୍ବାରେ ହୁଳହୁଳୀ ଚର୍ଚ୍ଚିବ କ ଦେଇ । ୬ ।
ବଦନ ଶଙ୍ଖ ନୋହୁବା ହେବା ଯୋଷ ଏକାଳ ସୁବୃତ୍ତ ।
ବାସରମୁଖେ ସନ୍ଧ୍ୟାରେ ଭ୍ରମି ଦୁଃଖେ ଦେଖନ୍ତି ସେ ଲଭ ।
ବିଭୂଷା ସୁବର୍ଣ୍ଣ ସେ ସହସ୍ରେ ବାନ ପିଞ୍ଜର ଘର ରେ ।
ବର୍ଣ୍ଣିବୁ କାଞ୍ଚନ ଦଶେ ଏତେ ବାନ ଥାଇ ତା ଶସ୍ତ୍ରରେ । ୭ ।

---

୬ଷ୍ଠ ପଦ—ସୁଷମା—ପରମା ଶୋଭା ବା ଅତ୍ୟନ୍ତ ଶୋଭା । ପ୍ରାଚୀ—ପୂର୍ବଦିଗ । ବିଧୁ—ଚନ୍ଦ୍ର । ବାଳାର୍କ—ବାଳସୂର୍ଯ୍ୟ । ବିହଙ୍ଗଅଳୀ—ପକ୍ଷୀର ଶ୍ରେଣୀ ।

୭ମ ପଦ—ସୁବୃତ୍ତ—ମନୋହର । ବାସରମୁଖେ—ସକାଳେ । ବିଭୂଷା—ଅଳଙ୍କାର । ପିଞ୍ଜର—ପିତ୍ତଳ । ବାନ—ତେଜ ।

---

ନୃତ୍ୟ କରନ୍ତି । ମାତ୍ର ସେ ସ୍ତ୍ରୀର ହୃଦୟ ଦାସୀପଣକୁ ମଧ୍ୟ ଏମାନେ ଗଣନା ହୋଇ ପାରିବେ ନାହିଁ ।”

୬ଷ୍ଠ ପଦ— “ସେ ସ୍ତ୍ରୀର ମୁଖ ଓ ଓଷ୍ଠର ସୌନ୍ଦର୍ଯ୍ୟ ଦେଖି ମନେ ହୁଏ, ମାସକରେ ଥରେ ପୂର୍ଣ୍ଣିମା ପୂର୍ଣ୍ଣଚନ୍ଦ୍ରରୂପ ରୂପାଥାଳିରେ ଓ ପ୍ରତିଦିନ ସକାଳେ ପୂର୍ବଦିଗ ବାଳସୂର୍ଯ୍ୟରୂପ ମାଣିକ୍ୟଥାଳିରେ ଉତ୍ସୁକ ମନରେ ତାଙ୍କ ମୁଖ ଓ ଓଷ୍ଠକୁ କଳ୍ପନା କରନ୍ତି କି ? ପୁଣି ପୂର୍ବଦିଗ କଳ୍ପନା କଲାବେଳେ ପକ୍ଷୀସମୂହ ବଗର ଶ୍ରେଣୀ ରୂପେ ବୂଇଦେଲ ହୁଳହୁଳି ଦେଉଥାନ୍ତି ?”

୭ମ ପଦ— “ପୂର୍ଣ୍ଣଚନ୍ଦ୍ର ଓ ବାଳସୂର୍ଯ୍ୟ ସକାଳେ ଓ ସନ୍ଧ୍ୟା ସମୟରେ ଅଧିକ ସୁନ୍ଦର ଦେଖା ଯିବାରୁ ତାଙ୍କେ ମନେ କରିବେ ଯେ, ଅମେ ସେ ସ୍ତ୍ରୀ ମୁଖ ସହିତ ସମାନ, ସେଥିପାଇଁ ପ୍ରାତଃକାଳରେ ଓ ସନ୍ଧ୍ୟା ସମୟରେ ଦେବାଳୟରେ ବାଜୁଥିବା ଶଙ୍ଖ କହୁ ଏ,—ନା ତୁମ୍ଭେ ତାଙ୍କ ସହିତ ସମାନ ହେବ ନାହିଁ । ଶଙ୍ଖଙ୍କ କୁହିଁ ପାଇ ଚନ୍ଦ୍ର ଓ ସୂର୍ଯ୍ୟ ଦୁଃଖମନରେ ଯଥାକ୍ରମେ ସନ୍ଧିପାତ ଓ ଦିନପାତ କରି ପୁଣି ସକାଳ ହେଲେ ଓ ସନ୍ଧ୍ୟାହେଲେ ମୁହଁ ଲୁଚାନ୍ତି । ସେ ସ୍ତ୍ରୀର ଦେହ ପ୍ରଭା ଏପରି ତେଜୀୟାନ୍ ଯେ, ତା ଦେହରେ ଥିବା ସହସ୍ର ସ୍ବର୍ଣ୍ଣଯୁକ୍ତ ସ୍ବର୍ଣ୍ଣର ଅଳଙ୍କାରମାନ ପିତ୍ତଳପ୍ରାୟ ହୀନପ୍ରଭ ଦେଖା ଯାଉଅଛି ।”

ତରୁଣୀ ଯେ ତୋର ସଂସାରର ସା ତହିଁର ମଧ୍ୟରେ ।
ବଡ଼ ସୁନ୍ଦରୀ ବୋଲାଇ ମନ୍ଦୋଦରୀ ତାହିଁ କି ବର୍ଣ୍ଣରେ ?
ବଂଶସି ହେଲା ସେ ସଂଶୟ ରଭସେ ତାହାର ଦର୍ଶନେ ।
ଅଧୋରା ଛନ୍ଦ ରଖିଛୁ ନାମେ ମନ୍ଦ ଏହାର ଯତନେ । ୮ ।
ବର ଦେବରଙ୍କୁ ମାରୁ ମୁଁ ତାହାକୁ ଅଣନ୍ତି ତୋ ପାଇଁ ।
ବହୁଚରୁଚେ ପାଇଁ ତାଙ୍କ ସମୀପେ ଏ ଦଣ୍ଡ ସେ ଦେଇ ।
ଜନମି ଲୋଚନେ ନିଶିର ଦୂଷଣେ ସବଳେ ଖରହିଁ ।
ନିରତି ସମର ଗଲେ ଯମପୁର ଏଥିକି ମୁଁ କହି । ୯ ।
ବଳଶ୍ରେଷ୍ଠ ଗରଷ୍ଟ ମାନ ଯେବେ ହରିବ ପାରିବ ।
ବାରିଧି ଜୀବନେ ଜୀବନ ତେଜିବା ତେବେ ମୋ ନୋହିବ ।

---

୧୦ମ ପଦ – ବଳଶ୍ରେଷ୍ଠ—ମହାପରାକ୍ରମୀ । ଗରଷ୍ଟମାନ—ନାକ କାନ କାଟିବାରୂପ ଗୁରୁତର ଅପମାନ । ବାରିଧି—ସମୁଦ୍ର । ଜୀବନେ—ଜଳରେ । ଜୀବନ—ପ୍ରାଣ । ବଇଷ୍ଟବଣ—ସ୍ୱବଣ । ବିଶ୍ୱପୃଷ୍ଠରେ—ସମସ୍ତ ସଂସାରରେ ।

---

୮ମ ପଦ—"ତୁମ୍ଭର ସ୍ତ୍ରୀ ଯୁବତୀମାନେ ଏ ସଂସାରରେ ଶ୍ରେଷ୍ଠା, ପୁଣି ସେମାନଙ୍କ ମଧ୍ୟରେ ମନ୍ଦୋଦରୀ ବଡ଼ ସୁନ୍ଦରୀ । ମାତ୍ର ତା ନାମ ମନ୍ଦୋଦରୀ କାହିଁକି ହେଲା—ମୁଁ ସେ କଥା ବୁଝୁଥିଲି । ସେ ସ୍ତ୍ରୀକୁ ଦେଖିବାରୁ ମୋର ପୂର୍ବର ସଂଶୟ ଶୀଘ୍ର ବିନାଶ ହେଲା । ମନ୍ଦୋଦରୀର ନାମରେ ବିଧାତା ଉପଯୁକ୍ତ ମନ୍ଦ ଶବ୍ଦ ସହ ସଙ୍ଗତ ରଖିଅଛନ୍ତି । ( ମନ୍ଦୋଦରୀର ଶୋଭା ସେ ସ୍ତ୍ରୀର ସୌନ୍ଦର୍ଯ୍ୟଠାରୁ 'ମନ୍ଦ' ଅର୍ଥାତ୍ ନ୍ୟୂନ—ସେଥିପାଇଁ ବିଧାତା ତା ନାମ ମନ୍ଦୋଦରୀ ଦେଇଅଛନ୍ତି ) ।"

୯ମ ପଦ—"ତାର ସ୍ୱାମୀ ଓ ଦେବରଙ୍କୁ ମାରି ମୁଁ ତୁମ୍ଭପାଇଁ ସେ ସ୍ତ୍ରୀକୁ ଆଣିବାକୁ ଲୋଭ କରି ବୁଢ଼ରେ ତାଙ୍କ ପାଖକୁ ଯିବାରୁ, ସେ ମୋତେ ଏ ଦଣ୍ଡ ଦେଲେ । ମୋର ଏ ଦଣ୍ଡ ଦେଖି ଖରେ, ଦୂଷଣ ଓ ଖର ସୈନ୍ୟ ସେନା ତ୍ରିଶି ଖର ଯୁଦ୍ଧ କରନ୍ତେ, ଯମପୁରକୁ ଗଲେ । ମୁଁ ତୁମ୍ଭକୁ ସେ କଥା କହିବା ପାଇଁ ଆସିଲି ।"

୧୦ମ ପଦ—"ହେ ମହାପରାକ୍ରମି ! ଯେବେ ମୋର ଗୁରୁତର ଅପମାନକୁ ମୋତେ ଉଦ୍ଧାର କରି ପାରିବ, ତେବେ ସମୁଦ୍ର ଜଳରେ ମୋର ପ୍ରାଣ ତେଜିବା ନ ହେବ । (ମୋର ଏ ଅପମାନ ନ ମେଣ୍ଟିଲେ, ମୁଁ ସମୁଦ୍ରରେ ବୁଡ଼ି

ଦଶବଦନ ଶ୍ରବଣ କର କହେ ହେବ ସେ ଜାନକୀ ।
ବିଶ୍ୱ ପ୍ରପଞ୍ଚରେ ଏବେ ସ୍ୱପଞ୍ଚରେ ସୌନ୍ଦର୍ଯ୍ୟ ଆନ କି ? ।୧୦।
ବ୍ରହ୍ମର କର କର୍ଣ୍ଣ ନାସା ଚରଣ ନାହିଁକି ଅବଶ୍ୟ ?
ବିଗତଶୋଚନା ତୁଅ ସୁଲୋଚନା ଦେଖ ମୋ ପ୍ରତାପ ।
ବଳେ ବା କପଟେ ତା ଆଦର ଏବେ ଆଣିବି ମୁଁ ହରି ।
ବନେ ବେନି ଭ୍ରାତ ଝୁରି,ହେବେ ହତ ଭକ୍ଷ ତୁ ବିହରି ।୧୨।
ବିରସ ଶୁଣି ସକଳ ରାକ୍ଷସୀଶ୍ରେଣୀ ଦୁର୍ଭାଗ୍ୟ ଶଙ୍କାରେ ।
ବିଧବା ହେବାରୁ ଡର ମନ୍ଦୋଦରୀ ବଚନ କହିଲାରେ ।
ବାହେ ସ୍ୱଲେଖନ ଶ୍ଳୋକେ ଅବଧାନ ନୋହୁଛ କାହିଁକି ?
ବାର କି ବାରଜାଣି ଅନୁକୂଳରେ ? ବୋଲନ୍ତି ରହୁଁ କି ।୧୨।

---

୧୧ଶ ପଦ—ଅବଶ୍ୟ—ଅନିବାର୍ଯ୍ୟ । ବିଗତଶୋଚନା—ଶୋକଶୂନ୍ୟା । ସୁଲୋଚନା—ସୁନେତ୍ରୀ । କପଟେ—କପଟରେ ବା ଛଳରେ ।

---

ଜହିବ) ” । ରାବଣ, ସୂର୍ପଣଖା କଥା ଯାକ ଶୁଣି କହିଲେ, “ସେ ନିଶ୍ଚୟ ଜଗତ ଧନ୍ୟା ହେବ । ସମସ୍ତ ସଂସାରରେ ଏପରି ସ୍ତ୍ରୀ ଆଉ କେଉଁଠାରେ ନାହିଁ ।”

୧୧ଶ ପଦ—ରାବଣ ପୁଣି କହିଲେ, “ବ୍ରହ୍ମପଦାର୍ଥର ନାକ, କାନ ଓ ହାତଗୋଡ଼ ନାହିଁ—ତଥାପି ସେ ଅପମାନନା ପାଏ କି ? (ସେହିପରି ତୋର ନାସା କର୍ଣ୍ଣ ନ ଥିଲେ ସୁଦ୍ଧା ତୋତେ ଅପମାନନା କରିବାକୁ କେହି ସାହସ କରିବେ ନାହିଁ । କାରଣ ତୁ ମୋର ଭଉଣୀ ) । ହେ ସୁଲୋଚନା ! ତୁ ଶୋକ କର ନାହିଁ । ଏବେ ମୋର ପ୍ରତାପ ଦେଖ । ବଳେ ନ ହେଲେ କପଟରେ ତାହାର ଭାର୍ଯ୍ୟାକୁ ମୁଁ ହରି ଆଣିବି । ତାହାହେଲେ ବନରେ ସେ ଦୁଇ ଭାଇ ସ୍ତ୍ରୀକୁ ଝୁରି ଝୁରି ମରିବେ । ତୁ ସେ ବନକୁ ଯାଇ ତାଙ୍କୁ ଭକ୍ଷଣ କରିବୁ ।”

୧୨ଶ ପଦ—ରାବଣର ବଚନ ଶୁଣିପାରି ( ବଳେ ବା କୌଶଳରେ ତାହା ଭାର୍ଯ୍ୟାକୁ ହରି ଆଣିବି ଏହି ବଚନ ) ରାଣୀମାନେ “ଆମେ ଏଣିକି ଆଉ ଅହିଆ ହେବୁ ନାହିଁ”—ଏହି ଆଶଙ୍କା କରି ବିରସ ହେଲେ । (ରାବଣ ସୀତାକୁ ଆଣିଲେ ଆଉ ଆମ୍ଭକୁ ପଚାରିବେ ନାହିଁ) । କିନ୍ତୁ ବୁଦ୍ଧିମତୀ ମନ୍ଦୋଦରୀ ବିଧବା ହେବା ଭୟରେ କହିଲେ, “କାନ୍ଥରେ ଆପଣ ହସ୍ତରେ ଲେଖିଥିବା ଶ୍ଳୋକକୁ ଦେଖୁନାହାନ୍ତି କାହିଁକି ? ।( ରାବଣ କାନ୍ଥରେ ଲେଖି ରଖିଥିଲେ ଯେ, ସୀତାହରଣ ରାବଣ ମରଣ ) ।” ତା ଶୁଣି ରାବଣ କହିଲେ, “ହେ ପଦ୍ମଲୋଚନେ ! ଅନୁକୂଳ କାଳ ସମୟରେ ନିଷେଧ କରିବା ଉଚିତ କି ? ( ନିଷେଧ କର ନାହିଁ ) ।”

ଏମାନେ ଅବେକ୍ଷି ଅଭିମାନେ ଯାଇ ବିଚାରୁ ମାନସେ ।
ବୁଦ୍ଧି ସ୍ଫୁରିଲା ମାରୀଚ ପାଶେ ଗଲା ବିନୟୀ ହୁହିଁ ସେ ।
ବୋଇଲା ଚାତକ ପ୍ରାୟ ମୁଁ ଯାଚକ ଆସିଛି ତୃଷାତେଣି ।
ବାରିଦ ତୁହି ଆଶାରେ ଉଦେ ହୋଇ ରସ ଦେ ତ୍ୱରିତେ ।୧୩।
ବୋଲେ ସୁନ୍ଦାତ୍ମଜ ତୁ ରାଜାଧିରାଜା କି ଦେବି ତୋତେ ମୁଁ ?
ବଧି ଜନନୀ ଭ୍ରାତା ମୋ ସୈନ୍ୟ ଘେନି ଜୀଇଛି କି ଧର୍ମେ ।
ଦଂଶଭୁଜ ଭଣି ବଇରୀ କେ ପୁଣି କହ ମୋରେ ତାକୁ ।
ବାଞ୍ଛା ବନ୍ଧୁ ହୋଇ ନ ଦେଲୁ କିପାଇଁ ଶୁଦ୍ଧି ହେବାକୁ ।୧୪।
ବୁଡ଼ି ପାରାବାର ବାରିରେ ସୋଦରଙ୍କୁ ଦେଖାଇ ।
ବାରକେଶ ଧରି ମାରିବାକୁ ଅରି ବାହାର ତାଡ଼କଇ ।

---

୧୩ଶ ପଦ—ବାରିଦ—ମେଘ । ଆଶା—ଦିଗ । ରସ—ଜଳ, ଅନୁରାଗ ।

୧୪ଶ ପଦ—ସୁନ୍ଦାତ୍ମଜ—ମାରୀଚ । ରାଜାଧିରାଜ—ମହାରାଜ ।

୧୫ଶ ପଦ—ପାରାବାର—ସମୁଦ୍ର । ବାରକେଶ—ନଖ । ତାଡ଼କା ନନ୍ଦନ—ମାରୀଚ ।

---

୧୩ଶ ପଦ—ତତ୍‌ପରେ ରାବଣ ରଥରେ ବସି ଅଭିମାନଭରେ ମନରେ ବିଚାର କରି ଯାଉ ଯାଉ ଏକ ବୁଦ୍ଧି ଦେଖାଗଲା । ( ମାରୀଚ ପାଖକୁ ଗଲେ କାର୍ଯ୍ୟ ସିଦ୍ଧି ହେବ—ଏହି ବୁଦ୍ଧି । ] ସେ ମାରୀଚ ପାଖକୁ ଯିବାରୁ ମାରୀଚ ତାକୁ ଦେଖି ବିନୟୀ ହେଲା । ରାବଣ କହିଲା, ମୁଁ ତୃଷାତୁର ଚାତକ ପକ୍ଷୀ ପ୍ରାୟ ପ୍ରାର୍ଥୀ ହୋଇ ଆସିଅଛି । ତୁ ମେଘ ପରି ମୋର ପ୍ରତ୍ୟାଶାରୂପ ଦିଗରେ ଉଦେ ହୋଇ ଅନୁରାଗରୂପ ଜଳକୁ ଶୀଘ୍ର ଦାନ କର ।" ( ମୋର କାମନା ପୂର୍ଣ୍ଣ କରିବାକୁ ତତ୍ପର ହୁଅ )।

୧୪ଶ ପଦ—ରାବଣର କଥା ଶୁଣି ମାରୀଚ ଉତ୍ତର ଦେଲା, "ତୁମ୍ଭେ ରାଜାଧିରାଜ. ତୁମ୍ଭକୁ ମୁଁ କା କଣ ଦେବି ? ମୋ ଜନନୀ ତାଡ଼କା ଓ ସୈନ୍ୟସହ ଭାଇ ସୁବାହୁ ମଲେ । ଦେଖ ଧର୍ମବଳରୁ ମୁଁ ବଞ୍ଚି ରହିଅଛି ସିନା !" ଏହା ଶୁଣି ରାବଣ କହିଲା, "ତୋର ପୂର୍ବ ଶତ୍ରୁ କିଏ କହ; ମୁଁ ତାକୁ ବିନାଶ କରିବି । ତୁ ମୋର ବନ୍ଧୁ ହୋଇ ଶୁଦ୍ଧି ହେବା ପାଇଁ ମୋତେ ଉତ୍ତର ନ ଦେଲୁ କାହିଁକି ?

୧୫ଶ ପଦ—ତତ୍‌ପରେ ରାବଣ ଭ୍ରାତୃଙ୍କୁ ଦେଖାଇବା ନିମିତ୍ତ ସମୁଦ୍ରରେ ସ୍ନାନ କରି ଆସି ନଖରେ ହାତ ବୁଲାଇ ଶତ୍ରୁ ମାରିବା ପାଇଁ ଭାବ କହିଲା, "ଅ, ତୋର ଶତ୍ରୁକୁ ମାରିବା ।" ତାହା ଶୁଣି ତାଡ଼କାନନ୍ଦନ ମାରୀଚ

ବୋଇଲା ଜାତୁଧାନନନ୍ଦନ ତର୍କୀଶ ରସ ହେ ଭୂପତି ।
ବହ୍ନିରେ ଗୃହିବା ବପ ଜୀର୍ଣ୍ଣ ହେବା ଉପାୟେ ପଚନ୍ତି ।୧୫।
ବିନା ଉପାୟ ରାଘବ ଶରତ୍ୟ ସମର ସେ ଯମ ।
ବିଷ୍ଣୁ ହେଲେ ହେବ ଆଉ ତ ନ ଥିବ ତାହାଙ୍କୁ କେ ସମ ?
ବଡ଼ କହିଲୁ ତ ବୋଲେ ଲଙ୍କନାଥ ନ ଡର ତୁ କହୁ ।
ବାଜି ବିଷ୍ଣୁ ଚକ୍ର ମୋ ହୃଦେ ପଦକ ପରାୟେ ଲଗିଛି ।୧୬।
ବୋଲୁ ଯେ ରାଘବ ତାହାର ପୂର୍ବପୁରୁଷ ମାରିଛି ।
ବିଧାତା ଘଟନ ତୋର ମୋର ପୁଣ ବଇରୀ ହୋଇଛି ।
ବଧି ତୋ ଜନନୀ ଛେଦନ୍ତି ମୋ ଭଗ୍ନୀ ନାସିକା ଶ୍ରବଣ ।
ବଡ଼ ଭ୍ରାତା ହତ ହେଲ ଏତମତ ପାଞ୍ଚିବା ମରଣ ।୧୭।
ବକ୍ରମାଳୀକି ମାରୀଚ ହସିଲ ତୋ ସାମର୍ଥ୍ୟ ବଡ଼ାଇ ।
ବାନ୍ଧିଲା ଅର୍ଜ୍ଜୁନ ତୋତେ ତା ଛେଦନ ଦର୍ପ ଯେ ଛଡ଼ାଇ ।

---

୧୮ଶ ପଦ—ବକ୍ରମାଳୀ—ରାବଣ । ସାମର୍ଥ୍ୟ—ବଳ । [illegible] ।

---

କହିଲା, "ହେ ରାଜା ରସ—କଥା ଶୁଣ । ଅଗ୍ନିରେ ଗୃହିଥିବାର, ବପ ଖାଇ ଜୀର୍ଣ୍ଣ କରିବାର ଉପାୟ ଅଛି ।"

୧୬ଶ ପଦ—"ମାତ୍ର ରାମଙ୍କ ବାଣ ସକାଶୁ ଉପାୟ ନାହିଁ । ସେ ରାମ ସମର ଯମ । ମୁଁ ବିଚାରୁଛି, କେବଳ ବିଷ୍ଣୁ ସେ ରାମଙ୍କ ସମାନ ହୋଇ ପାରେ । (ମାତ୍ର ଆଉ କେହି ତା ସମାନ ନାହାନ୍ତି) ।" ମାରୀଚ ଏହା କହନ୍ତେ ରାବଣ ଉତ୍ତର ଦେଲା, "ତୁ ତ ବଡ଼ କଥାଟାଏ କହିଲୁ ? ସେ ବିଷ୍ଣୁ ସଙ୍ଗେ ସମାନ ହେବ ବୋଲି ଯାହା କହିଲୁ, ସେ ବିଷ୍ଣୁକୁ ତ ମୁଁ ଡରେ ନାହିଁ । କାରଣ ସେହି ବିଷ୍ଣୁର ଚକ୍ର (ସୁଦର୍ଶନଚକ୍ର) ମୋ ବକ୍ଷ ସ୍ଥଳରେ ବାଜି ପଦକ ପରି ରହିଅଛି ।"

୧୭ଶ ପଦ—"ତୁ ଯେଉଁ ରାଘବକୁ ଏତେ ବଳିଷ୍ଠ ବୋଲି କହୁଛୁ; ମୁଁ ତାର ପୂର୍ବପୁରୁଷ ଅନରଣ୍ୟ ରାଜାକୁ ମାରିଛି । ଦୈବଯୋଗରେ ସେ ରାଘବ ପୁଣି ତୋର ଓ ମୋର ଶତ୍ରୁ ହୋଇଛି । ସେ ତୋର ମାତାକୁ ବଧ କରିଛି ଓ ମୋ ଭଗ୍ନୀ ଶୂର୍ପଣଖାର ନାସା କର୍ଣ୍ଣ ଛେଦନ କରିଅଛି । ତୋହର ଭାଇକୁ ଓ ମୋର ଭାଇ ଖର ଦୂଷଣାଦିଙ୍କୁ ସୈନ୍ୟସହ ବିନାଶ କରିଅଛି । ତେଣୁ ଦୁହେଁଯାକ ମିଶି ତାର ମରଣ କଥା ବିଚାର କରିବା ।"

୧୮ଶ ପଦ—ରାବଣର କଥା ଶୁଣି ମାରୀଚ ହସ ପୂର୍ବକ କହିଲା, "ତୋର ସାମର୍ଥ୍ୟ କେତେ କି ? ତୋତେ ଯେଉଁ ସହସ୍ରାର୍ଜ୍ଜୁନ ବାନ୍ଧିଥିଲା, ସେହି

ବର୍ଣ୍ଣ ନ ସର ଧାତୁତ୍ୱ ପରି ହୋଇ ବିଶେଷ କରନା ।
ବିମ୍ବ କରି ଥିବୁ କୂପେ ସିଂହ ପ୍ରାୟ ବୁଡ଼ି ତୁ ମରନା ।୧୮।
ବୋଲି ରମାମଣି ରମାଙ୍କ ଚେ ଭଣି ବଧୂକୁ ବିଧୁକୁ ।
ବେଗେ ଅଗେ ଦୁଶ୍ଚି ରମା ମଣି ଚିନ୍ତି ହୁଏଇ ବଧିରୁ ।
ବିରାମ ଆରାମ କହୁ ହୋଇ ଭ୍ରମ ପଛକୁ ଅନାଇ ।
ବନ୍ଧିବା ଠାଣି ପୂର୍ବରୁ ଧଣ୍ଡି ପୁଣି ଚମକି ମୁଁ ପଳାଇ ।୧୯।
ବିଜନେ ବାସ କଲଟି ପୁଣ ତ୍ରାସ ଦେଖିଲି ସ୍ୱପନେ ।
ବିନିଦ୍ର ହୋଇ ତପସ୍ୱୀ ବେଶ ବହି ରହୁଛି ଏ ସ୍ଥାନେ ।

---

୧୯ଶ ପଦ—ବଧୂକୁ—ସ୍ତ୍ରୀକୁ । ବିଧୁକୁ—ଚନ୍ଦ୍ରକୁ । ବିରାମ—ବିଶ୍ରାମ । ଆରାମ—ଉପବନ ।

୨୦ଶ ପଦ—ବିଜନ—ନିର୍ଜନ ସ୍ଥାନ । ତ୍ରାସ—ଭୟ । ବିନିଦ୍ର—ଉଜାଗର । ଦଶମୂର୍ଦ୍ଧା—ରାବଣ । ଶଶଚମଷି—ଶଶମୃଗ ।

---

ସହସ୍ରାର୍ଜ୍ଜୁନର ଛେଦନକାରୀ ପର୍ଶୁରାମଙ୍କ ଶବ୍ଦ ଯେଉଁ ରାମ ଶବ୍ଦ କହୁଅଛନ୍ତି, ଏ ସେହି ରାମ (ଅର୍ଥାତ୍ ତୋ ଅପେକ୍ଷା ବହୁତ ଗୁଣରେ ବଳିଷ୍ଠ ଅଟନ୍ତି) । ତୁ ତାହାଙ୍କ ସହିତ ଶତ୍ରୁତା କର ନାହିଁ, ଡାହୁକ ପ୍ରାୟ ବଂଶ ମସୃଣ ନାହିଁ । (ଗୋଟିଏ ଡାହୁକ ଜାଲରେ ପଡ଼ିଲେ ସେ ପ୍ରଲୋଭନ ଦେଖାଇ ଅନ୍ୟ ଡାହୁକମାନଙ୍କୁ ଆଣି ଜାଲରେ ବନ୍ଧନ କରାଏ, ତେଣୁ ଗୋଟିକ ଯୋଗୁଁ ବଂଶଯାକ ମରନ୍ତି) । କୂପ ଜଳରେ ନିଜର ପ୍ରତିବିମ୍ବ ଦେଖି ସିଂହ ଗର୍ବରେ ଡେଇଁପଡ଼ି ବୁଡ଼ି ମଲାପରି ତୁ ମର ନାହିଁ ।"

୧୯ଶ ପଦ—"କେହି ଅପଣା ସ୍ତ୍ରୀକୁ 'ରମାମଣି' ବୋଲି କିମ୍ବା କେହି ଚନ୍ଦ୍ରକୁ 'ରମାଙ୍କ' ବୋଲି କହିବାର ଶୁଣିଲେ, ମୁଁ ଶୀଘ୍ର ଅଗର ଦୁଇ ଅକ୍ଷର 'ରମ'କୁ ମନରେ ଆଣି ରାମ ଅଗରୁ ଆସି ବିନାଶ କରିବେ କି ? ଏହି ଭୟରେ ଅସ୍ଥିର ହୋଇ ଉଠେ । (ରାମ ଶବ୍ଦ ଯେ କୌଣସି ପ୍ରକାରେ ହେଉ ନା କାହିଁକି, ମୋ କାନରେ ପଡ଼ିଲେ, ମୋ ପ୍ରାଣ ଥରି ଉଠେ ) । କେହି ବିରାମ କିମ୍ବା ଆରାମ କହିଲେ, ମୁଁ ଭ୍ରମବଶତଃ ପଛକୁ ଅନାଇଁ ଦିଏ ଏବଂ ପୂର୍ବେ ରାମଙ୍କର ଶର ବିନ୍ଧିବା ଠାଣି ମନରେ ପଡ଼ି ଯିବାରୁ ଭୟରେ ଥରି ମୁଁ ପଳାଇ ଯାଏଁ । ( ବିରାମ ଓ ଆରାମର ପଛ ଦୁଇ ଅକ୍ଷର ରାମ ହୋଇଥିବାରୁ, ରାମ ପଛରୁ ଆସି ଶର ବିନ୍ଧିଲେ କି ? ଏହି ଭୟ ହୁଏ) ।"

୨୦ଶ ପଦ—''ରାମ ଶବ୍ଦ ଶୁଣିବା ହେତୁ ଯେ ଭୟ ଜାତ ହୁଏ, ସେହି ଭୟ ଯୋଗୁଁ ମୁଁ ନିର୍ଜନ ସ୍ଥାନରେ ବାସ କରୁଅଛି । (ନିର୍ଜନରେ ରହିଲେ ରାମ ଶବ୍ଦ ମୋ କାନକୁ ଆସିବ ନାହିଁ । ତେଣୁ ମନ କ୍ଷୁବ୍ଧ ହେବ ନାହିଁ) ।

ବତ୍ସା ଦଶକଣ୍ଠ! ନ ଭଙ୍ଗ ମୋ ଶ୍ରଦ୍ଧା ମାରିବା କପଟେ ।
ବିହର ଶଠ ଚମତ୍କାରରୂପ ଧରି ତୁ ତାଙ୍କ ନିକଟେ ।୨୦।
ଦୂରେ ନେଇ ରାମ ହାହି ଲକ୍ଷ୍ମଣ କହି ହୋ ଅନ୍ତର ।
ବଟୁ ବେଶେ ଭିକ୍ଷା ମାଗି ପଦ୍ମଲୋଚନୀ ହରିବି ମୁଁ ତାର ।
ବୋଲେ ମାରୀଚ ରାଜା ଏ ଲୋଭ ମୃଗ ତୁ ମଧୁ ସଦୃଶ
ବଂଶ ପଦ୍ମବନ କରନ୍ତୁ ବର୍ଦ୍ଧନ ସୁମନ ପ୍ରକାଶ ।୨୧।
ବେଶ୍ମରେ ସୀତା ଶୀତ ହେଲେ ମିଳିତା ସେ ରାମ ଲକ୍ଷ୍ମଣ ।
ବରଷି କରନ୍ତୁ ତୁଷାର ଶରକୁ ନାଶିବେ ତତ୍କ୍ଷଣ ।
ବୈଦ୍ୟ ସୁବୁଦ୍ଧି ବାଣୀ ତାର ଔଷଧି ନ ରୁଚ ଭକ୍ଷଣେ ।
ବ୍ୟାଧି ନାଶକାରୀ ଯେବେ ତା ନ କର ପ୍ରବର୍ତ୍ତି ମରଣେ ।୨୨।

---

ତଥାପି ସ୍ୱପ୍ନରେ ରାମଙ୍କୁ ଦେଖି ବ୍ୟାକୁଳିତ ହେଉଅଛି । ସେଥିପାଇଁ ଅନିଦ୍ରାରେ ରହି ତପସ୍ୱୀ ବେଶ ଧରି, ଏ ସ୍ଥାନରେ ରହୁଅଛି । (ନିଦ୍ରାଗଲେ ସିନା ରାମଙ୍କୁ ସ୍ୱପ୍ନ ଦେଖି ଭୀତ ହେବି )।" ଏହା ଶୁଣି ରାବଣ କହିଲା, 'ତୁ ମୋ ଶ୍ରଦ୍ଧା ଭଙ୍ଗ ନାହିଁ, ରାମଙ୍କୁ କପଟରେ ମାରିବା । ତୁ ତାଙ୍କ ଆଗରେ ବିଚିତ୍ର ମୃଗ ହୋଇ ଖେଳିବୁ ।"

୨୧ଶ ପଦ—"ତୋର ବିଚିତ୍ର ରୂପ ଦେଖି ସେ ତୋତେ ମାରିବାକୁ ଗୋଡ଼ାଇଲେ ତୁ ରାମଙ୍କୁ ବହୁତ ଦୂରକୁ ନେଇଯାଇ 'ହେ ଲକ୍ଷ୍ମଣ ହାହି' ଏହା କହି ଅନ୍ତର ହୋଇଯିବୁ । ଲକ୍ଷ୍ମଣ ତୋ ଡାକ ଶୁଣି ଦୂରକୁ ଗୁଳିଗଲେ, ପଦ୍ମନୟନା ସୀତାଙ୍କୁ ମୁଁ ବ୍ରହ୍ମଚାରୀ ବେଶରେ ଭିକ୍ଷା ମାଗି ହରଣ କରି ନେଇ ଆସିବି ।" ଏହା ଶୁଣି ମାରୀଚ କହିଲା, "ହେ ରାଜା! ଏ ଲୋଭ ଗ୍ରହ, ତୁ ବସନ୍ତକାଳ ପ୍ରାପ୍ତ ହୋଇ ତୋ ବଂଶରୂ ପଦ୍ମବନ ସଦୃଶ ବଢ଼ାଇଅଛୁ (ବସନ୍ତକାଳରେ ପଦ୍ମବନ ବିଶେଷ ବୃଦ୍ଧି ହୋଇଥାଏ) । ଏବେ ସେ ବଂଶପୁଷ୍ପ ପ୍ରତି ଉତ୍ତମ ମନ ଦେଇ ବିକାଶ କର । (ଅର୍ଥାତ୍ ନିଜ ବଂଶ ପ୍ରତି ସ୍ନେହ ଦୃଷ୍ଟି ରଖି ତାକୁ ବଢ଼ା—ନଷ୍ଟ କରିବାର ପଥ ଖୋଜ ନାହିଁ )।"

୨୨ଶ ପଦ—"ବେଶ୍ମରେ ସୀତା ଶୀତକାଳ ହୋଇ ଲଙ୍କାରେ ପ୍ରବେଶ କଲେ, ରାମ ଲକ୍ଷ୍ମଣରୂପ ଚନ୍ଦ୍ର, ସ୍ୱୀୟ କରନିକରଣରୁ ତୁଷାରରୂପ ଶର ବରଷି ତୋର ବଂଶ ପଦ୍ମବନକୁ ବିନାଶ କରିବେ । ପୁଣି ଯେଉଁ ରୋଗୀ ଉତ୍ତମ ବୈଦ୍ୟର ପଥ୍ୟ କଥା ନ ମାନେ ଓ ଔଷଧ ଗ୍ରହଣ ନ କରେ, ତାହାର ରୋଗ ଭଲ ହୁଏ ନାହିଁ, ସେ ବିନାଶ ହୁଏ । (ବୁଦ୍ଧିମାନ ଲୋକର ହିତ କଥା ଯେ ଗ୍ରହଣ ନ କରେ ସେ ମରେ । ମୁଁ ତୋତେ ଯେଉଁ ହିତ କଥା କହୁଛି, ତା ଅବହେଳା କର ନାହିଁ )।"

ବୋଲୁଛୁ ମଧୁ ପ୍ରକାର ଭେଦେ ପୁଣି ମହୀଶ ଆପଣ ।
ଭାର୍ଗବୀ ଦୁର୍ଗା ଲେଖେ ଯାହା ହୋଇଲେ ତାହା କି ନ ଜାଣ ?
ବଳେ ଯେ ଯାହାରେ ଊଣା ସେ ତାହାରେ ଅବଶ୍ୟେ କି ଦ୍ୱନ୍ଦ୍ୱ ।
ବଢ଼ୁ ଅହଂବୁଦ୍ଧି ମାନ କରୁ ସିଦ୍ଧି ଜନ୍ମୁକେ ସେ ମନ୍ଦ । ୨୩ ।
ବିଶ୍ରବା ସୁତ କୋପରେ ପ୍ରଜ୍ୱଳିତ ଶୁଣି ତା ବଚନ ।
ନିକୋଷ କରଣ କରବାଳ କର ବାଳରେ ତା ମନ ।
ବୋଇଲା ଅବଜ୍ଞା କରୁ ମୋର ଆଜ୍ଞା ମାନବ ଭକ୍ଷ୍ୟାତ୍ମ !
ବାଳକ ମୁଁ ସତେ ତୁ ବୁଝାଉ ମୋତେ କେ ତୋତେ ସମ୍ଭାନ୍ତ ? ।୨୪
ବିଚାରିଲା ତାଡ଼କେୟ ଏ ମାରିଲେ ହୋଇବ ଅମୋକ୍ଷ ।
ବୈକୁଣ୍ଠେ ନେନ୍ତି ରାମ କରୁ ହତ ଦେଖିଛୁ ପ୍ରତ୍ୟକ୍ଷ ।

---

୨୪ଶ ପଦ—ଭାର୍ଗବୀ—ଲକ୍ଷ୍ମୀ ।

---

୨୩ଶ ପଦ—"ମୁଁ ପୂର୍ବରୁ ତୋତେ ମଧୁ କହି ଅଛି, (ପୂର୍ବେ 'ମଧୁ' ବସନ୍ତକାଳ ହୋଇଥିଲା, ବର୍ତ୍ତମାନ ମଧୁଦୈତ୍ୟ ଅର୍ଥ ହେଲା) ପୁଣି ତୁ ତ 'ମହୀଶ' ସଂଜ୍ଞା ଅଟୁ । ଷ କାର ଭେଦରେ ମହିଷ ଅର୍ଥାତ ମହିଷାସୁର ହେଲା । ମଧୁଦୈତ୍ୟ ଲକ୍ଷ୍ମୀଙ୍କ ଲେଖରେ ଓ ମହିଷାସୁର ଦୁର୍ଗାଙ୍କ ଲେଖରେ ଯାହାହେଲେ, ତାହା ତୁ କଣ ଜାଣୁ ନାହିଁ ? [ତୁ ସୀତାଙ୍କଠାରେ ଲୋଭ କଲେ ତାଙ୍କର ପରି ନାଶ ଯିବୁ] । ଯେ ଯାହାଠାରୁ ବଳରେ ଊଣା, ସେ ତାହାଠାରେ ଶତ୍ରୁତା ଅବଶ୍ୟ କରେ କି ? ତୁ ଅହଂ ବୁଦ୍ଧିରେ ଗର୍ବ ଓ ମର୍ଯ୍ୟାଦାକୁ ବଢ଼ାଉ ଅଛୁ । ସେଥିରୁ ଯେ ମନ୍ଦ ଫଳ ଜାତହେବ, ଏହା ବୁଝିବା ଉଚିତ ।"

୨୪ଶ ପଦ—ମାରୀଚ କଥା ଶୁଣି ରାବଣ କ୍ରୋଧରେ ଜଳି ଉଠି ଖଡ୍ଗକୁ ଖାପରୁ ବାହାର କରି ମାରୀଚ ବାଳକୁ ବାମ ହସ୍ତରେ ଧରିବାକୁ ମନ କଲା । ପୁଣି କହିଲା; "ରେ ମାନବ ଭକ୍ଷ୍ୟାତ୍ମ ! [ନର ମନୁଷ୍ୟକୁ ଭକ୍ଷ କରୁ ଅଥବା ମନୁଷ୍ୟ ପଶୁ ଖାଉ] ମୋର ଆଦେଶ ଅବମାନନା କରୁଅଛୁ । ମୁଁ କଣ ବାଳକ ହୋଇଛି ଯେ ତୁ ମତେ ଶିକ୍ଷା ଦେଉଅଛୁ ? ଏବେ ତୋତେ କିଏ ଆସି ରକ୍ଷିବ ?"

୨୫ଶ ପଦ—ରାବଣର ଏପରି ନିଷ୍ଠୁର ବଚନ ଶୁଣି ମାରୀଚ ବିଚାର କଲା, 'ଏ ରାବଣ ମାରିଲେ, ମୁଁ ଅମୋକ୍ଷ ରହିବି । ମାତ୍ର ରାମ ଯାହାକୁ ବିନାଶ କରନ୍ତି ସେ ବୈକୁଣ୍ଠକୁ ଗମନ କରେ, ମୁଁ ଏହା ସାକ୍ଷାତରେ ଦେଖିଛି । [ମୋର ମରଣ ତ ନିଶ୍ଚିତ, ରାବଣ ହାତରେ ମଲେ ନରକଗତି ଓ ରାମଙ୍କ ହାତରେ ମଲେ ବୈକୁଣ୍ଠ ପ୍ରାପ୍ତି, ତେବେ ରାମଙ୍କ ହାତରେ ନ ମରିବ କାହିଁକି] ?' ଅନନ୍ତର ରାବଣକୁ ଅଭୟ ହୋଇ କହିଲା, "ଯେପରି ପୋଷଣର ପାଣି ବାଟଗଲେ

ଜଳଅଭି କହ ଅଗ ମୁହିଁ ତୁହି ମରିବୁ ସଙ୍ଗରେ ।
ତାରତାତ ହୃସ ଶୁଣି ସ୍ତାନ୍ଧ ବଂଶ ଯେମନ୍ତେ ତାସାରେ । ୨୫ ।
ବିଷାଣ ଟୀକ୍ଷଣ ଝଟ୍ର ସୁଘଟନ ମାଣିକ୍ୟ ନିର୍ମିତ ।
ରସିକେ ସ୍ୱର୍ଣ୍ଣ ଅଜିନେ ଲୋମପନ୍ତି ମୁକୁତା ମର୍କତ ।
ବିମଳ କ୍ଷୁଦ୍ର ନୀଳେନ୍ଦ୍ରମଣି ବୃନ୍ଦ ପୁଚ୍ଛ କି ଗ୍ରମର ?
ବିଚିତ୍ର ମୃଗ ହୋଇ ବେଗ ବିହରେ ରାବଣ ଅଗର । ୨୬ ।
ବସୁ ପ୍ରାପତ କୃପଣ ଧୀନବନ୍ତ ହୋଇଲା ଅନାଇ ।
ବାହିଲା ବିମାନ ପଞ୍ଚବଟୀ ବନ ବସାଇ ରସାଇ ।
ବେଗେ ମାୟାମୃଗ ଯାନ କରି ତ୍ୟାଗ ଅରଣ୍ୟେ ପଶିଲା ।
ବୈଦେହୀ ଚକ୍ଷୁରେ ଖେଳନ୍ତେ ସତ୍ୱରେ ଦେଖି ସେ ଭସିଲା ।୨୭।
ବୀଣାଜିଣା ଭାଷୀ ଶ୍ରୀରାମରେ ଭାଷି ଏ ମୃଗେ ମୋ ଶ୍ରଦ୍ଧା ।
ବସନ୍ତ ଅଜିନେ ଅତି ସୁରଞ୍ଜନେ ଗିବ କି ଏ ବାଧା ?

---

୨୭ଶ ପଦ—ଚତ୍ୱର = ଅଗଣା ।

---

ଅଗ ମୀନ ସବୁ ଓ ପରେ ପାଣି ଶୁଖିଗଲେ ଦ୍ୱୀପୀରମାନେ ମରନ୍ତି, ସେହିପରି ଅଗ ମୁଁ ମରିବି, ପଛରେ ତୁ ବିନାଶ ହେବୁ ।"

୨୬ଶ ପଦ—(ଏହା କହି ମାରୀଚ, ମାୟାମୃଗ ରୂପ ଧାରଣ କଲା) ମାଣିକ୍ୟ ନିର୍ମିତ ତୀକ୍ଷ୍ଣ ଶୃଙ୍ଗ ଦ୍ୱୟ ଓ ଖୁର ଖୁବ ସୁନ୍ଦର ଦିଶୁଅଛି । ସୁବର୍ଣ୍ଣ ନିର୍ମିତ ଚର୍ମରେ ମୁକ୍ତା ଓ ମରକତ ମଣିର ଲୋମ ସବୁ ବିରାଜୁଅଛି । ନିର୍ମଳ ଇନ୍ଦ୍ରନୀଳମଣି ସଦୃଶ କ୍ଷୁଦ୍ର ପୁଚ୍ଛ ଚାମର ପ୍ରାୟ ଶୋଭା ପାଉଅଛି । ଏହିପରି ଗୋଟିଏ ସୁନ୍ଦର ମୃଗ ହୋଇ ମାରୀଚ ରାବଣ ଆଗରେ ବିହାର କଲା ।

୨୭ଶ ପଦ—ରାବଣ ସେ ବିଚିତ୍ର ମୃଗକୁ ଦେଖି କୃପଣ ଓ ଦରିଦ୍ର ଲୋକ ଧନ ପାଇଲା ପ୍ରାୟ ଆନନ୍ଦିତ ହେଲା । ତହୁଁରେ ସେ ମୃଗକୁ ଶ୍ରଦ୍ଧାରେ ରଥରେ ବସାଇ ପଞ୍ଚବଟୀ ଅରଣ୍ୟକୁ ରଥ ଚଳାଇ ନେଲା । ସେଠାରେ ପହଞ୍ଚି ସେ ମାୟାମୃଗ ଖରତରରେ ବିମାନ ତ୍ୟାଗ କରି ଯାଇ ବନ ମଧ୍ୟରେ ପ୍ରବେଶ କଲା । ସେ ମୃଗ ରାମଚନ୍ଦ୍ରଙ୍କ ପର୍ଣ୍ଣ କୁଟୀରର ଅଗଣାରେ ଶୀଘ୍ର ବିହାର କରନ୍ତେ, ସୀତା ତାକୁ ଦେଖି ଶ୍ରଦ୍ଧା ପ୍ରକାଶ କଲେ ।

୨୮ ଶ ପଦ— ବୀଣାଜିଣାଭାଷୀ ସୀତା ଶ୍ରୀରାମଚନ୍ଦ୍ରଙ୍କୁ କହିଲେ,"ଏ ମୃଗଠାରେ ମୋହର ଶ୍ରଦ୍ଧା ହେଉଅଛି । ଏ ମୃଗର ଚର୍ମରେ ମୁଁ ଆନନ୍ଦର ସହିତ ବସନ୍ତି; ଏହାର ମନୋହର ପୁଚ୍ଛକୁ ବେଶ ବନ୍ଧନ ପାଇଁ ଚର୍ବିଷ୍ଟ କରନ୍ତି ।

ବଣକେ ଚବରୀ କରନ୍ତି ତହିଁସ୍ତି ଏ ଚ୍ଛୁ ଚ୍ଛମର ।
ବାଣମ ଧନୁ ଧରି ଗ୍ରସବ ଉଭାରୁ ଏ କେତେ ମାତର ? ୨୮ ।
ବଦନ୍ତ ଲକ୍ଷ୍ମଣ ଏ କପଟୀ ଏଣ ମାୟାବ ନିଶ୍ଚୟ ।
ବଲୋକବା ଥାଉ ଶୁଣିଛ ବାତାୟୁ ସ୍ୱର୍ଣ୍ଣରତ୍ନମୟ ।
ବିନୋଦ ଦେଖାଇ ଦୂର କରି ନେଇ ନୃପଜମାନଙ୍କୁ ।
ବଧ କରେ ତୁଙ୍ଗ ଶୃଙ୍ଗରେ ଏ ରଙ୍ଗ ଆସଇ ମନକୁ । ୨୯ ।
ବଧିବି ପରକ୍ଷେ ମୃଗ ବା ରାକ୍ଷସ ଶ୍ରୀରାମ ବୋଇଲେ ।
ବରାରୋହା ଭୀରୁ ନାସ୍ତି କରୁ କରୁ ତା ପଛେ ଧାଇଁଲେ ।
ବୋଇଲେ ଲକ୍ଷ୍ମଣ ସୀତାର ରକ୍ଷଣ ଲାଗଇଟି ତୋତେ ।
ବଡ ମାୟାବୀ ଅସ୍ରପେ ଏ ଅଟବୀ ଭ୍ରମନ୍ତି ନିରତେ । ୩୦ ।

---

୨୮ଶ ପଦ—ଅଜନ—ମୃଗଚର୍ମ ।

୨୯ଶ ପଦ—ଏଣ—ମୃଗ । ବଲୋକବା—ଦେଖିବା । ବାତାୟୁ—ମୃଗ । ନୃପଜନମାନଙ୍କୁ—ରାଜପୁତ୍ରମାନଙ୍କୁ । ତୁଙ୍ଗ—ଉଚ୍ଚ ।

୩୦ଶ ପଦ—ବରାରୋହା—ପରମା ସୁନ୍ଦରୀ । ଭୀରୁ—ଭୟାଳୁ । ଅସ୍ରପେ—ରାକ୍ଷସମାନେ । ଅଟବୀ—ବନ ।

---

ଏହାକୁ ବନ୍ଧ ପାରକହ ? " ସୀତାଙ୍କ କଥା ଶୁଣି ରାମଚନ୍ଦ୍ର ବାମହସ୍ତରେ ଧନୁ ଧରି କହିଲେ, "ଏ କା କେତେ ମାସ ? ( ଏହାକୁ ଅଳ୍ପେଣରେ ମାରି ଦେବ ।)"

୨୯ଶ ପଦ—ସେତେବେଳେ ଲକ୍ଷ୍ମଣ କହିଲେ, "ଏ ମାୟାମୃଗ ନିଶ୍ଚୟ ମାରିଚ ରାକ୍ଷସ ଅଟେ । ସ୍ୱର୍ଣ୍ଣରତ୍ନମୟ ମୃଗ ଦେଖିବା ତ ଦୂରର କଥା—କେବେ ଶୁଣିଛ କି ? ମାରୀଚ ରାକ୍ଷସ ଏ, କପଟରେ ମୃଗ ହୋଇ ରାଜପୁତ୍ରମାନଙ୍କୁ କ୍ରୀଡା ଛଳରେ ଅନ୍ତର କରିନିଏ ଏବଂ ପର୍ବତର ଉଚ୍ଚ ଶୃଙ୍ଗରେ ବଧ କରେ — ଏକଥା ମୋ ମନକୁ ଆସୁଛି ।"

୩୦ଶ ପଦ— ଲକ୍ଷ୍ମଣଙ୍କ କଥା ଶୁଣି ଶ୍ରୀରାମ କହିଲେ, "ଏ ମୃଗ ହେଉ ବା ରାକ୍ଷସ ହେଉ, ନିଶ୍ଚୟ ଏହାକୁ ବଧ କରିବ ।" ଲକ୍ଷ୍ମଣଙ୍କ କଥାରେ ଭୟ ପାଇ ସୀତା ମନା କରୁ କରୁ ରାମଚନ୍ଦ୍ର ମୃଗ ପଛରେ ଧାଇଁଲେ । ସେତେବେଳେ କହିଗଲେ, "ହେ ଲକ୍ଷ୍ମଣ ସୀତାଙ୍କୁ ରକ୍ଷା କରିବା ତୋତେ ଲାଗିଲା । ବଡ ମାୟାବୀ ରାକ୍ଷସମାନେ ନିରନ୍ତର ଏ ବଣରେ ବୁଲୁଅଛନ୍ତି ।"

ବଲୁର ରକ୍ଷ ବହୁ ପ୍ରାୟ ପ୍ରତ୍ୟକ୍ଷ ହୁଅଇ ନୁହଇ ।
ବହୁରେ ନେଇ ଲକ୍ଷ୍ମଣ ସାହ୍ମ ବହୁ ବିହାର ଖୁଣ୍ଟଇ ।
ବଧୁରବର ଧୀର ସୀତା-ଦେବର ସେ ଶବ୍ଦ ଶୋଚାରେ ।
ବସୁମତପୁତ୍ରୀ ବୋଇଲେ ସୌମିତ୍ରି ଯାଅ ହେ ସତ୍ୱରେ ।୩୧।
ବିପତ୍ତି ପତନ ପଡି ତବ ନାମ ଧରି ଯେ ଡାକନ୍ତି ।
ବଶ୍ୱେ ଏକ ବୀର ଏ କପଟ ଟିର ତାଙ୍କର କି ଗତି !
ବୋଲନ୍ତେ ଲକ୍ଷ୍ମଣ ମୈଥିଳୀ ଭାଷଣ ଛନ୍ଦ୍ରେ କି ଗମନ
ବକ୍ଷଣ୍ଟି କରି ମୋତେ ଦେଖୁ ବଗ୍ଧର ଭରତ ସଜନ ।୩୨।
ବୈଶ୍ୱାନରେ ମୁଁ ଝାସିବି ବୋଲି ଖରେ ସେ ପାଶେ ଯିବେ ।
ବାହ୍ୟ କର ଏକ ଅସ୍ତ୍ର ଦୃଷ୍ଟେ ହେବ ଲକ୍ଷ୍ମଣ ଭାଷିତ ।
ବ୍ୟାଘ୍ର ସମ୍ପ୍ରେ ଗତକ ବ୍ୟଗ୍ର କଲେ ହୋଇ ସେ କୁପିତ ।
ବିଜନ ବନ ଶଙ୍କା ଘେନି ଜାନକୀ ହୁଅନ୍ତେ ସୁପତ ।୩୩।
ବହୁ ଯତିବେଶ ରାବଣ ଯେ ଅସ୍ୟ ଲୁଚକୁ ଲଗ୍ନଇ ।
ବିଲ୍ଲୁତ ଅଙ୍ଗ କରଙ୍କ କରମାଳେ ଶଙ୍କର ଜପଇ ।

---

୩୩ଶ ପଦ—ଇଙ୍ଗିତ—ଇଚ୍ଛା ।

---

୩୧ଶ ପଦ—ସେ ରାକ୍ଷସ ଅଳ୍ପ ଦୂରରେ ବାଜୁଛି ପ୍ରାୟ ଦେଖା ଦେଇ ପୁଣି ଅଦୃଶ୍ୟ ହୋଇ ଯାଏ । ଏହିପରି ରାମଙ୍କୁ ବହୁତ ଦୂରକୁ ନେଇଗଲା । ଅବଶେଷରେ ରାମ ଶର ମାରନ୍ତେ, 'ହେ ଲକ୍ଷ୍ମଣ ରକ୍ଷା କର' ! ଏହିପରି ତିନଥର ଶୁଣାଇ [ ସୀତା ଓ ଲକ୍ଷ୍ମଣ ଯେପରି ଶୁଣି ପାରିବେ—ସେହିପରି ଉଚ୍ଚ ଶବ୍ଦରେ ] ଡାକ ଦେଲା । ସେ ଶବ୍ଦ ଶୁଣି ଲକ୍ଷ୍ମଣ ସ୍ଥିର ଭାବରେ ବାଲି ପରି [ ଶୁଣି ନ ଶୁଣିଲା ପ୍ରାୟ ] ହୋଇ ରହିଲେ । ମାତ୍ର ସୀତା କହିଲେ, "ହେ ଲକ୍ଷ୍ମଣ ! ତୁମ୍ଭେ ଶୀଘ୍ର ଯାଅ ।"

୩୨ଶ ପଦ—"ବିପତ୍ତି ପଡିବାରୁ ରାମଚନ୍ଦ୍ର ତୁମ୍ଭ ନାମ ଧରି ଡାକୁଛନ୍ତି ।" ସୀତାଙ୍କ ବାଣୀ ଶୁଣି ଲକ୍ଷ୍ମଣ କହିଲେ,'ହେ ସତି ! ସଂସାର ମଧ୍ୟରେ ରାମ ଅଦ୍ୱିତୀୟ ବୀର । ତାଙ୍କଠାରୁ ଏପରି କପଟ ବଚନ କାହାରିକି କି ?" ଲକ୍ଷ୍ମଣ ଏହା କହିବାରୁ ସୀତା ଉତ୍ତର ଦେଲେ, "ତୁ ମୋତେ ଭରତର ସ୍ୱାର୍ଥୀ କରି ତା ପାଖରେ ଦେବୁ ବୋଲି ରାଘବ କପଟରେ ବନକୁ ଆସିଅଛୁ ।"

୩୩ଶ ପଦ—ମୁଁ ଯାଉଛି ଅଗ୍ନିରେ ଝାସ ଦେବି ।" ଏହା କହି ଶୀଘ୍ର ସେ ଅଗ୍ନି ପାଖକୁ ଝାସ ଦେବା ଇଚ୍ଛାରେ ଗଲେ । ତାହା ଦେଖି ଲକ୍ଷ୍ମଣ କହିଲେ,

ବସନ କଷାୟ ଭିକ୍ଷା ଅଣି ଦଅ ଥାଳରେ ବୋଇଲା ।
ବସ କ୍ଷଣେ ଈଶ ଅସନ୍ତୁ ଏ ଭାଷ ଭାଷଣ ମହୀଜା । ୩୪ ।
ବିଂଶପାଣି ଭଣି ଈଶାନ କଲେଣି ଏ ବନେ କି ବସା ?
ବୈଦେହୀ କହୁ ନ ବୁଝ କି ଦେବ ନୋହେ ଧବରେ ଏ ଭାଷା ।
ବୋଲେ ଲଙ୍କପତି ଏଥି ଗତାଗତ କରନ୍ତି ବୃକ୍ଷ କି ?
ବଲ୍ଲଭେ କହଇ ରାଘବଟି ସେହୁ ଭାଷିତ ଜାନକୀ । ୩୫ ।
ବିଚିତ୍ର ବାଣୀ ଶୁଣିଲି ଦୈତ୍ୟ ଭଣି ତୁହି ତ ମାନୁଷୀ ।
ବାରିଧିବାସୀ ମତ୍ସ୍ୟ ସେ ସ୍ଥଳେ ଆସି ତୋ ସଙ୍ଗେ କଳିସି ।
ବକ୍ର ଉକତି କହୁଛ ହୋଇ ଯତି ବୋଇଲେ ପାର୍ଥିବୀ ।
ବୋଲେ ମୁଁ ଲଙ୍କେଶ ତୋତେ ହରି ଅଣି ଆସିଛି ସାଧ୍ୱି ।୩୬।

---

"ଅମ୍ଭେ ଏତ ଅମ୍ବା ଅଟୁଁ । ତୁମ୍ଭେ ଅମ୍ଭଙ୍କୁ ଭିନ୍ନ ମନେ କରୁଅଛ, ତେଣୁ ଦୁହିତା ହେବ ।" ଏପରି କହି ତୁଚ୍ଛ ମନରେ ସେ ଲକ୍ଷ୍ମଣ ବ୍ୟାଘ୍ର ସ୍ଥାନୁ ଗତ କରି ଶରକରରେ ଗଲେ । ଲକ୍ଷ୍ମଣ ଚାଲିଯିବାରୁ ଜାନକୀ ନିଜ ନିଜନ ହେତୁ ଭୟ କରି ଲଜ୍ଜିଲେ ।

୩୪ଶ ପଦ—ଲକ୍ଷ୍ମଣ ଚାଲି ଯିବାରୁ ରାବଣ ନବ ମୁଖ ଓ ଅଠର ହାତକୁ ଲୁଚାଇ, ବ୍ରହ୍ମଚାରୀ ବେଶ ଧରି, ଦେହସାରା ଭସ୍ମ ବୋଳିହୋଇ, କଷାୟବସ୍ତ୍ର ପିନ୍ଧି, ହସ୍ତରେ କମଣ୍ଡଳୁ ଓ ମାଳାଧରି ଶଙ୍କର ନାମକୁ ଜପି ଜପି ଆସି "ଥାଳରେ ଭିକ୍ଷା ଅଣି ଦଅ" ବୋଲି ଡାକିଲା । ତାହା ଶୁଣି ସୀତା କହିଲେ, "କ୍ଷଣେ ମାତ୍ର ବସ, 'ଈଶ' ସ୍ୱାମୀ ଆସନ୍ତୁ ।"

୩୫ଶ ପଦ - ଈଶ ଅସନ୍ତୁ ବୋଲି କହିବାରୁ ରାବଣ ବକ୍ରୋକ୍ତିରେ କହିଲା, "ଏ ବନରେ 'ଈଶାନ' ମହାଦେବ ବସା କଲେଣି କି ?" ସୀତା କହିଲେ, 'ଶିବ' ଦେବଙ୍କୁ ଈଶ କହନ୍ତି, ଏହା କଣ ତୁମ୍ଭେ ବୁଝି ପାରିଲ ନାହିଁ ?" ରାବଣ ପୁଣି ପଚାରିଲା, "ଏ ବନରେ ଧବ ବୃକ୍ଷସବୁ ଯିବା ଆସିବା କରନ୍ତି କି ?" ଜାନକୀ ଉତ୍ତର ଦେଲେ, 'ବଲ୍ଲଭ' ପତିଙ୍କୁ ଧବ କହନ୍ତି, ମୋ ବଲ୍ଲଭଙ୍କ ନାମ ରାଘବ ଅଟେ ।"

୩୬ଶ ପଦ—ରାବଣ କହଇ, "ତୋଠାରୁ ଆଶ୍ଚର୍ଯ୍ୟ କଥା ଶୁଣିଲି । ତୁ ତ ମାନବୀ, ସମୁଦ୍ର ମଧ୍ୟରେ ଥିବା 'ରାଘବ' ମତ୍ସ୍ୟ ସ୍ଥଳକୁ ଆସି ତୋ ସହିତ କଳହ କରେ କି ?" ସୀତା କହିଲେ—"ତୁମ୍ଭେ ଯତି ହୋଇ ଏପରି ବକ୍ରୋକ୍ତିରେ କଥା କହୁଅଛ ?" ଏହା ଶୁଣି ରାବଣ ଉତ୍ତର ଦେଲା, ମୁଁ ଲଙ୍କାର ରାଜା, ହେ ସୀତେ ! ତୋତେ ଅପହରି ଆସିଅଛି ।

ଅଦ୍ଭୁତ କିସ କହିବ ମୋର ଦେଶ କନକ ମୃତ୍ତିକା ।
ବଂଶଜ୍ଞ ଦଶବଦନ ବିଶେଷ ପଦ୍ମ ନାୟିକା ।
ବଜ୍ରପାଣି ବସେ ଇନ୍ଦ୍ର ଦ୍ୱାସ୍ଥ ପାଶେ ଅସ୍ତ୍ର ଜାତରେ ।
ବ୍ରହ୍ମାର ଚତୁର୍ଥ ପୁରୁଷ ମୁଁ ସତ ଚିରାୟୁ ତା ବରେ । ୩୭ ।
ବୋଇଲେ ମଥିଳଜା ଜାତୁଧାନ ଯା ଯା ନୋହୁ ଶିରଚ୍ଛେଦ ।
ବୃଷାଳି ବର୍ଣ୍ଣକ ବିରୂପ ଜ୍ଞ ଚିତ୍ତ ବଢ଼ାଇ ସମ୍ବାଦ ।
ବୀରକେଶରୀ ଜାୟାକୁ ଲୋଡ଼ୁ ହର ହୋଇଛୁ କେବେହେଁ ।
ବୀର ଅରଣ୍ୟ ନୃପୁଁ ତୋ ପତି ଧନ୍ୟ ହେବ କି ସେ କହେ । ୩୮ ।
ବପ୍ତା ଦଶରଥ ଜଣା ସାମର୍ଥ ତସ୍ୱର୍ଜ ଭୃଗୁପ ।
ବୋଲେ ମୈଥିଳୀ ତା ଗର୍ବ ଦଳ ନାଶ ଯିବ ରେ କୌଣପ ।

---

୩୮ଶ ପଦ—ମଥିଳଜା—ସୀତା । ଜାତୁଧାନ—ରାକ୍ଷସ । ବୃଷ—ମୂଷା ଅଳି—ବିଛା । ବର୍ଣ୍ଣକ—ଝିଲ୍ଲିଅ । ବିରୂପ—ବିକୃତ ରୂପ ।

---

୩୭ଶ ପଦ—"ମୋର ଐଶ୍ୱର୍ଯ୍ୟ କଥା କେଣେ କା କହିବ ? ମୋ ଦେଶର ମାଟିସବୁ ସ୍ୱର୍ଣ୍ଣ ନିର୍ମିତ । ମୋର କୋଟିଏ ଭ୍ରାତ, ଦଶମୁଖ ବିଦ୍ୟମାନ । ମୋର ପଦ୍ମିନୀ ଜାତୀୟା ସ୍ତ୍ରୀମାନେ ଅଛନ୍ତି । ମୋର ବଜ୍ରପାଣି ହେଲୁ ଇନ୍ଦ୍ର, ମୋର ଦ୍ୱାରପାଳ ପାଖରେ ଆସି ବସେ । ମୁଁ ବ୍ରହ୍ମାଙ୍କର 'ଚତୁର୍ଥ ପୁରୁଷ' ଅଣନାତି । ( କେଣୁ ଜାତରେ ଅସ୍ତ୍ର ) । ପୁଣି ବ୍ରହ୍ମାଙ୍କ ବରରେ ଚିରାୟୁ ହୋଇଅଛି— ଏହା ମିଥ୍ୟା ନୁହେଁ ।"

୩୮ଶ ପଦ—ରାବଣର କଥା ଶୁଣି ସୀତା କହିଲେ, "ରେ ରାକ୍ଷସ ! ଶିରଚ୍ଛେଦ ନ ହେଉଣୁ, ତୁ ଏଠାରୁ ଶୀଘ୍ର ପଳାଇ ଯା । ତୁ ମୂଷା, ବିଛା, ଭ୍ରମର, ବିକଳାଙ୍ଗ ଓ ଝିଲ୍ଲିଅ ଅଟୁ । [ ତୁ କହିଲୁ ମୋ ଦେଶ କନକ ମୃତ୍ତିକା—ମୂଷାର ମୃତ୍ତିକାରେ ଆଦର ଥାଏ । ତୁ କହିଲୁ ମୋର ବଂଶ ବୃଦ୍ଧ—ବିଛାର ବହୁତ ବୃଦ୍ଧ ଥାଏ । ତୁ କହିଲୁ ମୋର ପଦ୍ମିନୀ ନାୟିକା ଅଛନ୍ତି—ଭ୍ରମରର ବହୁତ ପଦ୍ମିନୀ ଥାନ୍ତି । ତୁ କହିଲୁ ଦଶମୁଣ୍ଡ—ତେଣୁ ବିକଳାଙ୍ଗ, ତୁ କହିଲୁ ଚିରାୟୁ—ଝିଲ୍ଲିଅ ଚିରାୟୁ ଅଟନ୍ତି ] । ଝିଲ୍ଲିଅ ହୋଇ ତୁ ବୀର କେଶରୀ ଭାର୍ଯ୍ୟା ହରିବାକୁ ଇଚ୍ଛା କରୁଅଛୁ,—ଏହା ସମ୍ଭବ ହୋଇଣ କି ?" ସୀତାଙ୍କ କଥା ଶୁଣି ରାବଣ ପୁଣି କହିଲା, "ବୀର ଅନରଣ୍ୟ ରଜାଠାରୁ ( ରାମର ପୂର୍ବପୁରୁଷ ) ତୋ ପତି ବେଶୀ ଶୂରଂମାର ଯୋଗ୍ୟ କି ? [ ବେଶୀ ବଳିଷ୍ଠ କି ?—ମୁଁ ତ ତାକୁ ମାରିଛି ]

୩୯ ଓ ୪୦ଶ ପଦ—"ତାହାର ପିତା । ( ତୋ ସ୍ୱାମୀର ପିତା ) ଦଶରଥର ଯେପରି ସାମର୍ଥ୍ୟ, ତା ଜଣାଅଛି । ତାକୁ ପର୍ଶୁରାମ ଡରାଇବାରୁ ସେ

ବଂଶାବଳିମାନ ଉଚ୍ଚରେ ସୁନନ୍ଦନ ସେ ଭାଳ ପ୍ରମାଣ ।
ବହି ନିଜମୂର୍ତ୍ତି ବହଳ ନେବା ସ୍ପୃହା ଆରମ୍ଭ ରାବଣ । ୩୯ ।
ବହ୍ନି ଅନ୍ତରେ ଗୁପତ ସତ୍ୱରେ ନ ଦେଖି ଲଙ୍କେଶ ।
ବେଦବତୀ ମତ ଏହି ହେଲା ସତ ଭାବୁରେ ମାନସ ।
ବ୍ୟକ୍ତ ଦର୍ଶ ପୁଣି ବଳେ ଧରି ଆଣି ଅଣନ୍ତେ ଅଙ୍ଗଣ ।
ବାତ ସହିତ ସ୍ତମ୍ଭିତ ତରଳିତ ହୋଇଲା ପାଷାଣ । ୪୦ ।
ବସୁଧା କମ୍ପିତା ଚକିତ ଦେବତା କି ହେଲା କି ହେଲା ।
ବଚନେ ଶୋଭନେ ଅଶ୍ରୁ ଝରମୋଚନେ ଆକାଶ ପୂରିଲା ।
ବରଷିଲା ଝୋପା ଝୋପା ଘନ ବିନା ନ ଥାଇ ମୁଦିରେ ।
ବିହଙ୍ଗେ ଉଦ୍ଭ୍ରାନ୍ତେ ସ୍ୱବନ୍ତି ବୃତଟେ ବାରିଲେ ପାନରେ ।୪୧।
ବିବୁଧ ବିବିଧ ବୁଦ୍ଧି କଲେ ସନ୍ଧି କେ ବୋଲେ ଏ ସୀତା ।
କେ ବୋଲେ କେ ଛାୟା କେ ବୋଲେ ମାୟା କାହ୍ନା ବାଣିଲ ବିଧାତା

---

ସ୍ତ୍ରୀମାନଙ୍କ ମଧ୍ୟରେ ଲୁଚି ରହିଲୁ ।" ସୀତା କହିଲେ, "ସେହି ପର୍ଶୁରାମର ଗର୍ବ ରାମଚନ୍ଦ୍ର ହରିଲେ ଅଛନ୍ତି । ରେ ରାକ୍ଷସ ! ତୁ ନିଶ୍ଚୟ ନାଶଯିବୁ । ପୂର୍ବ ସ୍ୱକୁଳ ଅନରଣ୍ୟଙ୍କୁ ମାରିକୁ ବୋଲି ଯେ ଗର୍ବ ଦେଖାଉଛୁ, ସୂର୍ଯ୍ୟ କୁଳର ଅଭିମାନକୁ ଉଦ୍ଧାର କରେ । ବର୍ତ୍ତମାନ ସେ ସମୟ ଉପସ୍ଥିତ । [ ସୂର୍ଯ୍ୟବଂଶଧର ରାମଚନ୍ଦ୍ର ତୋତେ ମାରି କୁଳ ମର୍ଯ୍ୟାଦା ବଢ଼ାଇବେ ]" । ଏହା ଶୁଣି ରାବଣ ନିଜରୂପ ଧରି ବଳପୂର୍ବକ ସୀତାଙ୍କୁ ନେବାକୁ ଆରମ୍ଭ କରନ୍ତେ, ସୀତା ଶୀଘ୍ର ଅଗ୍ନି ମଧ୍ୟରେ ଲୁପ୍ତ ହେଲେ । ରାବଣ ତାଙ୍କୁ ଦେଖି ନ ପାରି ମନ ମଧ୍ୟରେ ବିଚାର କଲା, ବେଦବତୀ କନ୍ୟା ପରି ଏ କନ୍ୟା ହେଲା କି । ପୁଣି ସୀତା ପ୍ରକାଶିତ ହୋଇ ଦେଖାଯାନ୍ତେ, [ ମାୟା ସୀତା ପ୍ରକାଶିତ ହୁଅନ୍ତେ ] ରାବଣ ପଞ୍ଚ କୁଟିଆର ଅଗଣାକୁ ବଳାତ୍କାରରେ ଧରି ଆଣିଲା । ସେତେବେଳେ ବାୟୁ ଓ ଜଳ ସ୍ରୋତ ସ୍ଥିର ହୋଇଗଲେ ଏବଂ ପାଷାଣ ତରଳି ଗଲା ।

୪୧ଶ ପଦ—ପୃଥିବୀ କମ୍ପିତ ହେଲା, ଦେବତାମାନେ ଚମତ୍କୃତ ହେଲେ । କି ହେଲା, କି ହେଲା ?—ଏହି ଶୋକପୂର୍ଣ୍ଣ ବାକ୍ୟରେ ଆକାଶ ପୂର୍ଣ୍ଣ ହେଲା । ସୀତା ଅଶ୍ରୁପାତ କରିବାରୁ ପକ୍ଷୀମାନେ ଉଦ୍ଭ୍ରାନ୍ତ ମନରେ ଭାବିଲେ, ମେଘ ନ ଥାଇ ମେଘ ଝୋପାଝୋପା ହୋଇ ବର୍ଷିଲା କିପରି ? ଚାତକ ପକ୍ଷୀମାନେ ତା ପାନ କରିବାକୁ ଲାଗିଲେ, ତାହା ବୃଷ୍ଟିଜଳ ନୁହେ ।

୪୨ଶ ପଦ—ଦେବତାମାନେ ନାନାପ୍ରକାର ବିଚାର ଠିକ୍ କଲେ । କେଉଁ କହିଲା, 'ଏ ସୀତା,' କେ କହିଲା, 'ଏ ଛାୟା,' କେ କହିଲା, "ଏ ମାୟା

ବନ୍ଦୀ ଭାଷାପୂର୍ବରେ ମୃଦୁଳ ପ୍ରଭାତେ ବସାଇ ସ୍ୟନ୍ଦନେ ।
ବନ୍ଦୀ ହୋଇ ସେ ସ୍ତୁତିପାଠ ପଠନେ ବାନ୍ଧିଲ ବନ୍ଧନେ । ୪୨ ।
ଜନ ଜଲଜା ହା ରାମ ସ୍ୱନେ ପୂର୍ଣ୍ଣ ଜଟାୟୁ ଡାକଇ ।
ଜନପ୍ରିୟଙ୍କୁ ଶିଖାଇ ଗୀତ ଶୋକବସନ୍ତୀ ସ୍ୱରେ କେ ?
ବଜାଇ ବୀଣାରେ ନାରଦ ରାମରେ ସଙ୍ଖୋଳି ଯାଇ କି ?
ବଂଶବାହୁ ସୀତା ଏକ ରଥେ ସ୍ଥିତା ଗୃଧ୍ରାନ୍ତେ ଅନେକ । ୪୩ ।
ବେଦପୋଥି କେ ସୁରାପ କରେ ଦେଲ ବୋଲି ସେ ଧାଇଁଲ ।
ବିସ୍ତାରି ଚଞ୍ଚୁ ସ୍ୟନ୍ଦନ ଗ୍ରାସ କରୁଁ ଉଦ୍‌ଗାର ଥୋଇଲା ।
ବାଞ୍ଛି ଅଗସ୍ତି ଉଦରେ ଜୀର୍ଣ୍ଣମତ ଏକ୍ଷଣି ହୁଅନ୍ତୁ ।
ବୈଦେହୀ ସାହୁ କହି ଦେହ ବିଦାରି ମୁଖ ନୋଟି ଦେନ୍ତୁ । ୪୪ ।

---

୪୩ଶ ପଦ—ଜନଜଳଜା—ଜନଭୂମି । ଜଳଜା—ଭରସ୍ତ୍ରୀ ।
୪୪ଶ ପଦ—ସୁରାପ—ମଦ୍ୟପ ଅର୍ଥାତ୍ ଯେ ସୁରା ବା ମଦ୍ୟ ପାନ କରେ ।

---

ସୀତା,’ ଆଉ କିଏ କହୁଛି, ‘ସତ କଥା କିଣ ବିଧାତା ଜାଣେ ।’ ବନ୍ଦୀଙ୍କରେ ବନ୍ଦୀ ଲୋକଙ୍କୁ ବନ୍ଦ କରି ରଖିଲା ପରି ସୀତାଙ୍କୁ ରଥରେ ବସାଇ ରାବଣ ଶୀଘ୍ର ରଥ ଚଳାଇ ନେଲା । ସୀତା ସେ ରଥରେ ‘ବନ୍ଦୀ’ ଭାଟ ପ୍ରାୟ ସ୍ତୁତି ପାଠ କରିବାକୁ ଲାଗିଲେ । (ସୀତା ରାମଚନ୍ଦ୍ରଙ୍କ ଗୁଣ ବାହୁନି କାନ୍ଦିବାକୁ ଲାଗିଲେ ) ।

୪୩ଶ ପଦ—ଜନଭୂମି ‘ହା ରାମ’ ସ୍ୱରରେ ପୂର୍ଣ୍ଣ ହୁଅନ୍ତେ ( ଅଥବା “ଜନଜା” ଶ୍ରେଷ୍ଠ ସ୍ତ୍ରୀ ସୀତାଙ୍କ ହା ରାମ ସ୍ୱନରେ ଜନ ପୂର୍ଣ୍ଣ ହୁଅନ୍ତେ ) ଜଟାୟୁ ବିଚାର କଲା, ‘କୋକିଳକୁ ଶୋକବସନ୍ତୀ ରାଗରେ କେଉଁ ଲୋକ ଗୀତ ଶିଖାଇଲା କି ? କିମ୍ବା ନାରଦ ବୀଣାରେ ରାମ ନାମ ବସନ୍ତୀ ରାଗରେ ଗାଇ ରାମଙ୍କୁ ସଙ୍ଖୋଳିବାକୁ ଯାଉ ଅଛନ୍ତି କି ?” ଜଟାୟୁ ଏହା ବିଚାର ଉପରକୁ ଗୃଧ୍ରାନ୍ତେ ଦେଖିଲା ଯେ ରାବଣ ସୀତା ଏକା ରଥରେ ବସି ଅଛନ୍ତି ।

୪୪ଶ ପଦ—“ମଦୁଆ ହାତରେ ବେଦପୋଥି କିଏ ଦେଲା ?” ଏହା ଭାବି ଜଟାୟୁ ଧାଇଁଲା । ସେ ଥଣ୍ଟ ବିସ୍ତାରି କରି ରଥକୁ ଗିଳିଦେଇ ପୁଣି ବାନ୍ତି କରି ପକାଇଲା । (ରଥରେ ସୀତା ଅଛନ୍ତି, ଗିଳିଦେଲେ ସୀତା ପେଟରେ ଜୀର୍ଣ୍ଣ ହୋଇଯିବେ, ଏହା ଭାବି ବାନ୍ତି କଲା) । ରାବଣକୁ ଚାହିଁ କହିଲା, “ଅଗସ୍ତି ଋଷିଙ୍କ ପେଟ ସମୁଦ୍ର ଜୀର୍ଣ୍ଣ ହେଲା ପ୍ରାୟ ତୁ ଏକ୍ଷଣି ମୋ ପେଟରେ ଜୀର୍ଣ୍ଣ ହୋଇଯାନ୍ତୁ, ମାତ୍ର ସୀତା ଯୋଗୁ ରକ୍ଷା ପାଇଲୁ ।” ଏହା କହି ନଖ ଓ ଚଞ୍ଚୁ ଦ୍ୱାରା ରାବଣକୁ ବିଦାରି ପକାଇଲା ।

ଏମାନଙ୍କୁ ପକ୍ଷପାତେ ପକ୍ଷଘାତେ ଭଙ୍ଗିଲ ଉଦ୍‌ବେଗେ ।
ବାମେ କ୍ଷୀଣକୁକ୍ଷୀ ଦକ୍ଷିଣେ ପକ୍ଷକୁ ଛେଦଇ ଖଡ୍ଗେ ।
ବସି ପୁଷ୍ପକରେ ଭକ୍ତୁଁ ଅସିବାରେ ଶୂଷ୍କରେ ଗମନ ।
ବଣ୍ଟି ଦେବାଯାଏ ଅଯୋଧ୍ୟାଧିଶରେ ଥାଉଁ ମୋ ଜୀବନ ।୪୫।
ବୋଲେଁ ଠାକୁରାଣୀ ରକ୍ଷ ଛଳ ଭଣି ଅଯୋଧ୍ୟାବର ଯେ ।
ବାରତା ପ୍ରାପତେ କି କରିବ ମୋତେ ପୁଣି ସେ ନାଗରେ ?
ବ୍ୟୋମେ ରଥ ଯାଇ ଋଷ୍ୟମୂକେ ପାଇ ଅବଳା ଦେଖିଲେ ।
ବସିଛନ୍ତି ସୁଗ୍ରୀବ ପେଞ୍ଚଣ ସଚିବ ଭୂଷଣ କାଢ଼ିଲେ । ୪୬ ।
ବସନେ ବାନ୍ଧି ପକାଇ କୃପାନିଧି ପାଇବେ ଚିହ୍ନିଣ ।
ବାନରେଶ ପାଇ ଦେଲା ଶୂନ୍ୟ ଗୃହିଁ ଜାନକୀ ଭୂଷଣ ।

---

୪୫ଶ ପଦ—ଶୂଷ୍କରେ—ଆକାଶରେ ।

---

୪୫ଶ ପଦ—ସୀତାଙ୍କୁ ରକ୍ଷା କରିବା ଆଶାରେ ଉଦ୍‌ବେଗ ହୋଇ ସୀତାଙ୍କ ପକ୍ଷ ନେଇ ଜଟାୟୁ ପକ୍ଷାଘାତ ଦ୍ୱାରା ରାବଣର ରଥକୁ ଭଙ୍ଗି ପକାଇଲା । ଏହା ଦେଖି ରାବଣ ବାମ ହସ୍ତରେ କ୍ଷୀଣକଟୀ ସୀତାଙ୍କୁ ଧରି, ଦକ୍ଷିଣ ହସ୍ତରେ ଖଡ୍ଗ ଧରି ଜଟାୟୁର ପକ୍ଷ ଛେଦନ କଲା । ତତ୍ପରେ ପୁଷ୍ପକ ଯାନକୁ ସ୍ମରଣ କରନ୍ତେ, ସେ ରଥ ଆସିଲା । ରାବଣ ସୀତାଙ୍କୁ ନେଇ ତହିଁରେ ବସି ଶୂନ୍ୟମାର୍ଗରେ ଗମନ କଲା । ସେତେବେଳେ ସୀତା ଜଟାୟୁକୁ କହିଲେ, "ଅଯୋଧ୍ୟାବର" ଶ୍ରୀରାମଙ୍କୁ ବାଣ୍ଟି ଦେବାଯାଏ, ମୋ ଜୀବନ ଥାଉ ।"

୪୬ଶ ପଦ—ସୀତା ଏହା କହନ୍ତେ, ରାବଣ ଛଳ କରି କହିଲା, "ସେ 'ଅଯୋଧ୍ୟାବର' ହେଉ, ସଙ୍ଗେ ଯୁଦ୍ଧ କରିବାକୁ ଅସମର୍ଥ, ତେଣୁ ଅଯୋଧ୍ୟାରାଜ୍ୟକୁ 'ବରଦ' ତ୍ୟାଗ କଲା । ସେ ପୁଣି ମାନବ ମାତ୍ର, ସେ ବାରତା ପାଇଲେ ତା କରିବାର ମୋର କଣ ଏହି ସମୟରେ ରଥ ଆକାଶମାର୍ଗରେ— ଯାଇ ଋଷ୍ୟମୂକ ଗିରି ସମାନ ପହଞ୍ଚିଲା । ସେ ଗିରିରେ ସୁଗ୍ରୀବ ମନ୍ତ୍ରୀମାନଙ୍କୁ ସଙ୍ଗତରେ ନେଇ ବସିଛନ୍ତି । ସୀତା ତାହା ଦେଖି ଅପଣା ଦେହରୁ ଅଳଙ୍କାରମାନ କାଢ଼ିଲେ ।

୪୭ଶ ପଦ—"କୃପାନିଧି" ରାମଚନ୍ଦ୍ର ଏହା ପାଇବେ ସୀତା ଏହିପରି ମନରେ ବିଚାର କରି, ବସନରେ ବାନ୍ଧି ଅଳଙ୍କାରମାନ ପକାଇ ଦେଲେ । ବାନରରାଜା ସୁଗ୍ରୀବ ସେ ଅଳଙ୍କାର ପାଇ ଶୂନ୍ୟକୁ ଗୃହିଁ ଦେଲେ । ତା ଦେଖି ଜାନକୀ କହିଲେ, "ରାମଙ୍କୁ ଏ ବାଣ୍ଟି ଦେବ,—ରାବଣ ମୋତେ ଲଙ୍କା ଗ୍ରାମକୁ

ବାଣ୍ଡି ବଳ ସମେ ମୋତେ ଲଙ୍କାସ୍ଥାନେ ନେଉଛି ରାବଣ ।
ବିପୋଉଲେ ଶୁଣି ମୂର୍ଚ୍ଛି ମୋ ମୃତ୍ୟୁ କାହାକୁ ଦୂଷଣ ।୪୭।
ବୋଲିବାକୁ ରଥ ଗଲା ଏତେ ପଥ ଅଦୃଶ୍ୟ ହୋଇଲା ।
ବିଭୂଷଣମାନ ଭରଣ ଯତନ ସୁଗ୍ରୀବ ଥୋଇଲା ।
ବିଯତୁଁ ଖସାଇ ରଥ ପୁରେ ଯାଇ ଅଶୋକ ବିପିନେ ।
ବେଢ଼ାଇ ସହସ୍ର ଅସୁରୀ ଜଗାଇ ତହିଁରେ ପ୍ରଧାନେ ।୪୮।
ବେଭାରେ ସମର୍ପି ସମର୍ପାକୁ ସଖୀ ତ୍ରିଜଟା କରାଇ ।
ବୃଦ୍ଧି ହରଷ ଭବନରେ ପ୍ରବେଶ ହସିଲା ହୁଅଇ ।
ବାନ୍ଧବୀ ସମର ପାଶବନ୍ଧା ମୃଗୀ ପରାୟେ ଭୟରୁ ।
ବହିଲା ଶିଳା ପିତୁଳା ତୁଲା ହିଣ୍ଡି ପୃଣୀଳା ହେବାରୁ ।୪୯।
ବିଧାତା ବଚନେ ସୁଧା ଘେନି ବନେ ନାରଦ ମିଳିତ ।
ବିମୋହିତ କରି ଅସୁରୀମାନଙ୍କୁ କହିଲେ ସଙ୍କେତ ।
ବିଚ୍ଛେଦ ତୁଟିବ ଚତୁର୍ଦ୍ଦଶମାସେ ନ କର ଶୋଚନା ।
ବଧ ରାବଣ ସଗୋଷ୍ଠ ହୋଇ ହେବ ବିମଳଲୋଚନା ।୫୦।

---

୪୮ଶ ପଦ—ବିଯତୁଁ—ଆକାଶରୁ ।

---

ନେଇ ଯାଉଛି । ସେ ମୋତେ ମନରୁ ପାଶୋରି ଦେଲେ, ନିଶ୍ଚୟ ମୋର ମୃତ୍ୟୁ ହେବ । ଏ ନିନ୍ଦା କାହାକୁ ହେବ ? ( ତାଙ୍କୁହିଁ ଏ ନିନ୍ଦା ହେବ ) ।”

୪୮ ଓ ୪୯ଶତ୍ ପଦ—ସୀତା ଏହି କଥା କହୁ କହୁ ରଥ ଏତେ ଦୂର ଗଲା ଯେ, ଆଉ ଦୃଶ୍ୟ ହେଲା ନାହିଁ । ସୁଗ୍ରୀବ ସୀତା ପକାଇଥିବା ଅଳଙ୍କାରମାନ ଯତ୍ନ କରି ଥୋଇଲେ । ରାବଣ ଆକାଶରୁ ରଥ ଖସାଇ ଆପଣା ପୁରକୁ ଯାଇ ଅଶୋକ ବନରେ ସହସ୍ରେ ଅସୁରୀ ବେଢ଼ାଇ ସୀତାଙ୍କୁ ରଖିଲା । ସେମାନଙ୍କ ମଧ୍ୟରେ ପ୍ରଧାନ ସରମା ରାକ୍ଷସୀକୁ ସୀତାଙ୍କୁ ସମର୍ପଣ କଲା ଏବଂ ତ୍ରିଜଟା ନାମକ ରାକ୍ଷସୀକୁ ତାଙ୍କ ସଖୀ କରାଇ ଆନନ୍ଦ ବୃଦ୍ଧି ହୋଇଥିବାରୁ ହସ ହସ ହୋଇ ଯାଇ ନିଜ ଗୃହରେ ପହଞ୍ଚିଲା । ସୀତା ଭୟ ପାଇ ପାଶବଦ୍ଧ ହରିଣୀ ପ୍ରାୟ ହେଲେ, ମାତ୍ର ପୁଣୀଳା ହେତୁ ପ୍ରସ୍ତର ମୂର୍ତ୍ତି ପରି ତୁନି ହୋଇ ରହିଲେ ।

୫୦ଶତ୍ ପଦ—ବ୍ରହ୍ମାଙ୍କ ଆଜ୍ଞାରେ ନାରଦ ଅମୃତ ନେଇ ଯାଇ ଅଶୋକବନରେ ମିଳିଲେ, ଅସୁରୀମାନଙ୍କୁ ବିମୋହିତ କରି ସୀତାଙ୍କୁ ସଙ୍କେତ ଦେଇ କହିଲେ, “ଚଉଦ ମାସ ପରେ ତୁମ୍ଭର ବିଚ୍ଛେଦ ତୁଟିବ, ସେଥିପାଇଁ ଶୋକ କର ନାହିଁ । ହେ ନିର୍ମଳ ଲୋଚନେ ! ରାବଣ ସବଂଶରେ ବିନାଶ ପ୍ରାପ୍ତ ହେବ ।”

ବାଧା ନ କରିବ କ୍ଷୁଧା ପିପାସା ଏ ସୁଧା କର ଗ୍ରାସ ।
ବୈଦ୍ୟ ଅଷ୍ଟାଙ୍ଗବ୍ୟାଧିମନ୍ତେ ଔଷଧ ବହୁଳ ସନ୍ତୁଷ ।
ବିବେକ ହେବ ପାଇବ ତ ମୁଁ ଧନ୍ୟ ଈଶ୍ୱର ଭରସା ।
ବାହୁଡିଲେ ଋଷି ଅମୃତକୁ ଗ୍ରାସି ବସିଲେ ସୁହୃଷା । ୫୧ ।

ବିମ୍ବୋଷ୍ଠୀ ଅବନୀଦୃଷ୍ଟି ଅତ ଦକ୍ଷୀ କପୋଳେ ଧରି କର ।
ବ୍ୟାକୁଳ କେତେ ନ ଦେଖି ହେବେ ମୋତେ କରେ ଏ ବିଚାର ।
ବଇଦେହୀଶ ବିଳାସ ନାମ ଗୀତ ବକାରେ ରଚନ ।
ବାଳପଦେ ଗ୍ରନ୍ଥ ଉପେନ୍ଦ୍ର କୃତ ବୁଝିବେ ସୁମନ । ୫୨ ।

---

୫୧ଶତ ପଦ—"ଏ ଅମୃତ ନେଇ ଗ୍ରାସ କର, ତୁମ୍ଭକୁ କ୍ଷୁଧା ତୃଷା ବାଧିବ ନାହିଁ ।" ଅଷ୍ଟାଙ୍ଗ ବ୍ୟାଧି ଘୋଟିଥିବା ରୋଗୀକୁ ବୈଦ୍ୟର ଔଷଧ ଭଳି କଲ ପଣ ସୀତାଙ୍କୁ ନାରଦଙ୍କ ବାଣୀ ସୁସ୍ଥ କଲା । ସେ ବିଚାର କଲେ, "ମୁଁ ରାମଚନ୍ଦ୍ରଙ୍କୁ ପୁନର୍ବାର ପାଇ ଧନ୍ୟ ହେବି । ଏଥିପାଇଁ କେବଳ ମାତ୍ର ଈଶ୍ୱର ଭରସା ।" ତତ୍ପରେ ନାରଦ ଋଷି ବାହୁଡି ଗଲେ, ସୀତା ଅମୃତ ଖାଇ ବସି ବସିଲେ ।

୫୨ଶତ ପଦ—ସୀତା ରାମଚନ୍ଦ୍ରଙ୍କ ବିରହରେ ଅତି ମ୍ଳାନ ଭାବରେ ମୁଖ ପୋତି ଭୂମିକୁ ଚାହିଁ ଦକ୍ଷିଣ ହସ୍ତ ଗଣ୍ଡସ୍ଥଳରେ ଦେଇ ଚିନ୍ତା କଲେ, "ରାମଚନ୍ଦ୍ର ମୋତେ ନ ଦେଖି କେତେ ବ୍ୟାକୁଳ ହେବେ । ବୈଦେହୀଶବିଳାସ ନାମକ କାବ୍ୟ ବ ଆଦ୍ୟ ଅକ୍ଷରରେ ରଚିତ ହୋଇଅଛି । ଉପେନ୍ଦ୍ର କୃତ ବାଳକ ପଦର ଏ ଗ୍ରନ୍ଥ ପଣ୍ଡିତମାନେ ବୁଝିବେ ।

# ପଞ୍ଚବିଂଶ ଛାନ୍ଦ

## ରାଗ—ଶଙ୍କରାଭରଣ

ବାଣୀ ବାଣ୍ଡବାରେ ହାହା ଲକ୍ଷ୍ମଣ ଶବଦ ।
ଶରବନେ ରାମ ଶ୍ରମ ହୋଇଲେ ସ୍ତବଧ ।
ବିହ୍ୱଳିତ ନର-ବାଣୀ ।
ଶଙ୍ଖଦ ନ ପୂର୍ଣ ଉପସ୍ଥିତ ହୁଏ ଶୁଣି । ୧ ।
ଶମଳ କେମନ୍ତ ଚନ୍ଦ୍ର ସେ ନ ମାରୁଁ ମର ।
ବସିଲା କଳଙ୍କ ହୋଇ ଅଙ୍କେ ସେହୁଗର ।
ବଧ ମୋହ ଯୋଗୁଁ ଏହୁ ।
ବଶ୍ୱେ କଳଙ୍କ ନ କରୁ ରାମଚନ୍ଦ୍ର ମୁହିଁ । ୨ ।
ଶରୀରୁଁ ମାୟାମୃଗର ଜ୍ୟୋତି ବାହାରିଲା ।
ବପୁରେ ସେ ଦୂଷଣରିପୁର ମିଶିଗଲା ।
ବଡ଼ ସୁକୃତ ଶବର ।
ବାହୁଡିଲେ ଘର ଭଣ୍ଡ ସୁମନସବର । ୩ ।

---

୧ମ ପଦ—ବାଣୀ—ଶର । ରାମ—ମୃଗ । ନରବାଣୀ—ମନୁଷ୍ୟ ପରି ଥା ।

୩ୟ ପଦ—ଶରୀରୁଁ—ଦେହରୁ । ବପୁରେ—ଦେହରେ । ଦୂଷଣରିପୁ—ରାମଚନ୍ଦ୍ର । ଶବର—ମୃତଦେହର । ସୁମନସବର—ଦେବଶ୍ରେଷ୍ଠ ବା ପଣ୍ଡିତ ଶ୍ରେଷ୍ଠ ।

---

## ପଞ୍ଚବିଂଶ ଛାନ୍ଦ

୧ମ ପଦ—ଶର ବାଜିବା ମାତ୍ରେ କନକମୃଗ 'ହାହା ଲକ୍ଷ୍ମଣ' ଶବ୍ଦ କରିବାରୁ ରାମଚନ୍ଦ୍ର ଚକିତ ହୋଇ ଭାବିଲେ, "ଏ ପଶୁ ହୋଇ ମନୁଷ୍ୟପରି କଥା କହିଲା ! ବିପଦ କିଛି ପଡ଼ିବ ନାହିଁ ତ ?" (ପଶୁ କଥନ ଶ୍ରବଣରେ ବିପଦ ପଡ଼ିବାର ସମ୍ଭାବନା ।)

୨ୟ ପଦ—"ଚନ୍ଦ୍ର ବିପରି ନିଷ୍କଳଙ୍କ, ସେ ନ ମାରି ମଧ୍ୟ ମୃଗ ନିଜ ଇଚ୍ଛାରେ ମରି ତା କୋଳରେ କଳଙ୍କ ପ୍ରାପ୍ତ ହୋଇ ବସି ରହିଲା । ଅଥଚ ଏ ମୃଗ ମୋ ହସ୍ତରେ ବଧ ହେଲା । ମୁଁ 'ରାମଚନ୍ଦ୍ର' ମନୋହର ଚନ୍ଦ୍ର । ସଂସାର ମଧ୍ୟରେ ଏ ମୃଗ ମୋହର କଳଙ୍କ ସ୍ୱରୂପ ନ ହେଉ ।"

୩ୟ ପଦ—ମାୟାମୃଗର ଦେହରୁ ଜ୍ୟୋତି ବାହାରିଲା । ସେ ଜ୍ୟୋତି ପାପର ଶତ୍ରୁ ରାମଚନ୍ଦ୍ରଙ୍କ ଦେହରେ ମିଶିଗଲା । ସେ ମୃତଦେହର ବଡ଼ ପୁଣ୍ୟ, କାରଣ ଦେବଶ୍ରେଷ୍ଠ ରାମଚନ୍ଦ୍ର ତାକୁ ଭାର କରି କାନ୍ଧରେ ବହି ବାହୁଡିଲେ ।

ବାଟରେ ଅନୁଜ ଭେଟ ମତ ଜରଯିତା ।
ବୋଲେ ବୀର ସୀତା କାହିଁ କଲୁ ତୁ ଏକତା ।
ବକ୍ଷୁଁ ହୋଇଲେ ଅନ୍ତର ।
ବଢ଼ଇ ଯେ ଥର ଭୟେ ହୃଦୟ ପଥର । ୪ ।
ବୋଇଲେ ସୁମିତ୍ରାସୁତ ଶୁଣ ରଘୁଗଣ ।
ଜଣାହେଲେ ଜଣାଥାଇଁ ତୁମ୍ଭ ବୀରପଣ ।
ବାଣୀ ମୋର ନାମେ ନାହିଁ ।
ଝଟାଣରୁ ସରୁମଧ୍ୟା ଗଲୁ ଭୟ ବହି । ୫ ।
ବୈଦେହୀ ପ୍ରମାଣ ଫଳେ କଟୁ ଭାବ ଜାତ ।
ଉଦାରନ୍ତ ହୃଦକ୍ଷେତ୍ର ସୀତା ନାମ ସତ ।
ବିନା ଭକ୍ଷୁଁ ଜନେ ବାମା ।
ବାଣୀ ସୁଧା ବୋଲେ ସୁରମତେ ନୋହେ ସମା । ୬ ।

---

୪ର୍ଥ ପଦ—ଅନୁଜ—ସାନଭାଇ । ଥର—କମ୍ପନ । ହୃଦୟପଥରେ—ମନରେ ।

୫ମ ପଦ—ସରୁମଧ୍ୟା—କ୍ଷୀଣକଟୀ ବନିତା ।

୬ଷ୍ଠ ପଦ—ବୈଦେହୀ—ଚିହ୍ଳୀ । ସୀତା—ଲଙ୍ଗଳଲୁହା । ସୁରମତେ—ଦେବତାମାନଙ୍କ ମତରେ ।

---

୪ର୍ଥ ପଦ—ବାଟରେ ଲକ୍ଷ୍ମଣଙ୍କର ଭେଟ ହେବାରୁ ରାମଚନ୍ଦ୍ରଙ୍କ ମନ ଜରସଯୁକ୍ତ ହେଲା । ସେ କହିଲେ, "ସୀତା କାହିଁ, ତାକୁ ଏକାକିନୀ ଛାଡ଼ି ଆସିଲ କାହିଁକି ? ମୋ ବକ୍ଷସ୍ଥଳରୁ ଅନ୍ତର ହେଲେ ସେ ଯେ ମନମଧ୍ୟରେ ଭୟରେ ଥରହର ହୁଏ ।"

୫ମ ପଦ—ଲକ୍ଷ୍ମଣ କହିଲେ, "ହେ ରଘୁଗଣ ! ଶୁଣ, ତୁମ୍ଭର ବୀରପଣ ଜଣାଥିଲେ ମଧ୍ୟ 'ହା ଲକ୍ଷ୍ମଣ' ଶବ୍ଦ ଶୁଣାଯିବାରୁ କ୍ଷୀଣକଟୀ ଭିରୁ ସୀତା ଜଣାହୋଇ ଭୟ କଲେ ।"

୬ଷ୍ଠ ପଦ—"ତାଙ୍କର ବୈଦେହୀ ନାମ ପ୍ରମାଣିତ ହେଲା । 'ବୈଦେହୀ' ଚିହ୍ଳୀ ବୃକ୍ଷର ଫଳ ଯେପରି କଟୁ ପ୍ରଦାନ କରେ, ସୀତା ସେହିପରି ଶେଷରେ ମୋତେ କଟୁକଥା କହିଲେ । ପୁଣି ତାଙ୍କର ସୀତା ନାମ ସାର୍ଥକ ଅଟେ । 'ସୀତା' ଲଙ୍ଗଳର କଅଁଳିକୁ ଚଷି ଫାଳ ଫାଳ କଲାପରି ସେ ମୋ ହୃଦୟ କ୍ଷେତ୍ରକୁ ଭଙ୍ଗାଇ ପକାଇଲେ । ଲୋକେ ଅମୃତ ଖାଇ ନ ଥିବାରୁ ସ୍ତ୍ରୀଙ୍କ କଥାକୁ ଅମୃତ ସହିତ ତୁଳନା ଦେଇଥାନ୍ତି, ମାତ୍ର ଦେବତାମାନଙ୍କ ମତରେ ତା ଠିକ୍ ନୁହେ । ( ଦେବତାମାନେ ଯେ ଅମୃତ ଖାଇଅଛନ୍ତି ) ।"

ଖଞ୍ଜ ଯେଣୁ ଯୋଗୀ ତେଣୁ ଶ୍ରଦ୍ଧାରେ ନ ଶୁଣି ।
ବୋଲେ ରାମ ଶିବରୁ କେ ବଡ଼ ଯୋଗୀ ପୁଣି ।
ବହୁ ଅର୍ଦ୍ଧ ଅବୟବେ ।
ଅଦୂର ଶଙ୍କାରେ ଶୁଣୁଛନ୍ତି ସଂବଦବେ । ୭ ।
ବଚନ ଗର୍ବ ରଚନ ସତ୍ୱର ଗମନ ।
ବାଲା ଅନୁସର ନ ଅସିବା ଦେଖି ଛନ୍ନ ।
ବିଚାରନ୍ତି ସ୍ୱେଚ୍ଛାଧୀନା ।
ବିମନା କୋହେ ସଦୋଷେ ଏବେ ଦୋଷ ବିନା । ୮ ।
ବୃକ୍ଷ କରୁଣାରେ ସେ ନିର୍ଗୁଣ ଫଳ ବହୁ ।
ବନ୍ଧୁ ସ୍ୱାଧୀନ ଭର୍ତ୍ତୃକା ବୋଲି ଯେବେ ମୁହିଁ ।
ବାକେ ଲେଖିଥାଇଁ ସ୍ନେହ ।
ବୋଲିଥାଇ ଲେଖ ତବାଧୀନଭର୍ତ୍ତା ବର । ୯ ।

---

୭ମ ପଦ—ଖଞ୍ଜ—ଜ୍ଞାନୀ । ଅଦୂର—ଅନ୍ତର ।

୯ମ ପଦ—କରୁଣା—ଦୟା । ସ୍ୱାଧୀନଭର୍ତ୍ତୃକା—ଯେଉଁ ସ୍ତ୍ରୀର ଅଧୀନରେ ସ୍ୱାମୀ ଥାଏ । ଭର୍ତ୍ତା—ସ୍ୱାମୀ ।

---

୭ମ ପଦ—"ଯୋଗୀମାନେ ବିଶେଷ ଜ୍ଞାନୀ ଅଟନ୍ତି, ତେଣୁ ସ୍ତ୍ରୀଙ୍କ ବଚନରେ ସେମାନେ ଶ୍ରଦ୍ଧାନ୍ୱିତ ହୁଅନ୍ତି ନାହିଁ କି ତା ଶୁଣନ୍ତି ନାହିଁ ।" ଲକ୍ଷ୍ମଣ ଏହା କହିବାରୁ ରାମଚନ୍ଦ୍ର କହିଲେ, "ଶିବଙ୍କଠାରୁ ଆଉ ବଡ଼ ଯୋଗୀ କିଏ ଅଛି ? ସ୍ତ୍ରୀ ଅନ୍ତର ହେବା ଭୟରେ ସେ ଅର୍ଦ୍ଧାଙ୍ଗରେ ବହନ କରି ସ୍ତ୍ରୀଙ୍କ କଥନ ବଚନ ଶୁଣୁଅଛନ୍ତି ।"

୮ମ ପଦ—ରାମଚନ୍ଦ୍ର ଏ କଥା ଗର୍ବ ସ୍ୱରରେ ଲକ୍ଷ୍ମଣଙ୍କୁ କହି ଶୀଘ୍ର ଗମନ କଲେ । କୁଟୀର ନିକଟରେ ପ୍ରବେଶ କରି ପ୍ରିୟା ଆସି ବାଟକୁ ଚାହିଁ ନ ଥିବାର ଦେଖି ସେ କାତର ହେଲେ । ପୁଣି ମନ ମଧ୍ୟରେ ବିଚାର କଲେ, 'ସେ ତ ସ୍ୱେଚ୍ଛାଧୀନା, ମୁଁ କୋପ କରିଥିଲେ ମଧ୍ୟ ମୋଠାରେ ସେ ବିମନା ହୁଏ ନାହିଁ । ଏବେ ବିନା ଦୋଷରେ ବିମନା କାହିଁକି ହେଲା ? [ ସେ କାହିଁକି କୁଟୀର ମୁହଁରେ ମୋ ଆସିବା ବାଟକୁ ଚାହିଁ ଠିଆ ହୋଇ ନାହିଁ ? ] ।

୯ମ ପଦ—'କରୁଣା ବୃକ୍ଷରେ ନୈର୍ଗୁଣ୍ୟ ଫଳ କେବେ ଫଳେ କି ? ଯେବେ ମୁଁ ତାଙ୍କରେ 'ମୋର ପ୍ରିୟା ସ୍ୱାଧୀନ ଭର୍ତ୍ତୃକା' ମୁଁ ମୋର ପ୍ରିୟାର ଦାସ—ଏହା ଲେଖିଥାଏଁ, ତେବେ ସେ ତାହା ଦେଖି ମୋତେ କହେ 'ତବାଧୀନଭର୍ତ୍ତା'—ତୁମ୍ଭର ମୁଁ ଦାସୀ ବୋଲି ଲେଖ ।'

ବିରହୋତ୍କଣ୍ଠିତା ସାର ନାୟିକା ରତନ ।
ବିଶ୍ୱର ତ ଥାନ୍ତା ନବ ନବ ଭାବମାନ
ଚିନ୍ତନରେ ମୁଁ ତାହାର ।
ବନ୍ଧନେ ବଦବି ଅଣି ଅପେକ୍ଷୁ ଚଉଁସି ।୧୦।
ବାସକସଜ୍ଜା ହୋଏ ମୁଁ ପାଶୁଁ ଗଲା କ୍ଷଣେ ।
ବେଶ ସାରି ଶଯ୍ୟା କରି ନିରେଖେ ପ୍ରାଙ୍ଗଣେ ।
ବିପ୍ରଲବ୍ଧା ହୋଇ ଧନ ।
ବିକାଶ କୁସୁମକାଳେ ତେଜି କେଳି ସ୍ଥାନ ।୧୧।
ବାର ବାର ଅଭିସାର ମୋ ପାଶେ ପଣ୍ଡିତା ।
ବିପରୀତ ମାଗିବାରେ ହୁଅଇ ଖଣ୍ଡିତା ।
ବିଧି ପ୍ରୋଷିତଭର୍ତ୍ତୃକା ।
ବାଞ୍ଛିବାରୁ କହିବାରୁ କରୁଅଛି ଦକା ।୧୨।

---

୧୨ଶ ପଦ—ଅଭିସାର—ସଙ୍କେତ ସ୍ଥଳକୁ ଗମନ ।

---

୧୦ମ ପଦ—'ସେ ନାୟିକାବର୍ଗର ସୀତା ବିରହୋତ୍କଣ୍ଠିତା ନାୟିକାଙ୍କ ମଧ୍ୟରେ ଶ୍ରେଷ୍ଠ । ସେ ମୋର ବିରହରେ ନବ ନବ ଭାବନାମାନ ଚିତ୍ତରେ ବିଶୃଙ୍ଖୁ ଥାନ୍ତି । ମୁଁ ତାହାର ପଦେ କଥାରେ କେଶ ବନ୍ଧନ ପାଇଁ ବସୁଁଛି ଅଣିଅଛି । ( ତେବେ ସେ କମନା ହେଲ କାହିଁକି ?)

୧୧ଶ ପଦ—'ମୋ ପାଖରୁ ଗଲାକ୍ଷଣି ସେ ବାସକସଜ୍ଜା ନାୟିକାପ୍ରାୟ ହୁଏ । ଅପେ ବେଶ ସାରି ଶେଯ ପକାଇ ଅଗଣାରେ ଠିଆ ହୋଇ ମୋତେ ନିରେଖୁ ଥାଏ । ପୁଣି ସେହି ପ୍ରିୟା ମୋର ବିପ୍ରଲବ୍ଧା ନାୟିକା ହୋଇ ପୁଷ୍ପକାଳ ସମୟରେ କେଳି ସ୍ଥାନ ତେଜି ଚାଲିଯାଏ ।' [ ତାହା ତ ହୋଇ ନାହିଁ ଏବେ ନ ଆସେ କାହିଁକି ? )

୧୨ଶ ପଦ—'ଅଭିସାରିକା ନାୟିକାପରି ସେ ବାରମ୍ବାର ମୋ ପାଖକୁ ଅଭିସାରେ ନିପୁଣ ଅଟେ । ମୁଁ ବିପରୀତ ରତି ମାଗିବା ବେଳେ ସେ ଖଣ୍ଡିତା ନାୟିକା ହୁଏ ଅର୍ଥାତ୍ କ୍ରୋଧଯୁକ୍ତା ହୋଇ ମୋ ବାକ୍ୟ ଖଣ୍ଡନ କରେ । [ଏବେ ମୁଁ ବିପରୀତ ରତି ମାଗି-ନାହିଁ – ତେବେ ସେ କମନା ହେଲ କାହିଁକି ? ) । ବିଧାତା ମୋର ପ୍ରିୟାକୁ 'ପ୍ରୋଷିତଭର୍ତ୍ତୃକା' କରିବାକୁ ( ମୋ ସହିତ ବିଚ୍ଛେଦ କରିବାକୁ ] ମୁଁ ସବୁବେଳେ ଅଶଙ୍କା କରୁଥାଏ । ବର୍ତ୍ତମାନ ସେ ଅଶଙ୍କା ସତ୍ୟ ହେଲା କି ?'

ବହୁଥିବାରେ ଶରୀର ଭାବନଈଶ୍ୱରୀ ।
ବହିବ ନାହିଁ ବଳହାନ୍ତରତା ସ୍ୱଚ୍ଛରୀ ।
ବିବର୍ଜିତ ପ୍ରିୟାହୃଦ ।
ବିଚ୍ଛନ୍ଦରେ କେମନ୍ତେ ସେ ବିଲ୍ଲ ଅସପଦ । ୧୩ ।
ବୋଇଲେ ଦେହଳୀ ପାଶେ ମୃଗାଙ୍କର ଥୋଇ ।
ବାସ ଦେହର କି କରି ଲିଭାଇବୁ ତୁହି !?
ବିଳମ୍ବ ମୋ କରି ହଠ ।
ବିଧାନ ଯେ କରୁଅଛୁ ଲୁଣ୍ଠିବା କପଟ । ୧୪ ।
ବିଲେପ ନୋହିବୁ ରସବତୀ ସ୍ମର ତମେ ।
ବିଧୁରେ ପ୍ରସନ୍ନମୁଖୀ ହାସ ହ୍ରାସ କ୍ରମେ ।
ବିସ୍ତାରିତ କରି ପାଣି ।
ବେଣ୍ଣେ ଧରି ବେଳକୁ ଅସ ରେ ପ୍ରିୟ ଭଣି । ୧୫ ।

---

୧୩ଶ ପଦ—ବିବର୍ଜିତ—ଶୂନ୍ୟ । ବିଚ୍ଛନ୍ଦରେ—କୌଶଳରେ । ଛନ୍ଦ—କପଟ । ଅସପଦ—ସ୍ଥାନ ।

୧୪ଶ ପଦ—ଦେହଳୀ—ଏଶୁଣ୍ଡୀ ବନ୍ଧ ।

୧୫ଶ ପଦ—ବିଲେପ—ଲୁଚିବା । ତମ—ଅନ୍ଧକାର । ପ୍ରସନ୍ନମୁଖୀ—ଉଜ୍ଜ୍ୱଳବଦନା ବା ଚନ୍ଦ୍ରମୁଖୀ । ପାଣି—ହସ୍ତ । ବେଣ୍ଣ—ସାର ।

---

୧୩ଶ ପଦ—'ମୋ ପ୍ରାଣେଶ୍ୱରୀ ଦେହ ଧରି ଥିବାଯାଏ, ବଳହାନ୍ତରତା ସ୍ୱଚ୍ଛରୀ ବହିବ ନାହିଁ । [ ବଳହ କରି ମୋଠାରୁ ଅନ୍ତର ହେବ ନାହିଁ ] । କାରଣ ମୋର ପ୍ରିୟାର ହୃଦୟ କପଟଶୂନ୍ୟ । ଏବେ କି କୌଶଳରେ 'ଛନ୍ଦ' କପଟ ସେ ହୃଦୟରେ ସ୍ଥାନ ପାଇଲା ?'

୧୪ଶ ପଦ—ରାମଚନ୍ଦ୍ର ମନେ ମନେ ଏହା ବିଚାରି ଯାଇ ଦ୍ୱାର ମୁହଁ ପାଖରେ ମୃଗାଙ୍କର ଥୋଇ ଦେଇ କହିଲେ, "ମୋର ଆସିବାରେ ବିଳମ୍ବ ହେବାରୁ, ତୁ ହଠ କରି କପଟରେ ଲୁଚିଅଛୁ । ମାତ୍ର ତୋହର ଦେହର ବାସନାକୁ କପଟ କରାଇ ତୁ ଲୁଚାଇ ରଖି ପାରିବୁ ? ( ତୋର ଦେହର ବାସନାରୁ ମୁଁ ଜାଣିପାରିଲି ଯେ, ତୁ କେଉଁଠି ଲୁଚିଅଛୁ । ତେଣୁ ଲୁଚି ଫଳ କିଛି ନାହିଁ ) ।"

୧୫ଶ ପଦ—"ହେ ରସବତି ! ତୁ ଅନ୍ଧକାର ଗୃହରେ ମଧ୍ୟ ଅଦୃଶ୍ୟ ହୋଇ ପାରିବୁ ନାହିଁ । ଦୈବକ୍ରମେ ତୁ ପ୍ରସନ୍ନମୁଖୀ । ତୋର ହାସ୍ୟ ହ୍ରାସ ପରି ଝଟକିବ [ ତେଣୁ ଅନ୍ଧକାରରେ ମଧ୍ୟ ତୋତେ ଦେଖି ହେଉଥିବ ] ।" ଏହା କହି ରାମଚନ୍ଦ୍ର ଗୃହ ମଧ୍ୟରେ ପ୍ରବେଶ କରି ହସ୍ତ ବଢ଼ାଇ ଡାକିଲେ, "ହେ ପ୍ରିୟା ! ମୋ କୋଳକୁ ଆ ।"

ତୋଳିଥିଲୁ ଅଣ ଏତା ମୃଗଚର୍ମ ପୁଚ୍ଛ ।
ବାଛି ବାଛି ତୋଳି ଅଣିଅଛି ପୁଷ୍ପଗୁଚ୍ଛ ।
ବସ ସେ ଅଜିନେ ବେଗେ ।
ବାନ୍ଧିବି ମୁଁ କୁନ୍ତଳ ଭ୍ରମର ଫୁଲଯୋଗେ । ୧୬ ।

ବହୁଛୁ ଶଙ୍କା ଚଉଁରୀ ଦେଇ ମୋର ହସ୍ତ ।
ବଦାଇବେ ରଖିବାକୁ କି ସୁଷ୍ଠାଶ୍ରିତ ।
ବୋଲିବାକୁ ନାହିଁ ତାହି ।
ବୋଇଲି ବଚନ ଆନ ହୋଇଛି ମୋ ତାହିଁ ।୧୭।

ବନ୍ଧୁ ତୁହି ଧନ ତୁହି ପ୍ରାଣ ତୁହି ସତେ ।
ବନ୍ଧୁ ଧନ ଦୂର କରି ଅଣିଛି ସଙ୍ଗତେ ।
ଜଗତ ତୁ ହେଲେ ରକ୍ଷା
ବ୍ରହ୍ମାଣ୍ଡରେ କି ରୂପରେ ଅଛି ସୁକଣ୍ଠାକ୍ଷୀ । ୧୮ ।

---

୧୬ଶ ପଦ—ପୁଷ୍ପଗୁଚ୍ଛ—ଫୁଲପେଣ୍ଡା । ଅଜିନ—ମୃଗଚର୍ମ । କୁନ୍ତଳ—କେଶ । ଭ୍ରମର—ଚଉଁରୀ ।

୧୭ଶ ପଦ—ସୁଷ୍ଠାଶ୍ରିତ—ଦଶଶ୍ରିତ ରଖ ।

୧୮ଶ ପଦ—ସୁକଣ୍ଠାକ୍ଷ—ସୁରୂପା ।

---

୧୬ଶ ପଦ—"ତୁ କେବଳ ମୃଗଚର୍ମ ଓ ମୃଗପୁଚ୍ଛ ଆଣିବାକୁ କହିଥିଲୁ । ମାତ୍ର ମୁଁ ତାହା ବ୍ୟତୀତ ବାଛି ବାଛି ଫୁଲପେଣ୍ଡା ସବୁ ତୋଳି ଆଣିଛି । ତୁ ଶୀଘ୍ର ଆସି ସେ କନକ ମୃଗଛାଲରେ ବସ । ଫୁଲ ଓ ଭ୍ରମର ଯୋଗେ ମୁଁ ତୋର କେଶ ବାନ୍ଧି ଦେବି ।"

୧୭ଶ ପଦ—"ହେ ପ୍ରିୟେ ! 'ଚଉଁରୀ ମୋର ହସ୍ତରେ ଦେଇ ସୁରକ୍ଷିତ ରଖିବାକୁ କହିବେ'—ଏହା ଭାବି ତୁ ଭୟ କରୁଛୁ କି ? ତା ମଧ୍ୟ ମୁଁ କହୁ ନାହିଁ । ମୋର କହିବା କଥା କେବେ ଅନ୍ୟଥା ହୋଇଛି କି ?"

୧୮ଶ ପଦ—"ତୁ ମୋର ବନ୍ଧୁ, ତୁ ମୋର ଧନ, ତୁ ମୋର ପ୍ରାଣ ଅଛୁ, ଏହା ସତ୍ୟ ଅଟେ । ତେଣୁ ବନ୍ଧୁ ଧନ ଦୂର କରି ତୋତେ ସଙ୍ଗତରେ ଆଣିଅଛି । ହେ ସୁରୂପା ! ତୁ ମୋର ପ୍ରାଣ, ତୁ ଛାଡି ଚାଲିଗଲେ ମୋର ଆଉ ବ୍ରହ୍ମାଣ୍ଡରେ କିପରି ରକ୍ଷା ଅଛି ? [ ପ୍ରାଣହୀନ ଶରୀର ରହିବା ଅସମ୍ଭବ ] ।"

ବସଇ ହୃଦୟେ ଦୟା କଠିନ ଉରଜ ।
ବନ୍ଦ୍ୟ ଜଗତରେ ଜ୍ୟେଷ୍ଠ ଅଟଇ ସହଜ ।
ଅକର୍ମକୁ ମୋର ଦେଖ ।
କସ୍ତ୍ରେବେଦ୍ଧା ଏମନ୍ତ ଭାବକୁ ଅଛୁ ଭଜ ।୧୯।
ଜନକ ଉଚିତ ଛଳ ବଚନ ପ୍ରକାଶି ।
ବେଳେ ନ ପାରିଲେ ଯହୁଁ ବାଳା ମନ ତୋଷି ।
ବ୍ୟର୍ଥ ବାଗ୍ମିଲେ ପଣ୍ଡିତ ।
ବୁଝାଇଲ ପ୍ରାୟ ଶାସ୍ତ୍ର ହୋଇଲ୍ଲ ତେମନ୍ତ ।୨୦।
ବକ୍ତବ୍ୟ ଲକ୍ଷ୍ମଣେ ଏ ଜାନକୀ କ୍ଷୀଣକୁକ୍ଷୀ ।
ବସ୍ତୁ ହେଲା ରାକ୍ଷସୀ କପଟେ ଗଲ ଭକ୍ଷି ।
ବାଧ ବୋଲି ସ୍ତ୍ରୀହତ୍ୟା ।
ବଧ ନ କଲକୁ ଶୁଝାଇଲ୍ଲ ବଇରତା ।୨୧।

---

୧୯ଶ ପଦ—କସ୍ତ୍ରେବେଦ୍ଧା—ସୁନ୍ଦରୀ ।
୨୦ଶ ପଦ—ବାଗ୍ମିଳ—ବାତୁଳ ବାବଦୁକ ।
୨୧ଶ ପଦ—କ୍ଷୀଣକୁକ୍ଷୀ—କୃଶୋଦରୀ । ବସ୍ତୁ—ନାକକଟା ବାଣ୍ଟୁ ।
ବଇରତା—ଶତ୍ରୁତା ।

---

୧୯ଶ ପଦ—"ଯେଉଁ ହୃଦୟରେ ଦୟା ଓ କଠିନ ସ୍ତନଯୁଗଳ ଉଭୟେ ବାସ କରନ୍ତି । ତାଙ୍କ ମଧ୍ୟରେ ଜ୍ୟେଷ୍ଠ ଦୟା ସ୍ୱଭାବରେ ଜଗତରେ ପୂଜ୍ୟ ଅଟେ ( କଠିନ ଗୁଣ ପୂଜ୍ୟ ନୁହେ ) । ହେ ପରମାସୁନ୍ଦରୀ ! ମୋର କର୍ମ ଦୋଷରୁ ତୁ କନିଷ୍ଠ କଠିନ ଗୁଣକୁ ଧାରଣ କରିଅଛୁ କି ? ( ଏ ଜ୍ୟେଷ୍ଠହୋଇ ସୁଦ୍ଧା ପୂଜ୍ୟ ହେଲେ ନାହିଁ, ମାତ୍ର ଭରତ କନିଷ୍ଠ ହୋଇ ପୂଜ୍ୟ ହେଲେ । ଏହି କଥା ହେତୁରୁ ଜ୍ୟେଷ୍ଠ ଗୁଣ ଦୟାକୁ ଛାଡ଼ି କଠିନ ଗୁଣକୁ ଧରିଲୁ କି ? )"

୨୦ଶ ପଦ—ରାମଚନ୍ଦ୍ର ଏହିପରି ବିନୟ, ପରିହାସ, ଛଳ ପୂର୍ଣ୍ଣ ବାକ୍ୟ ମାନ ପ୍ରକାଶ କରି ମଧ୍ୟ ସୀତାଙ୍କ ମନ ତୋଷି ପାରିଲେ ନାହିଁ । ବାତୁଳ ଲୋକଙ୍କୁ ପଣ୍ଡିତ ଶାସ୍ତ୍ର ବୁଝାଇଲା ପ୍ରାୟ ଏ ବଚନ ସବୁ ବ୍ୟର୍ଥ ହେଲା ।

୨୧ଶ ପଦ—ତତ୍ପରେ ଲକ୍ଷ୍ମଣଙ୍କୁ କହିଲେ, 'କୃଶୋଦରୀ ସୀତାକୁ ବଇତ ନାସିକା ସୂର୍ପଣଖା ରାକ୍ଷସୀ କପଟରେ ଆସି ଖାଇ ଗଲା କି ? ସ୍ତ୍ରୀ ହତ୍ୟା ଦୋଷ ଲାଗିବ ବୋଲି ବିଚାରି ତାକୁ ବଧ ନ କରିବାରୁ ସେ ଏହିପରି ଶତ୍ରୁତା ସୁଝାଇଲା କି ?"

ବିଧାତା ନିର୍ମାଣ କଲା କେ ଆନ କରିବ ।
ବୋଲେ ପିତା ହା ରାମ ହା ରାମ ଗଲା ଜୀବ ।
ଟଳି ପଡ଼ିଲା ଲକ୍ଷ୍ମଣ ।
ବୋଲେ ହା ରାମ ହା ରାମ ଯିବ ମୋ ପରାଣ ।୧୨।
କରନ୍ତି କରୁଣ ତୋତେ କୃପାସିନ୍ଧୁ ମିତ ।
ବୋଲଇ ଯେ ପ୍ରଥମୁଁ ପୀୟୂଷ କରି ଜାତ ।
ବଶ କରି କଲୁ ଶିବ ।
ବିଷ ଜନ୍ମାଇଲୁ ଆନ ଅର୍ଥେ ପାର ଯିବ ।୧୩।
ବୋଲନ୍ତି ଯେ ଚନ୍ଦ୍ର ଶଶୀ କର୍ପୂର ହାଟକ ।
ବାରି ଶଶୀ ମାତ୍ର କରେ ଜଗତ ଆଲୋକ ।

---

୧୩ଶ ପଦ—କରୁଣ—କ୍ରନ୍ଦନ । ପୀୟୂଷ—ଅମୃତ । ଶିବ—ମଙ୍ଗଳ, ମହାଦେବ ।

୧୪ଶ ପଦ—ଶଶୀ—ଚନ୍ଦ୍ର । ହାଟକ—ସୁବର୍ଣ୍ଣ । ତମ—ଅନ୍ଧକାର । ବୈଦେହୀରଞ୍ଜନ—ରଘୁବରଚନ୍ଦ୍ର ।

---

୧୨ଶ ପଦ—"ହେ ଲକ୍ଷ୍ମଣ ! ବିଧାତାର ବିଧାନ କଥା କିଏ ଅନ୍ୟଥା କରିବ ? ପିତା ଦଶରଥ 'ହା ରାମ ହା ରାମ' କହି ଜୀବନ ଛାଡ଼ିଲେ; ଏବେ ସେହି ସମୟ ଆସି ପଡ଼ିଲା, 'ହା ରାମ ହା ରାମ' କହି ମୋର ଜୀବନ ଯିବ ।"

୧୩ଶ ପଦ—ତତ୍ପରେ ରାମଚନ୍ଦ୍ର ରୋଦନ କରି କହିଲେ, "ହେ ବନ୍ଧୁ ! ତୋତେ ମୁଁ କୃପାସମୁଦ୍ର ବୋଲି କହେ । ସମୁଦ୍ର ପ୍ରଥମରେ ଅମୃତ ଜାତ କରି ପରେ ବିଷ ଜାତ କଲା; ସେହିପରି ତୁ ପ୍ରଥମେ ସୁଖରୂପ ଅମୃତ ଦେଇ ମୋତେ ବଶ କଲୁ । ବର୍ତ୍ତମାନ ଶେଷରେ ତୁ ବିଷ ଜନ୍ମାଇଲୁ । ସେ ବିଷ ଶିବ ଭିନ୍ନ ଅନ୍ୟ କାହାଠାରେ ପାର ହେବ କି ? ( ମୋର ହୃଦୟରେ ବିଷ ଭରି ଦେଲୁ, ମୁଁ ତାହା ସହ୍ୟ କରି ନ ପାରି ନିଶ୍ଚୟ ନାଶ ଯିବି ) ।"

୧୪ଶ ପଦ—ଶଶୀ, କର୍ପୂର, ହାଟକ ( ସୁବର୍ଣ୍ଣ ), ବାରି ( ଜଳ ) ଏ ସମସ୍ତେ ଚନ୍ଦ୍ର ବୋଲାନ୍ତି, ମାତ୍ର କେବଳ ଶଶୀ ଘୋର ଅନ୍ଧକାରକୁ ନାଶ କରେ ଓ ସଂସାରକୁ ଆଲୋକିତ କରେ । ସେହିପରି ସୀତା ଅନେକ ଥିଲେ ମଧ୍ୟ ତୁ କେବଳ ଏକା ମୋର ଆନନ୍ଦଦାୟିନୀ ଓ ଦୁଃଖନାଶିନୀ ଅଛୁ । ( କର୍ପୂର, ସୁବର୍ଣ୍ଣ, ଜଳ ଚନ୍ଦ୍ର ନାମ ବହନ କଲେ ମଧ୍ୟ ଯେପରି ଜଗତକୁ ଆଲୋକିତ କରିବାର ଗୁଣ ତାଙ୍କର ନାହିଁ, ସେହିପରି ଏକା ତୋ ବ୍ୟତୀତ ଅନ୍ୟ କୌଣସି

ବିଧ୍ୱଂସିବ ଡମ ସୋର ।
ବିବେକବିରହିତ ଧନ ମନେ ଦେଲେ ହେଇ । ୨୪ ।
ବସନ୍ତ ଋତୁ ତ ଅନ୍ତ ହୋଇ ନାହିଁ ଗୋଉ ।
ବଚନ କୋକିଳ କପାଁ ଗ୍ଲଣିଲା ମାଧୁରୀ ।
ଦେଖୁ ଦେଖୁ ସେ ଅଧିକ ।
ବିଭ୍ରମ ଜନୁ ପାଦପେ ବିନୟେ ସର୍ଜକ । ୨୫ ।
ବଲ୍ଲୀ ଆଲିଙ୍ଗନ ତ ତୁମ୍ଭର ନାହିଁ ଭଳା ।
ବିଯୋଗୀ ହେଲି ବିଶେଷେ ଅନୁସରିଥିଲି ।
ବାଳୀ କାହିଁ ଗଲା ଖ୍ୟାପ ।
ବିକଶିତ ପୁଷ୍ପେ ତ ନିର୍ଦ୍ଦୟ ହୋଇ ହସ । ୨୬ ।
ବୋଲଇଛ କେ ରସାଳ କେ ପୁଣି ଅଶୋକ ।
ବିଖ୍ୟାତକ ଦେଖୁ କେହ ଭୁମ୍ଭ ମଧ୍ୟେ ଏକ ।

---

୨୭ଶ ପଦ :—ରସାଳ—ରସଯୁକ୍ତ, ଆମ୍ବଗଛ । ଅଶୋକ—ଶୋକହୀନ, ଅଶୋକ ବୃକ୍ଷ । ବିଖ୍ୟାତକ—ନିର୍ଦ୍ଦୟକ, କାହାଡ଼ା ଗଛ ।

---

ସୀତା ନାମ୍ନୀ ରମଣୀର ମୋତେ ଦୋଷ ଦେବାର କ୍ଷମତା ନାହିଁ )। ରେ ବିବେକରହିତ ! ରେ ଧନ । ଏ କଥାକୁ ଥରେ ମାତ୍ର ତୋ ମନରେ ବିଚାର କର ।

୨୫ ଶ ପଦ:—"ରେ ଗୋଉ । ବସନ୍ତ ଋତୁ ତ ଶେଷ ହୋଇ ନାହିଁ । ତୋର ବଚନ କୋକିଳ କମ୍ପା ମାଧୁର୍ଯ୍ୟ ଗ୍ଲଣିଲା ? (ବସନ୍ତ ଋତୁ ଥାଉଁ ଥାଉଁ ତୋର ବଚନ ରୂପ କୋକିଳର ଶବ୍ଦ ନୀରବ ହେଲା କାହିଁକି )?" ଏହାପରେ ବହୁ ବହୁ ରାମଙ୍କର ଅଧିକ ବିଭ୍ରମ ଜାତ ହୁଅନ୍ତେ, ସେ ବୃକ୍ଷମାନଙ୍କୁ ବିନୟ କରି କହିଲେ—

୨୬ଶ ପଦ:—"ହେ ବୃକ୍ଷଗଣ ! ତୁମ୍ଭଙ୍କୁ ତ ଲତାମାନେ ଆଲିଙ୍ଗନ କରି ଅଛନ୍ତି—ତା ଅନ୍ୟଥା ହୋଇ ନାହିଁ । ମୁଁ ବିଶେଷରେ ତୁମ୍ଭଙ୍କ ଅନୁସରଣ କରି ଏଠାରେ ରହିଥିଲି । ବର୍ତ୍ତମାନ ମୁଁ ବିରହୀ ହେଲି । ମୋର ସୀତା କୁଆଡ଼େ ଗଲା କହ । ପୁଷ୍ପ ବିକାଶ ଛଳରେ ତ ନିର୍ଦ୍ଦୟ ଭାବରେ ହସୁଅଛ । (ମୁଁ ତୁମ୍ଭର ଅଶ୍ରିତ—ତଥାପି ମୋ ବିପଦବେଳେ ହସୁଛ । ଏ କିଣ ଭଲ ବ୍ୟବହାର ?)"

୨୭ଶ ପଦ:—"ତୁମ୍ଭମାନଙ୍କ ମଧ୍ୟରେ କିଏ 'ରସାଳ' ରସବନ୍ତ (ଅମ୍ବ ), କିଏ ପୁଣି 'ଅଶୋକ' ଶୋକବିହୀନ, କିଏ 'ବିଖ୍ୟାତକ' ଭୟହୀନ ( କାହାଡ଼ା )

ଜନା ବସ ମୁଁ ହୋଇବି ।
ତୁମ୍ଭ ଗୋଡରେ ଲୁଚିବ ହୋଇ ଧନ ନେବ । ୨୭ ।
ବୋଲାଅ ଯେ ଫଳବନ୍ତ ମୋ ପ୍ରଭୁପଣାରେ ।
ବିଫଳ ହୋଇଣ କିଏ ହୋଇବ ସଂସାରେ ।
ଶତ୍ରୁକ ମୁଁ ନୋହେ ମିତ ।
ଚେର ଧରି ତୁମ୍ଭେ ଇଚ୍ଛା ମୁଁ କରୁଛି ସତ । ୨୮ ।
ବିମୋହିତ ଏବେ ଗନ୍ଧ-ବାସ ସୁମନରେ ।
ବଲ୍‌କଳ ପିଧାନ ପୁଣି ଶାଖା ରଞ୍ଜନରେ ।
ବିଳସନ୍ତି ଉରେ ଖଗ ।
ବାଞ୍ଛି କହ ମୋ ପ୍ରିୟାର ନାଶ ଉଦ୍‌ବେଗ ।୨୯ ।

ହୋଇଅଛ । ତୁମ୍ଭମାନଙ୍କ ମଧ୍ୟରେ ମୁଁ ବାସ କରି ଘରସ ହେବି, ପୁଣି ଗୋଡରେ ଚୂଡ଼ ଉପୁଡ଼ ହୋଇ ଧନ ନେବି । ( ତୁମ୍ଭଙ୍କୁ ଆଶ୍ରୟ କରିବାରୁ କଣ ଏହି ଫଳ ମିଳିବ ?”

୨୮ଶ ପଦ—“ତୁମ୍ଭେମାନେ ପୁଣି ‘ଫଳବନ୍ତ’ ଫଳଯୁକ୍ତ ବୋଲାଅ, ମୋ ପ୍ରଭୁ ଅଣାରେ ବିଫଳ ହୋଇବ କି ? ( ମୋ ଆଶାକୁ ବିଫଳ କରିବ କି ? ) ସଂସାର ମଧ୍ୟରେ ମୁଁ ତୁମ୍ଭର ଶତ୍ରୁ ନୁହେ, ମିତ୍ର ଅଟେ । ତୁମ୍ଭେ ‘ଇଚ୍ଛା’ ଚେର ଧାରଣ କରିଅଛ ବୋଲି ମୁଁ ମଧ୍ୟ ଇଚ୍ଛା କରୁଅଛି । ଏହା ମଧ୍ୟ ମିଥ୍ୟା ନୁହେଁ ।”

୨୯ଶ ପଦ—“ତୁମ୍ଭେ ଗନ୍ଧ ଓ ‘ବାସ ସୁମନରେ’ ସୁବାସିତ କୁସୁମରେ ବିମୋହିତ ହୋଇଅଛ, ସେହିପରି ମୁଁ ମଧ୍ୟ ଉତ୍ତମ ମନରେ ପନ୍ଥ ଭୃଙ୍ଗରେ ମୋହିତ ହୋଇଅଛି । ପୁଣି ତୁମ୍ଭେ ବକଳ ପିନ୍ଧିଛ ( ତୁମ୍ଭ ଦେହରେ ବକଳ ଆବୃତ ହୋଇ ରହିଛି ) ଓ ଡାଳମାନଙ୍କରେ ରଞ୍ଜିତ ହୋଇଅଛ । ମୁଁ ସେହିପରି ବକଳ ପିନ୍ଧିଅଛି ଓ ଲକ୍ଷ୍ମଣର ସହାୟରେ ରହିଅଛି । ତୁମ୍ଭଠାରେ ପକ୍ଷୀମାନେ ବିଳାସ କରନ୍ତି, ମୋ ହସ୍ତରେ ବାଣମାନେ ଶୋଭିତ ହୁଅନ୍ତି । ( ସବୁ ପ୍ରକାରରେ ମୁଁ ତୁମ୍ଭର ମିତ୍ର ଅଟେ ) । ଅତଏବ ମୋ ପ୍ରିୟାର ଖବର କହି ମୋର ଉଦ୍‌ବେଗକୁ ଦୂର କର ।”

୨୯ ପଦ:—ବିମୋହିତ—ସୁବାସିତ ବା ପରମାନନ୍ଦିତ । ପିଧାନ—ପିନ୍ଧିବା । ଶାଖା—ଡାଳ, ସହାୟ । ଉରେ—କରରେ, ହସ୍ତରେ । ଖଗ—ପକ୍ଷୀ, ଶର ।

ବାତେ ପତ୍ରବ ଚଳାଇଲେ ଯେଉଁ ମାତ୍ରେ ନଗେ ।
ବିବେକ ଏ ଠାବନ୍ତି ପଛୁ କି ଏହୁ ଉଗେ ।
ବାସ ନିକଟେ ଉପିଙ୍କ ।
ବଶୁକି ବାକ୍ୟକୁ ଶିଖିଛନ୍ତି ସାରୀ ଶୁକ ।୩୦।
ବୋଲନ୍ତେ ରାମ ସ୍ୱଧବ ଦାଶରଥି ତହିଁ ।
ବିବେଚନା ନାମ ଧରି ଡାକେ କି ବୈଦେହୀ ।
ଦେଖି ହୋଇ ଦେଖି ମାର୍ଗ ।
ବୈଷ୍ଣବ ସରସୀ ପ୍ରାପ୍ତ ଚକ୍ରାଙ୍କ ଯୋଗ ।୩୧।
ବଦନ୍ତି ଭ୍ରାତେ ସୁଦନ୍ତୀ ସୁଦନ୍ତୀଗମନୀ ।
ବଳେ ବସାଇ ସ୍ୟନ୍ଦନେ କେ ଗଲା କି ଘେନି ।
ବାନ୍ଧବ-ସଖି ମଧ୍ୟେ ମୋର ।
ବହିତ୍ର ବଟାଇ ଧନ ହରିନେଲା ଚୋର ।୩୨।

---

୩୦ଶ ପଦ—ପଲ୍ଲବ—ପତ୍ର । ନଗେ—ବୃକ୍ଷମାନେ ।
୩୨ଶ ପଦ—ସୁଦନ୍ତୀ—ସୁଦଶନା । ସୁଦନ୍ତୀଗମନୀ—ଗଜଗମନା ।
ସ୍ୟନ୍ଦନ—ରଥ । ବହିତ୍ର—ବୋଇତ ବା ଜାହାଜ । ଚୋର—ଲୁଟି ।

---

୩୦ଶ ପଦ—ପବନ ଦ୍ୱାରା ବୃକ୍ଷମାନଙ୍କର ପତ୍ର ଯେଉଁ ଦିଗକୁ ଗୃହୀତ ହେଲା, ରାମ ସେ ଦିଗକୁ ଚାହିଁ ବିଚାର କଲେ, 'ତୁମ୍ଭର ପ୍ରିୟା ଏହି ଦିଗରେ ଅଛି'—ବୃକ୍ଷମାନେ ମୋତେ ଠାରି ଏହା କହୁଅଛନ୍ତି କି ? ଏହା ଭାବି ସେ ସେହି ଦିଗକୁ ଯିବାରୁ ଋଷିଙ୍କ ମଠ ନିକଟରେ ଥିବା ଶାରୀ ଶୁକ ବଶିଷ୍ଠଙ୍କଠାରେ ତଥାକଥିତ କରୁଥିବାର ଶୁଣିଲେ ।

୩୧ଶ ପଦ—ସେହି ଶୁକ ଶାରୀ 'ରାମ ରାଘବ ଦାଶରଥି' ବୋଲି କହନ୍ତେ ରାମ ବିଚାରିଲେ, "ବୈଦେହୀ ମୋର ନାମ ଧରି ଡାକେ କି ?" ଏହା ଭାବି ଖରତରରେ ଯାଉନ୍ତେ ଦେଖିଲେ, ବାଟ ବୈଷ୍ଣବ ପୁଷ୍କରିଣୀ ପରି ଚକ୍ରଚିହ୍ନ ଯୁକ୍ତ ହୋଇଅଛି । (ବୈଷ୍ଣବମାନେ ଯେପରି ଚକ୍ର ଛାପରେ ଯୁକ୍ତ ହୋଇଥାନ୍ତି, ପୁଷ୍କରିଣୀ ଯେପରି ଚକ୍ରବାକ ପକ୍ଷୀ ଦ୍ୱାରା ଯୁକ୍ତ ହୋଇଥାଏ, ସେହିପରି ପଥ ରଥର ଚକ୍ର ଚିହ୍ନରେ ଯୁକ୍ତ ହୋଇଅଛି ) ।

୩୨ଶ ପଦ—ରଥ ଚକ ପଡିଥିବାର ଦେଖି ରାମ ଲକ୍ଷ୍ମଣଙ୍କୁ କହିଲେ, 'ଗଜରାଜଗମନା ସୁଦଶନା ସୀତାକୁ ବଳପ୍ରୟୋଗରେ ରଥରେ ବସାଇ କିଏ ନେଇ ଗଲା କି ? ଏହା ଯେ କଲା, ସେ ମୋର ବନ୍ଧୁସମୂହ ମଧ୍ୟରେ ଶ୍ରୀତ ବାଣିଜ୍ୟର ବୋଇତକୁ ଫଟାଇ ସୀତାରୂପ ଧନକୁ ଲୁଟି କରି ନେଇଗଲା ।"

ବାଣିଜ୍ୟ ବନ୍ଧନେ କେହୁ ଜୀବନ ପୋଷିବ ?
ବର୍ଣ୍ଣ ଶିଳେ କାହା ତନୁ ସୁବର୍ଣ୍ଣ କଷିବ ?
ବାରବାନକୁ ସେ ଫାଇଁ ।
ବୃଦ୍ଧି ଘଟ ଲଭ ମନ ଅନୁ ରୂପେ ପାଇ ।୩୩।
ବିହ୍ୱଳଙ୍କ ମାନସ ଝିଲ୍ଲିକା ସ୍ୱନ ଶୁଣି ।
ବାଜୁଛି ତ ନୂପୁର ସଦ୍ରାବ ଯୋଷାମଣି ।
ବେଗି ପୁଣି ଏତେ ଭଣି ।
ବିଭଞ୍ଜନ ରଥକୁ ଦେଖିଲେ ରଘୁମଣି ।୩୪।
ବଳେଇଲ ଶତ୍ରୁ ମୋ ଶୁଭ କର୍ମେ ଏ ଭଗନ ।
ବାମାସ୍ୱେର ଧରି ତାକୁ କରେ କି ଗମନ ।
ବଦେ ଭ୍ରମର କଙ୍କିଣୀ ।
ବରଶିବାରୁ କି ରଣ ରଣ ଧ୍ୱନି ପୁଣି ।୩୫।

---

୩୩ଶ ପଦ—ବର୍ଣ୍ଣ-ଶିଳ—ଦେହରୂପ କଷଟି ପଥର । ବାରବାନ - ବାରବାଣୀ ସ୍ୱର୍ଣ୍ଣ ଅର୍ଥାତ୍ ଖାଣ୍ଟି ସୁନା । ଫାଇଁ—ଲଭ ।

୩୪ଶ ପଦ—ଝିଲ୍ଲିକ—ଝିଙ୍କାରି । ସଦ୍ରାବ—ପଳାଇଯିବା ।

---

୩୩ଶ ପଦ - "ଏବେ ବାଣିଜ୍ୟ ବନ୍ଧନରେ ମୁଁ କପରି ଜୀବନ ପୋଷିବି ? (ଧନ ଥିବାରୁ ସିନା ପ୍ରେମ ବାଣିଜ୍ୟ କରି ଜୀବନ ପୋଷୁଥିଲି, ଏବେ ତ ସୀତାରୂପ ଧନ ଗଲା, ମୁଁ କପରି ଚଳିବି ? ) କାହା ଦେହ ସୁନାକୁ ମୋ ଦେହରୂପ କଷଟି ପଥରରେ କଷିବି ? ( ମୁଁ ଆଉ କାହାକୁ ଆଲିଙ୍ଗନ କରିବି ?) ବାସ୍ତବ ସୁନାଠାରୁ ମୋ ପ୍ରିୟା ତନୁ ରୂପ ସୁନା ଅଧିକ ଅଟେ । ମନ ଅନୁରୂପେ ବାଣିଜ୍ୟରେ ସୁନା ରତ୍ନ ମାନଙ୍କରେ ବୃଦ୍ଧି ହେଲେ, ଯେପରି ବଣିକର ଆନନ୍ଦ ଜାତ ହୁଏ, ସେହିପରି ମୁଁ ସୁରତ ଲାଭକରି ସୁଖୀ ହେଉଥିଲି ।"

୩୪ଶ ପଦ—ଏହି ସମୟରେ ରାମଚନ୍ଦ୍ରଙ୍କ ମନ ଝିଙ୍କାରି ନାଦ ଶୁଣି ବିହ୍ୱଳିତ ହେଲା । ସେ ଭାବିଲେ, ନେଉଥିବା ଲୋକ ପାଖରୁ ସୀତା ପଳାଇ ଯାଉଛନ୍ତି କି ? ତେଣୁ ନୂପୁର ବେଦ ଶୁଣାଯାଉଛି, [ଝିଙ୍କାରି ଶବ୍ଦ ଶୁଣି ନୂପୁର ଶବ୍ଦ ବୋଲି ମନେ କଲେ ]। ଏହା ଭାବି ରାମ ଶୀଘ୍ର ଆଗକୁ ଚଳେ ଓ ଭଙ୍ଗା ହୋଇ ପଡ଼ିଥିବା ରଥକୁ ଦେଖିଲେ ।

୩୫ଶ ପଦ—ଭଙ୍ଗା ରଥ ଦେଖି ରାମଚନ୍ଦ୍ର ପୁଣି ଅସ୍ଥିର ମନରେ ଭାବିଲେ, ମୋହର ଶୁଭକର୍ମଯୋଗୁଁ ଏ ରଥ ଭଗ୍ନ ହେଲା । ନାସ୍ତିରେର ମୋ ପ୍ରିୟାକୁ ଧରି ଗୃହ ଗୃହ ଯାଉଅଛନ୍ତି କି ?' ଏହି ସମୟରେ ଭ୍ରମର ଗୁଞ୍ଜନ ଶବ୍ଦ ଶୁଣି ସେ ମନେ କଲେ, 'ମୋ ପ୍ରିୟା ନାସ୍ତିରେର ସହିତ ଯୁଦ୍ଧ କରିବାରୁ ତାର କଟି କଙ୍କିଣୀ ଏପରି ଶବ୍ଦ କରୁଅଛି କି ?'

ବାଣୀ ଶୁଣାଇବା ଭଳି ରହ ରହ ଡାକ ।
ବନ୍ଧୁ, ରସସିନ୍ଧୁ, ରସାଭୂଷା ବୋଲି ଟେକ ।
ବଲ୍ଗୁରୁଲେ ବିନ୍ଦୁ ଭୃଙ୍ଗ ।
ବଦନମାନ ଭବ ହୃଦସାଦେ ଇନ୍ଦୁ ଭଙ୍ଗ ।୩୬।
ବ୍ରହ୍ମା ଯହୁଁ ଜାତ ତାକୁ ଦଳିଛୁ ପଦରେ ।
ବନ୍ଧାଇ ଶାଢୀ ଧଡ଼ୀରେ ସିଂହକୁ ମଧ୍ୟରେ ।
ବିପକ୍ଷର ଜୀବନକୁ ।
ବଳାଇଛୁ ମୋର କରେ ଦେବାର ମନକୁ ।୩୭।
ବୋଲି ବୋଲି ଯାଉଁ ଏହା ଜଟାୟୁ ପିକ୍ଷନ୍ତ ।
ଚେତନ ହତ ଅନ୍ତରେ କହିଲ ଏମନ୍ତ ।
ବଲ୍ଲେ କୋଦଣ୍ଡଧାରଣ !
ବୈଦେହୀ ନେଇ ଗଲଟି ଲଙ୍କାକୁ ରାବଣ ।୩୮।

---

୩୮ଶ ପଦ—ପିକ୍ଷନ୍ତ—ପକ୍ଷୀ ।

---

୩୬ଶ ପଦ—ସୀତାଙ୍କୁ ଶୁଣାଇବା ଭଳି ଉଚ୍ଚରେ ଡାକ ପକାଇଲେ, "ହେ ବନ୍ଧୁ ! ହେ ରସସିନ୍ଧୁ ! ହେ ପୃଥିବୀ ଶୋଭନା ! ରହ, ରହ ! ପଦ୍ମମାନେ ଚନ୍ଦ୍ରକୁ ତୋ ମୁଖ ସଙ୍ଗେ ତୁଳନା କରିବାରେ ଗଞ୍ଜନ କରନ୍ତେ, ତୋର ମୁଖ ଚନ୍ଦ୍ରକୁ ଲଘୁ କରିଦେଲା, ତେଣୁ ସେ ଉପରକୁ ଉଠିଗଲା । ( ତୋର ମୁଖଶୋଭା ଚନ୍ଦ୍ରର ଗର୍ବକୁ ଦଳିଅଛି )।"

୩୭ଶ ପଦ—"ଯେଉଁ ପଦ୍ମରୁ ବ୍ରହ୍ମା ଜାତ ହେଲେ, ସେହି ପଦ୍ମକୁ ତୁ ପାଦରେ ଦଳିଅଛୁ । [ ପଦ୍ମ ଶୋଭାଠାରୁ ତୋ ପାଦର ଶୋଭା ବେଶି ] । ତୁ କଟୀରେ ପିନ୍ଧିଥିବା ଶାଢ଼ୀର ଧଡ଼ିରେ ସିଂହକୁ ବନ୍ଧାଇଥାଉ । ( ତୋ କଟୀ ସିଂହ କଟୀ ଅପେକ୍ଷା ସରୁ )। ତୁ ସିଂହକୁ ବନ୍ଧାଇ ଥିବାରୁ ମହାବୀର ଅଟୁ,—ତେଣୁ ଶତ୍ରୁକୁ ନିଜେ ସଂହାର ନ କରି ତାହାର ପ୍ରାଣକୁ ମୋ ହାତରେ ଦେବାକୁ ମନ ବଳାଇଛୁ । ତୁ ନିଜେ ସଂହାର କରିବାକୁ ଇଚ୍ଛା କରିଥିଲେ କେବେଠୁ ତାକୁ ସଂହାର କରି ସାରନ୍ତୁଣି, ମାତ୍ର ମୋ ହାତରେ ମରାଇବାକୁ ମନ କରିଥିବାରୁ ଏ ପର୍ଯ୍ୟନ୍ତ ରଖିଅଛୁ ।'

୩୮ଶ ପଦ—ରାମ ଏହା କହି କହି ଯାଉନ୍ତେ, ଜଟାୟୁ ପକ୍ଷୀ ସେ ଶବ୍ଦ ଶୁଣି ଚେତନା ପାଇ ଉଠିଲା ଏବଂ ଉଚ୍ଚ ସ୍ୱରରେ ସମ୍ବୋଧନ କରି କହିଲା, "ହେ ବଳେ ! କୋଦଣ୍ଡ ଧାରଣ ! ରାବଣ ସୀତାଙ୍କୁ ନେଇ ଲଙ୍କାକୁ ପଳାଇଲା ।"

ବିବାଦେ ମୁଁ ଭଗିଲି ଏଡାଙ୍ଗ ମୋତେ ହାଣି ।
ବସାଇ ପୁଷ୍ପକେ ଘେନି ଗଲା ସୀମାମଣି ।
ବସା ମଧ୍ୟରୁ କପୋତୀ ।
ବନ୍ଦୀ କରି ନେଲେ ଯଥା ଲୁବ୍ଧକେ ନିଅନ୍ତି ।୩୯।
ଏବେ କର ଦକ୍ଷିଣେ ଦକ୍ଷିଣ ଭୂମେ ଗମନେ ।
ଦଶକନ୍ଧର ପ୍ରାଣ କ୍ଷୀଣ କର ତୀକ୍ଷ୍ଣବାଣେ ।
ବୋଲି ବିସର୍ଜିଲା ଜୀବ ।
ବିହାୟସେ ରହି ଦିବ୍ୟରୂପେ କଲା ସ୍ତବ ।୪୦।
ବିମଳ ହୋଇ ଲଭିଲା ସେ ପରମ ଗତି ।
ବହ୍ନି ଯୋଗ କଲେ ଶବ ସ୍ୱୟଂ ରଘୁପତି ।
ବାସବରେ ବନ୍ଦ୍ୟ ଯେହୁ ।
ବିପ୍ର ପୋଷ୍ୟପୁତ୍ର ପ୍ରାୟ ପ୍ରେତକ୍ରିୟା ବହି ।୪୧।

---

୪୦ଶ ପଦ— ଦକ୍ଷିଣ—ପ୍ରବୀଣ । ବିହାୟସେ—ଆକାଶରେ । ଦିବ୍ୟରୂପେ—ଦେବତା ରୂପରେ ।

---

୩୯ଶ ପଦ—"ସେ ସୀତାଙ୍କୁ ନେବାର ଦେଖି ମୁଁ ତା ସହିତ ଯୁଦ୍ଧ କରି ତା ରଥ ଭଙ୍ଗ କଲି । ସେ ରାବଣ ମୋ ଡେଣା ହାଣି ରତ୍ନ କଙ୍କଣରେ ମଣ୍ଡି ବସାଇଲା ଶାସ୍ତ୍ର ପୁଷ୍ପକ ବିମାନରେ ସୀତାଙ୍କୁ ବସାଇ ନେଇଗଲା । ଯେପରି ବ୍ୟାଧମାନେ ବସା ମଧ୍ୟରୁ କପୋତୀ ପକ୍ଷୀକି ଜାଲରେ ବାନ୍ଧି କରି ନିଅନ୍ତି, ସେହିପରି ରାବଣ ପଟ ଭୂଅରୁ ସୀତାଙ୍କୁ ରଥରେ ବନ୍ଦୀକରି ନେଇଗଲା ।"

୪୦ଶ ପଦ—"ଆପଣ ତ ଯଶସ୍ୱୀ ଗୁଣରେ ପ୍ରବୀଣ ଅଟନ୍ତି । ଏବେ ଦକ୍ଷିଣ ଦିଗକୁ ଗମନ କରି ( ଲଙ୍କାକୁ ଯାଇ ) ତୀକ୍ଷ୍ଣ ବାଣରେ ରାବଣର ପ୍ରାଣକୁ ବିନାଶ କରନ୍ତୁ ।" ଏହା କହି ଜଟାୟୁ ପ୍ରାଣ ଛାଡ଼ିଲା । ଦିବ୍ୟରୂପ ଧରି ଆକାଶରେ ରହି ସ୍ତୁତି କଲା ।

୪୧ଶ ପଦ—ସେ ଜଟାୟୁ ଏହି ପୁଣ୍ୟକାର୍ଯ୍ୟ କରି ପରମ ଗତି ଲଭିଲା । ନିଜେ ରଘୁପତି ସେ ମୃତ ପିଣ୍ଡକୁ ଅଗ୍ନି ସଂଯୋଗ କଲେ । ଯେଉଁ ରାମଚନ୍ଦ୍ର ଇନ୍ଦ୍ରର ପୂଜ୍ୟ ଅଟନ୍ତି, ସେ ଜାଣିକି ବ୍ରାହ୍ମଣପୁତ୍ର ପରି ପ୍ରେତକର୍ମ କଲେ । ( ଲୋକମାନେ ମୃତ୍ୟୁପରେ ପ୍ରେତକ୍ରିୟା କରିବା ପାଇଁ ବ୍ରାହ୍ମଣ ପୁତ୍ରମାନଙ୍କୁ ଆଣି ପୋଷି ରଖିଥାନ୍ତି )।

ବହିଲ ପ୍ରାନ୍ତେ କଳିନ୍ଦପର୍ବତରୁ କାଳିନ୍ଦୀ ।
ବକ୍ଷସ୍ଥଳେ ପଡ଼େ ଅଶ୍ରୁ ଗଲେ କାନ୍ଦି କାନ୍ଦି ।
ବସ୍ୟାଙ୍କଣ ପଦେ ଛନ୍ଦ ।
ବିରଚନ ବୀରବର ଶାନ୍ତ ରାମଚନ୍ଦ୍ର ।୪୨।

---

## ପଞ୍ଚବିଂଶ ଛାନ୍ଦ

### ରାଗ ମଙ୍ଗଳବସନ୍ତି

ମୃଗବର ବାଣୀ

ବନେ ଘନେ ରଘୁମଣି । ବିପଥ ପଥ ନ ମଣି ।
ବନପୂର୍ଣ୍ଣ ଅନୁସଣ । ବେଣୀ ଲକ୍ଷଣ ଯେ ।୧।
ବିକଳ ମନ ଭ୍ରମତ । ବଚନ ଭଣେ ।
ବିଚ୍ଛେଦ ହେଲୁ ଲକ୍ଷିତେ । ବୈଦେହୀ ସୀତେ ଯେ ।୨।

---

୪୨ଶ ପଦ—କାଳିନ୍ଦୀ—ଯମୁନା ନଦୀ

---

## ଷଡ଼ବିଂଶ ଛାନ୍ଦ

୧ମ ପଦ—ଘନ—ନିବିଡ଼ । ବିପଥ—ଅବାଟ । ଘନ—ଜଳ ଅର୍ଥାତ୍ ସୈତବ ଜଳ । ଲକ୍ଷଣ—ଚକ୍ଷୁ ।

---

୪୨ଶ ପଦ— କଳିନ୍ଦ ପର୍ବତରୁ ଯମୁନା ନଦୀ ବାହାରିପରି ରାମଙ୍କ ଦୁଃଖରେ ଲୁହ ବହି ପଡ଼େ । ସେ ଏହାପରି କାନ୍ଦି କାନ୍ଦି ସେଠାରୁ ଗଲେ । ଏ ଗ୍ରନ୍ଥକୁ ବୀରବର ଉପେନ୍ଦ୍ର ବୀରବର ରାମଚନ୍ଦ୍ରଙ୍କୁ ଭକ୍ତି କରି ବସ୍ୟାଙ୍କଣ ପଦରେ ରଚନା କଲେ ।

---

## ଷଡ଼ବିଂଶ ଛାନ୍ଦ

୧ମ ପଦ—ରାମଚନ୍ଦ୍ରଙ୍କର ଲୁହ ଆଖି ସର୍ବଦା ଲୋତକ ପୂର୍ଣ୍ଣ ହୋଇ ଥିବାରୁ, ସେ ନିବିଡ଼ କାନନରେ ବାଟ ଅବାଟ ଜାଣି ନ ପାରି ବୁଲୁଥାନ୍ତି ।

୨ୟ ପଦ—ସୀତାଙ୍କ ବିଚ୍ଛେଦ ହେତୁ, ତାଙ୍କ ମନ ବିଶେଷ ଭାବରେ ଭ୍ରମ ହୋଇଅଛି । ତେଣୁ ସେ ଉଚ୍ଚ ସ୍ୱରରେ କହିଲେ, "ଗୋ ବୈଦେହି ! ଗୋ ସୀତେ ! ତୁ ଲେଶ୍ ମାତ୍ର ଦୁଃଖିତ ନ ହୋଇ ମୋ ନିକଟକୁ ପ୍ରକଟ ହୋଇପଲ୍ ।"

ବଳଦ ତମାଳ ତମ । ବାଳେ ନୋହେ ତାରତମ ।
ବଚ୍ଛେଦାଇ ହେଲେ ତମ । ବିଷ୍ଣୁ ଉତ୍ତମ ଏ ।୩।
ବାୟୁବାହନ ଚମରୀ । ବଞ୍ଛେ ଗର୍ଭିତ ସୁମରୁ ।
ବଦୂର ସେହୁ ସଦାଶେ । ବନ୍ଧୁ ପ୍ରକାଶେ କି ।୪।
ବଶିବେ ଉଚ ସମାନେ । ବେଶ୍ୟରେ ବିଖ୍ୟାତ ମାନେ ।
ବଧି ସିଦ୍ଧିକି ରଖିଛୁ । ବୁଦ୍ଧି ଶିଖିଛୁ ଯେ ।୫।
ବହସାଇଲା ଚନ୍ଦନେ । ବ୍ୟାଳ ପାଇଲା ନିନ୍ଦନେ ।
ବସାଇ ଚନ୍ଦ୍ରେ ଶଶ । ବିନା ପ୍ରଶଂସା ଏ ।୬।

---

୩ୟ ପଦ—ବଳଦ—ମେଘ । ତମ—ଅନ୍ଧକାର । ତାରତମ—ପ୍ରଭେଦ ତମ—ରାହୁ ।

୪ର୍ଥ ପଦ—ବଞ୍ଛା—ଇଚ୍ଛା । ଗର୍ଭ—କେଶ ମଧ୍ୟସ୍ଥ । ବାୟୁବାହନ ଚମରୀ—ମୃଗର ପୁଚ୍ଛ ।

୬ଷ୍ଠ ପଦ—ବ୍ୟାଳ—ସର୍ପ ।

---

୩ୟ ପଦ - "ମେଘ, ତମାଳ ବୃକ୍ଷ, ଅନ୍ଧକାର, ଏମାନେ ତୋ କେଶ ସହିତ ଦେଦୀପ୍ୟମାନ ନୁହନ୍ତି । ରାହୁ କେଶ ସହିତ ସମାନ ବୋଲି ମନେ କଲା, ମାତ୍ର ସମାନ ନ ହେବାରୁ ଭଗବାନଙ୍କ ଦ୍ୱାରା ସୁଦର୍ଶନ ଚକ୍ରରେ ଖଣ୍ଡିତ ହେଲା ।"

୪ର୍ଥ ପଦ—"ଏପରି ଯେ ସର୍ବୋତ୍କୃଷ୍ଟ କେଶ—ତାକୁ 'ବାୟୁବାହନ' ଚମରୀ ମୃଗର ପୁଚ୍ଛରେ ତାହା ମଧ୍ୟଭାଗରେ ରଖିବାକୁ ମନ କରିବାରୁ ସେଥିପାଇଁ ବିଧାତା ଏ ବିଚ୍ଛେଦ ଘଟାଇଲା କି ?"

୫ମ ପଦ—"ନୀଚଲୋକମାନେ ମର୍ଯ୍ୟାଦାରେ ବଡ଼ଲୋକଙ୍କ ସମାନରେ କାଳେ ସ୍ଥାନ ପାଇବେ, ବିଧାତା ଏହି ସିଦ୍ଧାନ୍ତ କରି ଏପରି ବୁଦ୍ଧି କଲା କି ?" (ଚମରୀ ମୃଗର ପୁଚ୍ଛ ରୂପ ନୀଚ ଲୋକ କେଶ ରୂପ ବଡ଼ ଲୋକଙ୍କ ସଙ୍ଗରେ ଏକାଠି ସ୍ଥାନ ପାଇ ନ ପାରନ୍ତି—ସେଥିପାଇଁ ବିଧାତା ଏ ବିରହ ଦସର ଦେଲା କି ] ?"

୬ଷ୍ଠ ପଦ—"ବିଧାତା ଚନ୍ଦନ ବୃକ୍ଷରେ ସର୍ପଙ୍କୁ ରଖାଇ ନିନ୍ଦା ପାଇଅଛି, ଚନ୍ଦ୍ର କୋଳରେ ଶଶକୁ ବସାଇ ଅପ୍ରଶଂସ୍ୟ ହୋଇଅଛି । (ସେଥିପାଇଁ ଅଧିକ ନିନ୍ଦା ପାଇବା ଭୟରେ ତୋ କେଶ ସହିତ ଚମରୀ ପୁଚ୍ଛକୁ ସ୍ଥାନ ନ ଦେଇ, ପାଇଁ ଏହା ହେଲା କି ) ?"

ଯୌଭୋଗ କାଳ ବିଗ୍ରହ । ବନ୍ଧୁ ଭଲି ବନଗୃହ ।
ବାଞ୍ଛିଲା ଅକର୍ମବନ୍ତ । ନିଷ୍ଫଳବନ୍ତ ଏ । ୭ ।
ସପନେ କର ବିଳାସ । ବଢ଼ାଇଥିଲି ଉଲ୍ଲାସ ।
ବିଧ୍ୱଂସ ଯଥା ସ୍ୱପନ । ବୁଲି କମ୍ପନ ଯେ । ୮ ।
ବୋଲଇ ଅତି ଗୁଣୀକ । ବନିତାବନ୍ଦେ ମାଣିକ୍ୟ ।
ବେଳୁଁ ବେଳ ସ୍ନେହନିଧି । ବସୁଁ ସନ୍ନିଧି ଯେ । ୯ ।
ବାହୁରେ କରି ବନ୍ଧନ । ବୋଲୁଥାଇ ଏହା ଧନ ।
ବାଧି ନ ପାରେ ଦୀନତା । ବଡ଼ ଉନ୍ନତା ମୁଁ । ୧୦ ।
ବଣା ହୋଇ ଭେଳୁଁ ଦଣ୍ଡେ । ବିରହୀ ହେଲି କି ଦଣ୍ଡେ ।
ବାହୁଡ଼ି ଆଉ ପାଇବି । ବୋଧି ହୋଇବ କି । ୧୧ ।

---

୭ମ ପଦ—"ଯୌବନ କାଳ ଭୋଗ କରିବାର ସମୟ,—ଏହା ବିଗ୍ରହ କରି ପ୍ରିୟାକୁ ସଙ୍ଗତରେ ବନକୁ ଆଣିଲି । କିନ୍ତୁ ଅକର୍ମୀ ଲୋକ ଯାହା ବାଞ୍ଛା କରେ, ତାହା ନିଷ୍ଫଳ ହୁଏ (ସେହିପରି ମୋର ଏ ବିଗ୍ରହ ନିଷ୍ଫଳ ହେଲା )।"

୮ମ ପଦ—"ବନରେ ପ୍ରିୟା ସହିତ ବିହାର କରି ଆନନ୍ଦ ବର୍ଦ୍ଧନ କରୁଥିଲି,—ତାହା ଏବେ ସ୍ୱପ୍ନ ପ୍ରାୟ ନାଶ ହୋଇଗଲା ( ନିଦ୍ରା ଭଙ୍ଗରେ ସ୍ୱପ୍ନ କଥା ନାଶ ଗଲା ପ୍ରାୟ ମୋର ଏ ଆନନ୍ଦ ନାଶ ଗଲା )।" ଏହା କହିବା ସାଙ୍ଗେ ସାଙ୍ଗେ ତାଙ୍କର ଦେହ ଥରହର ଧାରେ ବେଗି କମ୍ପିବାକୁ ଲାଗିଲା ।

୯ମ ପଦ—"ହେ ପ୍ରିୟେ ! ତୁ ଅତି ଗୁଣବତୀ ବୋଲଇ, ତୁଏ ବନିତାମାନଙ୍କ ମଧ୍ୟରେ ମାଣିକ୍ୟ ପ୍ରାୟ ଅଟୁ । ତୁ ବେଳକୁ ବେଳ ବେଶି ସ୍ନେହ ପ୍ରକାଶ କରି ଆସି ମୋ ପାଖରେ ବସୁଥିଲୁ ।"

୧୦ମ ପଦ—"ମୁଁ ତୋତେ ବାହୁ ଦ୍ୱାରା ଆଲିଙ୍ଗନ କରି କହେ, "ହେ ଧନ ! ତୋ ଯୋଗୁ ମୋର କିଛି ଦୁଃଖ ନାହିଁ, ମୁଁ ବଡ଼ ମହତ୍ ହୋଇଛି ।" ( ମାଣିକ୍ୟ ବାହୁରେ ବାନ୍ଧିଲେ ଲୋକକୁ ଦୁଃଖ ବାଧେ ନାହିଁ—ସେ ଉନ୍ନତ ହୋଇ ଥାଏ )।

୧୧ଶ ପଦ—"ମୁଁ ମୂଢ଼ ଲୋଭରେ ବଣା ହୋଇ ଦଣ୍ଡେମାତ୍ର ସମୟ ଛାଡ଼ି ଯାଇ ମୋ ଧନ ହରାଇ ଏବେ ଏପରି ଦଣ୍ଡ ଭୋଗ କରୁଅଛି । ଆଉ କଣ ସତେ ମୋର ଧନକୁ ଫେରି ପାଇ ମୁଁ ସ୍ଥିର ଚିତ୍ତ ହେବି ?"

ବଦାବ ହେଉଛି ଘର । ବସିଥିଲ କେ ତସ୍କର ।
ବଦୂର ମୋର ହେବାକୁ । ବେଗେ ନେବାକୁ ସେ ।୧୨।
ବସ୍ମୟ ଥିଲ ସେ ବନ । ବମ୍ବ ଚନ୍ଦ୍ରର ଚୁମ୍ବନ ।
ବାଲାରୁଣୁ ପାନ ସୁଧା । ବଡ଼ ବଶୁଦ୍ଧା ଯେ ।୧୩।
ବଚିତ୍ର ଏବେ ସ୍ତବନ । ବହଇ ଦୂର ଜୀବନ ।
ବନା ପିତୁଳା ନୟନ । ବ୍ୟକ୍ତ ଅୟନ ଏ ।୧୪।
ବପୁ ନ ମରୁଁ ମୋହର । ବେଳ ପ୍ରଭାତୁଁ ବୁଡ଼ଇ ।
ବଶେଷେ ଅନ୍ଧାର ଦଶେ । ବ୍ୟୋମାଦି ଦଶେ ଯେ ।୧୫।
ବୀର ଯେ ବୀରବୃନ୍ଦର । ବଦେହ ହୋଏ ତା ଦର ।
ବଭେଦଇ ଫୁଲଶର । ବପୁଦେଶର ଯେ ।୧୬।

---

୧୨ଶ ପଦ—"ମୋ ଘର ବଦାବ ହେଉଛି । ଚୋର ଜଣ ଜଗି ବସିଥିଲ ? ମୁଁ ଅନ୍ତର ହେବା ମାତ୍ରକେ, ତତ୍‌କ୍ଷଣାତ୍ ମୋ ଧନକୁ ଚୋରାଇ ନେଇଗଲ ?"

୧୩ଶ ପଦ—"ସେ ଦଣ୍ଡକାରଣ୍ୟ ଆଶ୍ଚର୍ଯ୍ୟ ଜନକ ଥିଲା । କାରଣ ସେ ବନରେ ମୁଁ ଏକାବେଳକେ ତୋର ମୁଖ ରୂପ ଚନ୍ଦ୍ରମଣ୍ଡଳକୁ ଏବଂ ଅଧର ରୂପ ବାଳସୂର୍ଯ୍ୟ ମଣ୍ଡଳକୁ ଅତି ବିଶୁଦ୍ଧ ଅମୃତ ପାନ କରୁଥିଲି ।"

୧୪ଶ ପଦ—"ଏବେ ମଧ୍ୟ ମୁଁ ଭାବୁଛି, ବିଚିତ୍ର ରକମର ଘଟନା ହେଉଅଛି । କାରଣ ମୋ ପ୍ରାଣ ଅନ୍ତର ହେଲା, ଅଥଚ ମୁଁ ବଞ୍ଚି ରହୁଅଛି । ମୋର ଚକ୍ଷୁ ପିତୁଳାଶୂନ୍ୟ ହେଲା, ତଥାପି ବାଟ ମୋତେ ଦେଖା ଯାଉଅଛି ।" [ ତୁ ମୋର ପ୍ରାଣ ଓ ନେତ୍ରର ପିତୁଳା ] ।

୧୫ଶ ପଦ—"ପୁଣି ଆଶ୍ଚର୍ଯ୍ୟ କଥା ଯେ, ମରଣ ନ ହେଉଣୁଁ ଏ ଦେହ ପୋଡ଼ିଯାଏ । ସନ୍ଧ୍ୟା ହେଲେ ଦିନ ବେଳ ବୁଡ଼େ, ମାତ୍ର ମୋର ସକାଳେ ବେଳ ବୁଡ଼ି ଯାଉଅଛି । ଆକାଶ ଏବଂ ଦିଗମାନେ ବିଶେଷରେ ଅନ୍ଧକାର ଦେଖା ଯାଉଅଛନ୍ତି ।"

୧୬ଶ ପଦ—ଯେଉଁ ରାମଚନ୍ଦ୍ର ବୀରମାନଙ୍କ ମଧ୍ୟରେ ଶ୍ରେଷ୍ଠ, ତାହାଙ୍କର ମଧ୍ୟ କନ୍ଦର୍ପଠାରେ ଭୟ ଜାତ ହେଉଅଛି, କାରଣ ଫୁଲଶର ତାଙ୍କର ଦେହ ଭେଦ କରଇ । [ ବଜ୍ରସମ ତାଙ୍କ କଠିନ ଦେହରେ କୋମଳ ଫୁଲଶର ମଧ୍ୟ ଭେଦ କରଇ, ଏ ମଧ୍ୟ ଆଶ୍ଚର୍ଯ୍ୟ ଘଟନା ] ।

ବକ୍ର ପାଦ ବସ୍ତ୍ରେଦୟେ । ବାଜିବ ଅସ୍ତ ହୃଦୟେ ।
ବୁଦ୍ଧି ଅଛ ନ ଧଣିଲେ । ବୁଝି ବସିଲେ ସେ । ୧୭ ।
ବୋଲ୍ ଏମନ୍ତ ଶୁଭିଲା । ଶବନ୍ଧ କୁଟେ ଖେଳିଲା ।
ବାହୁ ଯୋଜନ ପ୍ରମାଣ । ବନ୍ଧୁ ନିର୍ମାଣ ତା । ୧୮ ।
ବଢ଼ାଇ ଜୀବ ଲୁଣ୍ଠିତ । ଭୁଞ୍ଜେ ହୁଣ୍ଡ ଖଞ୍ଜିତ ।
ଶକ୍ତମୂର୍ତ୍ତି କବନ୍ଧ । ବଢ଼ିଲା ବନ୍ଧ ସେ । ୧୯ ।
ବୋଲନ୍ତି ଭ୍ରାତେ ରାଘବ । ବାହୁ ହେଲା କି ଲାଘବ ।
ବାଟରେ ଏକ କମଠ । ଅଛନ୍ତି ମଠ ଏ । ୨୦ ।
ବଦନ ଲୁପ୍ତ ହୋଇଛି । ବନାଶି ଭକ୍ଷିବା ଇଚ୍ଛି ।
ଶାପାକର୍ମରେ ରୋଧ । ବ୍ୟଙ୍ଗ ଉଦ୍ବୋଧ ଏ । ୨୧ ।

---

୧୭ଶ ପଦ—"ହୋଇଲା ସ୍ୱନ କରିବା ମାତ୍ରକେ ତାହା ଅସ୍ଥି ସ୍ଥଳରେ ବଜ୍ର ପ୍ରାୟ ଭେଦ କରିବ । ଏ କଥା ଶତ୍ରୁ ଦଳବେଳକୁ ମୋଟେ ଅଣୁ କଣ୍ଠ ବୁଝି ବଶୁ ନାହିଁ ।"

୧୮ଶ ପଦ—ରାମଚନ୍ଦ୍ର ଏହା କହିବାର ଶୁଣିପାରି କବନ୍ଧ ତାଙ୍କୁ ବାହୁରେ ବନ୍ଧନ କରିବାକୁ ଲୋଭ ପ୍ରକାଶ କରି ତର ପ୍ରଭାବରୁ ତାହାର ବାହୁଦ୍ୱୟକୁ ଯୋଜନେ ପର୍ଯ୍ୟନ୍ତ ବଢ଼ାଇ ଦେଲା ।

୧୯ଶ ପଦ—ସେ ରାକ୍ଷସ ଯୋଜନପ୍ରମାଣ ବାହୁଦ୍ୱୟକୁ ବଢ଼ାଇ ଜୀବମାନଙ୍କୁ ଆଣି ଭୋଜନ କରେ । ତାହାର ସ୍ଥଳରେ ମାଂସ ଉଦ୍ଧ୍ୟମାନ । ଏହାପରେ ବଳବାନ 'କବନ୍ଧ' ଶିରହୀନ ରାକ୍ଷସ ରାମଲକ୍ଷ୍ମଣଙ୍କୁ ଧରି ବନ୍ଧନ କଲା ।

୨୦ଶ ପଦ—କବନ୍ଧ ବନ୍ଧନରେ ପଡ଼ି ରାମ ଲକ୍ଷ୍ମଣଙ୍କୁ କହିଲେ, "ଆମ୍ଭର ବାହୁବଳ କ୍ଷୀଣ ହୋଇ ଗଲାଣି କି ? ଦେଖ, ବାଟରେ ଗୋଟାଏ କଇଁଛ ଆମର ପ୍ରତିବନ୍ଧକ ହେଉଅଛି ।"

୨୧ଶ ପଦ—"ଏହାର ମୁଖ ଅଦୃଶ୍ୟ ହୋଇଅଛି; ମାତ୍ର ଆମ୍ଭକୁ ଭକ୍ଷିବା ଇଚ୍ଛାରେ ମୁଖ ପ୍ରକାଶିତ କରୁଅଛି [ କଇଁଛ ମୁହଁ ଲୁଚାଇ ଥାଏ, ଖାଇବାକୁ ଦରକାର ପଡ଼ିଲେ ମୁହଁ ବାହାର କରେ ]। ତେଣୁ ମୁଁ ବିଚାରୁଛି, ଧର୍ମବିପାକ ବେଳେ 'ବ୍ୟଙ୍ଗ' ଅଙ୍ଗହୀନ କବନ୍ଧ ବାଟ ରୋଧ କରୁଅଛି । ( ଅଥବା-ଧର୍ମ ଫଳିଲା ବେଳେ ବେଙ୍ଗ ମଧ୍ୟ ବାଟ ପାଏ ) ।"

ବିକୋଷ କୃପାଣ କରେ । ବିଘାତ କଲେ ତା କରେ ।
ବ୍ୟୋମେ ଦିବ୍ୟ ରୂପ ସ୍ଥିତ । ବାଣୀ କହିଲ ସେ ।୨୨।
ବନମାଳୀ ଲକ୍ଷ୍ମୀପତି । ବିହନ୍ତୁ ଭକ୍ତ ବିପତ୍ତି ।
ବସୁମତୀ ସ୍ଥିରତାକୁ । ବିନାଶ ତାକୁ ଯେ ।୨୩।
ବିବୁଧ ଭିନ୍ନ ଯେଣୁ ତ । ବିଧିରେ ନରେ ଜନିତ ।
ବିଷ୍ଣୁ ମା ତୁମେ ଦମ୍ପତି । ବ୍ରହ୍ମାଣ୍ଡପତି ହେ ।୨୪।
ବିଗ୍ରହାନୁଗ୍ରହେ ସରି । ବଶିଷ୍ଠ ଗତି ପ୍ରସରି ।
ବିଦୃଶ୍ୟ କହି ବହନେ । ବିଜେ ଗହନେ ସେ ।୨୫।
ବିକଳ ଶତ୍ରୁ ଶ୍ରୀରାମ । ବିଶ୍ୱଲୋଚନାଭିରାମ ।
ବିଗ୍ରହ କ୍ଷୁଧାରେ ଥରେ । ବତ୍ସୁ ପଟରେ ଯେ ।୨୬।

---

୨୪ଶ ପଦ—ଦମ୍ପତି—ସ୍ତ୍ରୀ ଓ ପୁରୁଷ । ବିବୁଧ—ଦେବତା । ମା—ଲକ୍ଷ୍ମୀ ।

---

୨୨ଶ ପଦ—ଏହା ଶୁଣି ଲକ୍ଷ୍ମଣ ନିଜ ହସ୍ତରେ ଖଡ୍ଗକୁ ଖାପରୁ ବାହାର କରି ବିରାଧର ହସ୍ତରେ ପ୍ରହାର କଲେ । ହାତ ଛିଡ଼ିଯିବାରୁ ସେ ଦିବ୍ୟ ଦେବତା ରୂପ ଧାରଣ କରି ଆକାଶକୁ ଉଠିଯାଇ ସେଠାରେ ରହି ସୀତାଙ୍କ ବାଣୀ କହିଲା;—

୨୩ଶ ପଦ—"ବିଂଶମୁଖ ରାବଣ ତୁମର ଭକ୍ତ ଦୁଃଖକୁ ବିଧାନ କରୁଅଛି । ତୁମ୍ଭେ ତାକୁ ବିନାଶ କରି ପୃଥିବୀକୁ ସ୍ଥିର କର ।"

୨୪ଶ ପଦ—"ହେ ବ୍ରହ୍ମାଣ୍ଡର ପାଳନକର୍ତ୍ତା ! ତୁମ୍ଭେ ସ୍ତ୍ରୀ ପୁରୁଷ ଦୁଇଜଣ ଲକ୍ଷ୍ମୀ ଓ ନାରାୟଣ ଅଟ । ଦେବତାମାନଙ୍କ ସକାଶେ ରାବଣର ବିନାଶ ପାଇଁ ନର ଦେହରେ ଜନ୍ମ ହୋଇଅଛ ।"

୨୫ଶ ପଦ—"ତୁମ୍ଭେ ଶତ୍ରୁ ଓ ମିତ୍ରଙ୍କଠାରେ ସମାନ ବ୍ୟବହାର କର । ତୁମ୍ଭଠାରୁ ମୋକ୍ଷଗତି ପ୍ରାପ୍ତ ହୁଏ । [ଶତ୍ରୁ ଓ ମିତ୍ର ଉଭୟଙ୍କୁ ମୋକ୍ଷଗତି ଦିଅ] ।" ଏହା କହି ବିରାଧ ଶୀଘ୍ର ଅଦୃଶ୍ୟ ହୋଇଗଲା । ରାମ ଲକ୍ଷ୍ମଣ ଦୁହେଁ ବନମଧ୍ୟରେ ବିଜେ କଲେ ।

୨୬ଶ ପଦ—ସଂସାରସ୍ଥ ପ୍ରାଣୀମାନଙ୍କ ନୟନର ଆନନ୍ଦ ପ୍ରଦାନକାରୀ ଶ୍ରୀରାମ ବିକଳ ମନରେ ପଥ ଚାଲି ଚାଲି କ୍ଷୁଧାରେ ତାଙ୍କ ଦେହ ଥରିଲା ।

ବେଦେ ସ୍ତୁତ ଯାରେ ଶ୍ରୁତି । ବତ୍ସା ଧେନୁସ୍ୱନ ଶ୍ରୁତି ।
ବଲ୍ଲବଙ୍କେ କ୍ଷୀର ମାଗନ୍ତି । ବତ୍ସ ଇଙ୍ଗିତ ସେ । ୨୭ ।
ବୋଲନ୍ତେ ହୋଇ ବିରକ୍ତ । ବିଦୁହଁ ନ ପୟଃ ରକ୍ତ ।
ବିନୟ ବ୍ରଜ ସରବ । ବନା ଗରବ ସେ ।
ବଲ୍ଲବେ କ୍ଷୀର ଦାନକୁ । ବିହି ତୋଷିଲା ମନକୁ ।
ବିପୁଳ ତୋଷ ଚିତ୍ତରେ । ବରଦ ତାରେ ସେ । ୨୯ ।
ବାଞ୍ଛା ତୋ ଦେବୁଁ କୁମର । ବର ଏ କେଉଁ ଅମର ।
ବର୍ଣ୍ଣିବୁ ହୋଇ ତୁ ନନ୍ଦ । ବନ୍ଧୁ ଅନନ୍ଦ ଯେ । ୩୦ ।

---

୨୭ଶ ପଦ—ସ୍ତୁତ—ବେଦ । ବତ୍ସା—ବାଛୁରି । ଧେନୁସ୍ୱନ—ଗାଈମାନଙ୍କ ଧ୍ୱନି । ଶ୍ରୁତି—ଶୁଣି । ବଲ୍ଲବଙ୍କେ—ଗୋପାଳମାନଙ୍କୁ । କ୍ଷୀର—ଦୁଧ ।

୨୮ଶ ପଦ—ବିଦୁହଁ—ବିଶେଷରୂପେ ଦୋହନ କର । ପୟ—ଦୁଧ ।
୨୯ଶ ପଦ—ବଲ୍ଲବେ—ଗୋପାଳକୁ ।

---

୨୭ ଓ ୨୮ଶ ପଦ—ଯେଉଁ ରାମଚନ୍ଦ୍ରଙ୍କୁ ବେଦ ସ୍ତୁତି କରେ, ସେହି ସର୍ବଶ୍ରେଷ୍ଠ ପୁରୁଷ ଗାଈ ବାଛୁରିଙ୍କ ରବ ଶୁଣି ସେଠାକୁ ଯାଇ ଗୋପାଳଙ୍କୁ କ୍ଷୀର ମାଗିଲେ । ଗୋପାଳମାନେ କ୍ଷୀର ନ ଦେଇ ପରିହାସ କରିବାରୁ ରାମଚନ୍ଦ୍ର ବିରକ୍ତ ହୋଇ କହିଲେ "ତୁମ୍ଭେ ଦୁଧ ନ ଦୁହଁ ରକ୍ତକୁ ଦୋହନ କର ।" ଏହା କହିବାକ୍ଷଣି ଗୋପାଳମାନଙ୍କର ଦୁହୁଁଥିବା କ୍ଷୀର ରକ୍ତ ହୋଇଯିବାରୁ, ସେମାନେ ଗର୍ବହୀନ ହୋଇ ବିନୟୀ ହେଲେ । ରାମଚନ୍ଦ୍ର ଆଜ୍ଞା ଦେଲେ,—'ରକ୍ତ ନ ଦୁହଁ' ରକ୍ତ ଦୋହନ ନ କରି କ୍ଷୀର ଦୁହଁ ।

୨୯ଶ ପଦ—ତାଙ୍କ ମଧ୍ୟରୁ ଗୋଟିଏ ଗୋପାଳ କ୍ଷୀର ଦାନ କରି ରାମଚନ୍ଦ୍ରଙ୍କ ମନକୁ ତୋଷ କଲା । ରାମଚନ୍ଦ୍ର କ୍ଷୁଧାଯୁକ୍ତ ହୋଇଥିଲେ ମଧ୍ୟ କ୍ଷୀର ପାନ ଯୋଗେ ସନ୍ତୁଷ୍ଟ ହେବାରୁ ସେ ଗୋପାଳକୁ ବର ପ୍ରଦାନ କଲେ ।

୩୦ଶ ପଦ—ଅନ୍ତର୍ଯାମୀ ହେତୁ ସେ ଗୋପାଳର ମନ କଥା ଜାଣି ପାରି କହିଲେ, "ତୁମର ଏହି ଇଚ୍ଛା ଯେ, ଏ କେଉଁ ଦେବତା ଆସିଛନ୍ତି, ମୋତେ ପୁତ୍ରଦାନ ରୂପ ବର ଦେବେ । ତୁମେ ପରଜନ୍ମରେ ନନ୍ଦ ନାମ ବହି ଆନନ୍ଦରେ ରହିବ ।"

ବାରେ କ୍ଷୀରଦାନେ ଜୀବ । ବୋଧିଲ୍ଲ ଏ ଶୁଝାଯିବ ।
ବଢ଼ିବୁଁ ସୁତ ଭାବରେ । ବ୍ରଜ ନଗରେ ଯେ । ୩୧ ।
ବାମା ଯଶୋଦା ବୋଲାଇ । ବାଳଖେଳ ରେ ଭୁଲାଇ ।
ବନମାଳୀ କୃଷ୍ଣ ହରି । ବୋଲି ବଢ଼ାଇ ଯେ ।୩୨ ।
ବଳଭଦ୍ର ଅବରଜ । ବୋଲାଇବ ହେ ବରଜ ।
ବୁଝ ନା ଅଜ ଦ୍ୱାପରେ । ବିଦ୍ୟ ଦ୍ୱାପରେ ଏ । ୩୩ ।
ବାସ ସେ ସ୍ଥାନେ କରିଣ । ବାସରେ ସୂର୍ଯ୍ୟବଂଶଜ ।
ବନେ ଦକ୍ଷିଣ ମୁଖରେ । ବିହାର କରେ ସେ ।୩୪ ।
ବିପିନ ଅତି ଝଳକା । ବିକଚ ନବମାଳିକା ।
ବିଳସେ ଅଳିପାଳିକା । ବାଣ ମେଳିକା କ ? ୩୫ ।

---

୩୩ଶ ପଦ—ବରଜ—ଗୋପାଳ । ଅବରଜ—ସାନଭାଇ । ଦ୍ୱାପରେ—ସନ୍ଦେହରେ, ଦ୍ୱାପର ଯୁଗରେ ।

୩୫ଶ ପଦ—ବିପିନ—ବନ । ନବମାଳିକା—ନଅଳୀଫୁଲ । ବିକଚ—ପ୍ରସ୍ଫୁଟିତ । ଅଳିପାଳିକା—ଭ୍ରମରଶ୍ରେଣୀ ।

---

୩୧ଶ ପଦ—"ଥରେ କ୍ଷୀର ଦେଇ ଅମ୍ଭ ପ୍ରାଣ ରଖିଲ । ଏହି ସୁକୃତ ଫଳରୁ ଗୋପପୁରରେ ତୁମ୍ଭ ଘରେ ଅମ୍ଭେ ପୁତ୍ର ରୂପରେ ବଢ଼ିବୁଁ—ସେତେବେଳେ ଏ ଉପକାର ଶୁଝାଯିବ ।"

୩୨ଶ ପଦ—"ତୁମ୍ଭ ଗୃହିଣୀ ଯଶୋଦା ବୋଲାଇ ଅମ୍ଭକୁ ବାଲ୍ୟକ୍ରୀଡ଼ାରେ ଭୁଲାଇବ । ପୁଣି ଅମ୍ଭକୁ ସେ ବନମାଳୀ, କୃଷ୍ଣ, ହରି, ବୋଲି ତାଙ୍କ ଆନନ୍ଦରେ ପାଳ ହରଣ କରିବ ।"

୩୩ଶ ପଦ—"ହେ ଗୋପାଳ ! ଅମ୍ଭର ଏ ସାନଭାଇ ଲକ୍ଷ୍ମଣ ବଳଭଦ୍ର ବୋଲାଇବ । ତୁମ୍ଭେ ଆଜ ସଂଶୟ କର ନାହିଁ । ଏହା ଦ୍ୱାପର ଯୁଗରେ ଘଟିବ ।

୩୪ଶ ପଦ—ରାମ ଲକ୍ଷ୍ମଣ ସେ ସ୍ଥାନରେ ସେ ଦିବସ ବାସ କଲେ । ପର ଦିବସ ଦକ୍ଷିଣ ମୁଖରେ ବନ ମଧ୍ୟରେ ଶୀଘ୍ର ଗମନ କଲେ ।

୩୫ଶ ପଦ—ସେ ବନରେ ବିଶେଷ ରୂପେ ଶୋଭା ପାଉଥିବା ପ୍ରସ୍ଫୁଟିତ ନଅଳୀ ଫୁଲରେ ଭ୍ରମରଶ୍ରେଣୀ ଝଙ୍କାର କରୁଥାନ୍ତି । ତାହା ଦେଖି ରାମଚନ୍ଦ୍ର କହିଲେ, ଏ କନ୍ଦର୍ପର ଶର ସମୂହ କି ?"

ବିଷମ ବିଶିଖ ଗୁଣେ । କଲାକି ଅଳି କି ଗୁଣେ ?
ବହୁ ଅତସୀ ପ୍ରମାଣ । କି ଦେବ କମାଣ କି ? ।୩୬।
ବିଷାକି ମଧୁସ୍ତ ତନୁ । ବନେ ଚମକିତ ତନୁ ।
ବସ୍ତ୍ରୀମଣି ହା ସୀତା । କହେ ଶ୍ରୀପତି ସେ ।୩୭।
ବୃଷା ଶରଭଙ୍ଗ ଲୟେ । ବସିଥିଲେ କହେ ଲୟେ ।
ବସ୍ତୁ ଅମ୍ଭ କଷ୍ଟ ଭାଙ୍ଗି । ବିପଦଭାଗୀ ସେ ।୩୮।
ଚଣ୍ଡୀ ଜଗତଜନନୀ । ବିମଳ କମଳାନନୀ ।
ବୋଲି ରହିଲେ ଅନ୍ତରେ । ବଜେ ସନ୍ଧରେ ସେ ।୩୯।

---

୩୬ଶ ପଦ—ବିଷମବିଶିଖ—କନ୍ଦର୍ପ । କମାଣ—ଧନୁ ।
୩୭ଶ ପଦ—ବିଷାକି—ବିଷଯୁକ୍ତ କରି ।
୩୮ଶ ପଦ—ବୃଷା—ଇନ୍ଦ୍ର ।
୩୯ଶ ପଦ—ଶରାସନ-ଧର—ଧନୁର୍ବାଣଧାରୀ ।

---

୩୬ଶ ପଦ—'କନ୍ଦର୍ପ କେଉଁ ଗୁଣରେ ଅତସୀ ପୁଷ୍ପ ରୂପ ପ୍ରଧାନ ଧନୁରେ ଭ୍ରମର ରୂପ ଗୁଣ ଚଢ଼ାଇ ଅଛି ? (କନ୍ଦର୍ପ ଅର୍ଦ୍ଧ ଚନ୍ଦ୍ରାକାର ଅତସୀ ଫୁଲ ଧନୁରେ ଭ୍ରମର ଶ୍ରେଣୀ ରୂପ ଗୁଣ ଚଢ଼ାଇ ନଅଳୀ ଫୁଲ ଶର ବାନ୍ଧୁଛି କି ? ) ଅଥବା—କନ୍ଦର୍ପଙ୍କ ଅବଗୁଣ ହେତୁ ନଅଳୀ ରୂପ ଫୁଲରେ ଭ୍ରମର ରୂପ ଗୁଣ ଯୋଗ କରିଅଛି ? ( କିନା ଗୁଣରେ କି ସେ ଫୁଲ ବିରହୀଙ୍କ ହୃଦୟ ଭେଦ କରିବ )। ଅତସୀ ଫୁଲକୁ ଦେଖି ମନେ କଲେ, 'ଏ କନ୍ଦର୍ପର ଧନୁ କି ?'

୩୭ଶ ପଦ—ଏହି ସମୟରେ ଫୁଲ ଝୁଣ୍ଟି ରାମଚନ୍ଦ୍ରଙ୍କ ଦେହରେ ପଡ଼ିବାରୁ ସେ ଭାବିଲେ, 'ମକରନ୍ଦ ରୂପ ବିଷରେ ବିଷ ଯୁକ୍ତ କରି କନ୍ଦର୍ପ ଏ ଫୁଲ ଶରକୁ ମୋତେ ମାରିଲା କି ?' ଏହା ଭାବି ସେହି ବନରେ ତାଙ୍କ ଦେହ ଥରି ଉଠିଲା । ସେତେବେଳେ ସେ କହି ଉଠିଲେ, "ହେ ପ୍ରିୟାମଣି ! ହେ ସୀତା ! ( ତୋ ସକାଶେ ସିନା ମୋର ଏ ଦୁଃଖ )।"

୩୮ଶ ପଦ—ଇନ୍ଦ୍ର ସେ ସମୟରେ ଶରଭଙ୍ଗ ଋଷିଙ୍କ ଅଶ୍ରମରେ ବସି ଥିଲେ । ସେ ଚିନ୍ତା କଲେ,—ବିଷ୍ଣୁ ଆମ କଷ୍ଟ ଦୂର କରିବାପାଇଁ ରାମ ରୂପରେ ଏ ବିପଦର ଭାଗୀ ହୋଇଅଛନ୍ତି ସିନା !

୩୯ଶ ପଦ—ନିର୍ମଳ ପଦ୍ମମୁଖୀ ଜଗତ ଜନନୀ ସୀତାରୂପେ ବନ୍ଦୀ ହୋଇ ଅଛନ୍ତି । ଏହା ଭାବି ଇନ୍ଦ୍ର ଗୁପ୍ତ ହୋଇ ରହିଲେ । ରାମ ଶୀଘ୍ର ସେଠାରେ ବିଜେ କଲେ ।

ତାଣ ଶରଧନଧର । ଦେଖି ମୁନି ସନ୍ନିଧିର ।
ବରୁଧାଳୟକୁ ଗଲେ । ବନ୍ଦ ନିଗମେ ସେ । ୪୦ ।
ବନ୍ଧୁ ସୁକୃତ ଶବରୀ । ଭୁବଣ ଧବ। ଶବଂସ୍ରୀ ।
ଭୁଞ୍ଜେ ରସାଳ ଅସ୍ୱାଦୁଁ । ବାଛଇ ସ୍ୱାଦୁ ସେ । ୪୧ ।
ବିଜୟ ରାମ କରବେ । ବଭୁକ୍ତେ ମୋତେ ତାରବେ ।
ବିଲୋକି ସନ୍ତାପ ଚ୍ୟୁତ । ବଢ଼ାଇ ଚୂତ ସେ । ୪୨ ।
ଜଗଦ୍‌ବ୍ୟାପୀ ତା ଭାବରେ । ବଭୋଗୀ ହେଲେ ଜବରେ ।
ଜଗ୍ଧ୍ୟ ଭାବଗ୍ରାହୀ ପଦ । ବେଗେ ଅସ୍ପଦ ସେ । ୪୩ ।

---

୪୦ଶ ପଦ—ବରୁଧାଳୟ—ସ୍ୱର୍ଗ । ବନ୍ଦ ନିଗମେ—ବେଦବାକ୍ୟରେ ସ୍ତୁତି କରି ।

୪୧ଶ ପଦ—ଧବା ଶବଂସ୍ରୀ—ଧନ ସ୍ତ୍ରୀ ।

୪୨ଶ ପଦ—ଅସ୍ୱାଦୁ—ଚାଖିବା ଦ୍ୱାରା । ରସାଳ—ଅମ୍ବ । ବଭୁକ୍ତେ—ବିଶେଷ ରୂପରେ ବା ସନ୍ତୋଷରେ ଭୋଜନ କରି । ଚୂତ—ଅମ୍ବ । ଚ୍ୟୁତ—ଦୂର ।

---

୪୦ଶ ପଦ—ଶରଭଙ୍ଗ ମୁନି କାଣ୍ଡ କୋଦଣ୍ଡଧାରୀ ରାମ, ଲକ୍ଷ୍ମଣ ଦୁହିଁଙ୍କୁ ନିଜ ଆଶ୍ରମରେ ଦେଖି ବେଦବାକ୍ୟରେ ସ୍ତୁତି କରି ସ୍ୱର୍ଗକୁ ଗମନ କଲେ ।

୪୧ଶ ପଦ—ଅତି ପୁଣ୍ୟବତୀ ଶବରୀ ଧନ ରାମ ଭୁଞ୍ଜି ଭୁଞ୍ଜି ପାଚିଲା ଅମ୍ବ ସବୁ ଚାଖି ତନ୍ମଧ୍ୟରୁ ସ୍ୱାଦୁ ଅମ୍ବକୁ ବାଛି ରଖିଥିଲା ।

୪୨ଶ ପଦ—'ରାମଚନ୍ଦ୍ର ଏଠାକୁ ବିଜେ କରିବେ ଏବଂ ଏ ସୁସ୍ୱାଦୁ ପାଚିଲା ଆମ୍ବକୁ ଭୋଜନ କରି ମୋତେ ଏ ଜନ୍ମରୁ ଉଦ୍ଧାର କରିବେ'—ଏହା ଭାବି ସେ ଅମ୍ବ ଚାଖି ରଖି ଥାଏ । ରାମଚନ୍ଦ୍ର ସେଠାକୁ ଯିବାରୁ ସେ ତାଙ୍କୁ ଦେଖି ଦୁଃଖ ଦୂର କଲା ଓ ଚାଖି ରଖିଥିବା ସ୍ୱାଦୁ ଆମ୍ବ ଭୋଜନ ପାଇଁ ରାମଙ୍କ ହାତକୁ ବଢ଼ାଇ ଦେଲା ।

୪୩ଶ ପଦ—ଚରାଚରବ୍ୟାପୀ ରାମଚନ୍ଦ୍ର ଶବରୀର ଭକ୍ତି ଭାବରେ ବଶ ହୋଇ ଶୀଘ୍ର ସେ ଅମ୍ବ ଭକ୍ଷଣ କଲେ । ଭାବଗ୍ରାହୀ ଏହି ନାମ ବିଦ୍ୟମାନ ଥିବାରୁ ସେ ଅତି ଶୀଘ୍ର ଭକ୍ତର ପାଦ ହେଲେ ( ଅର୍ଥାତ୍ 'ଭାବଗ୍ରାହୀ' ଏହି ନାମକୁ ସାର୍ଥକ କଲେ ) ।

ବିଦନ୍ତମୁଦ୍ରା ରସାଳ । ବିଯୋଗ କଲେ ବିଶାଳ ।
ବନଜାକ୍ଷ ରଘୁବର । ବସୁଧା ଉପର ଯେ ।୪୪।
ଚିହ୍ନ ଏ ଦଶନରେ । ନିରୋଧୀ ମୋ ଅଶନରେ ।
ବୋଲି ଚାହିଁ ପ୍ରସନ୍ନରେ । ରହ୍ୟମାନରେ ସେ ।୪୫।
ବ୍ୟାଖ୍ୟାନ ଶବରୀ କରେ । ବସନ୍ତ ଋଷ୍ୟମୂକରେ ।
ବହି ସୁଗ୍ରୀବ ଖୋଲରେ । ବାଳିର ଡରେ ଯେ ।୪୬।
ବିକଳର ଏ ଦଶା ସେ । ବିବାଦ କରି ଦଶାସ୍ୟ ।
ବନ୍ଧୋପ୍ତୀଙ୍କ ଦେବ ଆଣି । ବାଞ୍ଛି ଅଣି ସେ ।୪୭।
ବାରତା କହି ଭକତ । ବିମାନେ ସେ ନଭଗତ ।
ତାହାର ସେହି ଆଦେଶେ । ବନପ୍ରଦେଶେ ସେ ।୪୮।

---

୪୪ଶ ପଦ—ବିଶାଳ ବନଜାକ୍ଷ—ବୃହତ୍‌ ନେତ୍ରପଦ୍ମ । ବିଦନ୍ତ-ମୁଦ୍ରା—ଦନ୍ତଚିହ୍ନ ରହିତ ।

୪୫ଶ ପଦ—ଅଶନ—ଭୋଜନ ।

---

୪୪ଶ ପଦ—ବୃହତ୍‌ ପଦ୍ମନେତ୍ର ରାମଚନ୍ଦ୍ର ଦନ୍ତଚିହ୍ନ ନ ଥିବା ପାଚିଲା ଆମ୍ବ ଗୋଟିକୁ ପୃଥିବୀ ଉପରେ ଥୋଇ ଦେଲେ ।

୪୫ଶ ପଦ—'ଏ ଅମ୍ବରେ ଦନ୍ତ ଚିହ୍ନ ନାହିଁ, ତେଣୁ ଏ ମୋର ଭକ୍ଷଣର ଉପଯୁକ୍ତ ନୁହେଁ'—ଏହା କହି ରାମଚନ୍ଦ୍ର ପ୍ରସନ୍ନ ଚିତ୍ତରେ ସେ ଶବରୀକୁ ଚାହିଁ ରହିଲେ ।

୪୬ଶ ପଦ—ରାମଙ୍କ ଚାହିଁବା ଭଙ୍ଗୀରୁ ଜାଣି ପାରି ଶବରୀ କହିଲା, "କିଷ୍କିନ୍ଧ୍ୟାରାଜ ବାଳିର ଭୟରେ ସୁଗ୍ରୀବ ଋଷ୍ୟମୂକ ପର୍ବତ ଗୁହାରେ ବାସ କରୁଅଛି ।"

୪୭ଶ ପଦ—"ସେ ସୁଗ୍ରୀବ ତୁମର ଏ ଅବସ୍ଥାରେ ବନ୍ଧୁ ହେବ । ସେ ତାହାର ବୀରତ୍ୱ ପ୍ରକାଶ କରି ରାବଣ ସଙ୍ଗେ ବିବାଦ ଲଗାଇ ତୁମ୍ଭ ସମ୍ବାଧଙ୍କୁ ଆଣି ଦେବ ।"

୪୮ଶ ପଦ—ସେ ଦେବୀ ଉତ୍ତର ସହିତ ଏ କାହାଣୀ କହି ଦେଇ ବିମାନରେ ଆରୋହଣ କରି ଆକାଶମାର୍ଗରେ ଗମନ କଲା । ଶବରୀର କଥା ଅନୁସାରେ ରାମ ଲକ୍ଷ୍ମଣ ଅରଣ୍ୟ ମଧ୍ୟରେ ବିଜେ କଲେ ।

| | | |
|---|---|---|
| ଦାଣ୍ଟେ ପମ୍ପା ସାରସର | । ବିସ୍ରଜିତ ସାରସର | । |
| ବିସ୍ରଜିତ ସାରସର | । ବୃଷାର ସର ସେ | ।୪୯। |
| ବିଧୁରେ ହ୍ରୀନ ଭ୍ରମର | । ବିଲସୁଛନ୍ତି ଭ୍ରମର | । |
| ବିଳାସ ଯହିଁ ଭ୍ରମର | । ବାଞ୍ଛେ ଅମର ସେ | ।୫୦। |
| ବାବରେ ଅଦର ସରେ | । ବିମଳ ଅଦରଶରେ | । |
| ବିବେକ ହଂସ ମାନସ | । ଦଳି ମାନସ ଯେ | ।୫୧। |
| ବିଧ୍ୱଂସ ତାପ ସ୍ମରଣ | । ବିଭୁ ପଡ଼ି ସ୍ମରଣ | । |
| ବିନାଦ୍ରି ମାଳ ସାରସ | । ବହଇ ରସ ସେ | ।୫୨। |

---

୪୯ଶତ୍ ପଦ—ସାରସର—ଉତ୍ତମ ସରୋବର । ବିସ୍ରଜ—ପକ୍ଷିଗଣ । ସାରସ—ଜଳଚର ପକ୍ଷୀବିଶେଷ । ବିସ୍ରଜିତ—ପକ୍ଷୀଙ୍କ ଦ୍ୱାରା ମଣ୍ଡିତ, ଶୋଭିତ । ସାରସର—ପଦ୍ମମାନଙ୍କର । ବୃଷା—ଇନ୍ଦ୍ର । ସର—ପୁଷ୍କରିଣୀ ।

୫୦ଶତ୍ ପଦ—ଭ୍ରମର—ଭଉଁରୀ । ଭ୍ରମର—ଭ୍ରମବଶତଃ । ଅମର—ଦେବତା ।

୫୧ଶତ୍ ପଦ—ଅଦର୍ଶ—ଦର୍ପଣ ।

୫୨ଶତ [illegible]—ସ୍ମରଣ—ଝୁରିବା । ଅତଳସ୍ମରଣ—ଅତିଗଭୀର । ବିନଦ୍ରି—ପ୍ରସ୍ଫୁଟିତ । ନୀଳସାରସ—ନୀଳପଦ୍ମ ।

---

୪୯ଶତ୍ ପଦ—ରାମ ଲକ୍ଷ୍ମଣ ଯାଉଁ ଯାଉଁ ବାଟରେ ପମ୍ପା ନାମକ ଏକ ସରୋବର ଦେଖିଲେ । ସେ ସରୋବର ପ ମାନଙ୍କରେ ଶୋଭିତ, ପୁଣି ହଂସ ଓ ପକ୍ଷୀମାନଙ୍କ ଦ୍ୱାରା ମଣ୍ଡିତ ହୋଇଅଛି । ସେ ଇନ୍ଦ୍ରଙ୍କ ସରୋବର ଅଟେ ।

୫୦ଶତ୍ ପଦ—ଦୈବଯୋଗରେ ସେ ସରୋବରରେ ଜଳ ଭଉଁରୀ ନାହିଁ, ଭ୍ରମରମାନେ ତହିଁରେ ଫୁଟିଥିବା ପଦ୍ମମାନଙ୍କରେ ବିହାର କରୁଅଛନ୍ତି । ସେହି ସରୋବରରେ ଦେବତାମାନେ ସ୍ୱର୍ଗ ଗଙ୍ଗା ଭ୍ରମରେ ଜଳ କ୍ରୀଡ଼ା କରିବାକୁ ବାଞ୍ଛା କରନ୍ତି ।

୫୧ଶତ୍ ପଦ—ସେ ସରୋବରର ଜଳ ଏପରି ସ୍ୱଚ୍ଛ ଯେ, ତାକୁ ଦେଖିଲେ ନିର୍ମଳ ଦର୍ପଣର ଗୌରବ ରହିବ ନାହିଁ, (ନିର୍ମଳ ଦର୍ପଣଠାରୁ ସେ ଜଳର ନିର୍ମଳତା ଖୁବ ବେଶି) । ହଂସମାନେ ସେ ସରୋବରରେ କ୍ରୀଡ଼ା କରି ମନେ କରନ୍ତି, ମାନ ସରୋବରଠାରୁ ଏହା ଉତ୍କୃଷ୍ଟତର ।

୫୨ଶତ୍ ପଦ—ସେ ସରୋବରର ଜଳ ଏପରି ଶୀତଳ ଯେ, ତାହା ସ୍ପର୍ଶ କଲେ ଗ୍ରୀଷ୍ମ ତାପ ଦୂର ହେବ, ପୁଣି ସେ ଅତି ଗଭୀର ଅଟେ । ତହିଁରେ ବିକଶିତ ଓ ମଧୁପୂର୍ଣ୍ଣ ନୀଳପଦ୍ମ ଶୋଭା ପାଉଅଛି ।

ଚାହ୍ନି ତୃଷାର୍ତ୍ତି କୁରଙ୍ଗ | ବିପିନ ତୀରେ କମଳ |
ବିକଟେ ଭୃଙ୍ଗ କୁମୁଦ | ବହୁ କୁମୁଦ ଏ |୫୩|
ବୁଡ଼ି ଉଠେ ଚକ୍ରଚକ୍ର | ବନ୍ଧେ ଗତି ଯଥା ଚକ୍ର |
ବିନୋଦରେ ଚକ୍ରବାକୀ | ବିଚକ୍ରବାକ୍ତ ସେ |୫୪|
ବୀକ୍ଷଣେ ହୋଇ ବିରହୀ | ବୋଲେ ରଘୁବୀର କହି |
ବିଷ୍କିର କହ ମଧୁର | କାନ୍ତା ବିଧୁର ମୋ |୫୫|
ବାଳା ମୋ ରସସରସୀ | ବିହରେ ମୁଁ ମୀନ ପଶି |
ବିଧୁରେ କେମନ୍ତ ଜୀବ | ବୁଝ ନ ଯିବ ଯେ |୫୬|

---

୫୩ଶତ୍ ପଦ—କୁରଙ୍ଗ—ମୃଗ | ବିପିନ—ପୂର୍ଣ୍ଣ | କମଳ—ଜଳ | ଭୃଙ୍ଗ—ଭ୍ରମର | କୁମୁଦ—କଇଁ ଫୁଲ | କୁମୁଦ—ଆନନ୍ଦ |

୫୪ଶତ୍ ପଦ—ଚକ୍ର—ଚକ୍ରବାକପକ୍ଷୀ | ଚକ୍ର—ସମୂହ | ବିନୋଦରେ—ଆନନ୍ଦରେ | ବିଚକ୍ରବାକ—ଖଣ୍ଡ ଅଭ୍ରକ |

୫୫ଶତ୍ ପଦ—ବୀକ୍ଷଣେ—ଦେଖିବାରେ | ବିଷ୍କିର—ପକ୍ଷୀର |

---

୫୩ଶତ୍ ପଦ—ତୃଷାତୁର ମୃଗଯୂଥ ଜଳପାନ କରିବା ଇଚ୍ଛାରେ ସେହି ସରୋବରର ତଟଦେଶରେ ବିଶେଷରୂପେ ପୂର୍ଣ୍ଣ ହୋଇଅଛନ୍ତି | ଜଳରେ ଫୁଟିଥିବା କଇଁ ଫୁଲ ଭ୍ରମରମାନଙ୍କୁ ବହୁତ ଆନନ୍ଦ ପ୍ରଦାନ କରୁଅଛି | ( କଇଁ ସବୁ ଫୁଟିଥିବାରୁ ଭ୍ରମରମାନେ ଆନନ୍ଦମନରେ ସେଠାରେ ବିହାର କରୁଅଛନ୍ତି ) |

୫୪ଶତ ପଦ—ଚକ୍ରବାକ ପକ୍ଷୀସମୂହ ସେ ସରୋବର ଜଳରେ ବୁଡ଼ି ଉଠନ୍ତି | ସେମାନେ ଚକ୍ରବାକୀ ସହିତ କ୍ରୀଡ଼ାରେ ରତହୋଇ ଜଳରେ ବିହାର କଲାବେଳେ ଏପରିଭାବରେ ଗତି କରୁଅଛନ୍ତି ଯେ, ତାଙ୍କୁ ଦେଖି ଖଣ୍ଡ ଅଭ୍ରକ ଗତି କଲାପରି ବୋଧ ହେଉଅଛି ( ଖରାଦିନେ ପ୍ରାନ୍ତର ସ୍ଥାନରେ ପବନ ଚକ୍ରାକାରରେ ଖୁବ ଯୋରରେ ବୁଲି ବୁଲି ଉପରକୁ ଉଠିଯାଏ, ତାକୁ ଖଣ୍ଡ ଅଭ୍ରକ କହନ୍ତି ] |

୫୫ଶତ୍ ପଦ—ସେ ଚକ୍ରବାକ ଓ ଚକ୍ରବାକୀଙ୍କ କେଳି ଦେଖିବାରୁ ରାମଙ୍କର ବିରହଯନ୍ତ୍ରଣା ବର୍ଦ୍ଧିତ ହୁଅନ୍ତେ, ସେ କହିଲେ, "ହେ ପକ୍ଷି ! ମୋ ମନୋହର କାନ୍ତାକୁ କହ |"

୫୬ଶତ୍ ପଦ—"ମୋ ପ୍ରିୟା ରସବତୀ ହେବାରୁ ଜଳପୂର୍ଣ୍ଣ ସରୋବର ପରି ଅଟେ | ତେଣୁ ମୁଁ ମୀନ ପ୍ରାୟ ବିହାରରେ ରହିଥିଲି | ଜଳ ବିହୁନରେ ମୀନ ନାଶ ହେଲାପରି ତାର ବିଚ୍ଛେଦରେ ମୋ ପ୍ରାଣ କା ନ ଯିବ କପରି ? [ମୁଁ ନିଶ୍ଚୟ ନାଶ ଯିବ |" ]

ବଡ଼ଶଷରେ ମଦନ । ବଧୁଛୁଅଛି ଭେଦନ ।
ବହୁଛି ସେ କେଉଁ ଦେଶ । ବୁଝି ସନ୍ଦେଶ ଏ ।୫୭।
ବଦନ ସଦା ଅମଳ । ବିକାଶି ଥିଲା କମଳ ।
ବଖେଳ ନେତ୍ର ଖଞ୍ଜନ । ବସି ରଞ୍ଜନ ସେ ।୫୮।
ବଢ଼ାଲିକି ମୋ ସୁରପତି । ବଭୂତ ଥିଲା ପ୍ରାପତି ।
ବକ୍ଷେରୁ ଦୀନ ହୋଇଛୁ । ବାହୁଡ଼ି ଇଛି ଏ ।୫୯।
ବକ୍ଷୋଜେ ତବ ହୃଗଳୁ । ବହନ୍ତି କବି ଯେ ଗଳୁ ।
ବଦ ଅଛି ସୋଦାରତା । ବନ୍ଧୁ ବାରତା ରୁ ।୬୦।
ବୋଲି କୋପି ଚକ୍ରବାକ । ବୋଇଲା ଏମନ୍ତ ବାକ ।
ବେଳାନାବେ ଦେଇ ପଦ । ବ୍ୟର୍ଥ ସମ୍ପଦ ଏ ।୬୧।

---

୫୭ଶତ ପଦ—ମଦନ—କନ୍ଦର୍ପ । ବଡ଼ଶ-ଶର—ବଡ଼ଶକଣ୍ଟା ରୂପ ଶରେ ।
୫୮ଶତ ପଦ—ବଦନ—ମୁଖ । କମଳ—ପଦ୍ମ । ବଖେଳ—ଚଞ୍ଚଳ ।
୫୯ତମ ପଦ—ସୁରପତି—ଇନ୍ଦ୍ର । ବିଭୂତି—ଐଶ୍ୱର୍ଯ୍ୟ ବା ସମ୍ପତ୍ତି ।
୬୦ତମ ପଦ—ବକ୍ଷୋଜ—ସ୍ତନ ବା କୁଚ । ସୋଦରତା—ବନ୍ଧୁତା ।

---

୫୭ଶତ ପଦ—"କନ୍ଦର୍ପ ବଡ଼ଶ କଣ୍ଟାରୂପ ଶରରେ ମୋତେ ବିନ୍ଧି ବଧିବାକୁ ବସୁଛୁଅଛି । ମୋ ପ୍ରିୟା କେଉଁ ଦେଶରେ ରହିଛି; ଏ ବାର୍ତ୍ତା ମୋତେ ବୁଝାଇ କହ ।"

୫୮ଶତ ପଦ—"ମୋର ପ୍ରିୟାର ମୁଖ ସର୍ବଦା ଫୁଟିଥିବା ପଦ୍ମପ୍ରାୟ ନିର୍ମଳ ଦିଶେ । ତହିଁରେ ଚଞ୍ଚଳ ହେଉଥିବା ନେତ୍ରଯୁଗଳ ଖଞ୍ଜନ ପକ୍ଷୀ ପ୍ରାୟ ଖେଳ କରି ଶୋଭା ପାଉଥିଲା ।"

୫୯ତମ ପଦ—"ତା ମୁଖ ପଦ୍ମରେ ନେତ୍ର ଖଞ୍ଜନର ଖେଳା ଦେଖି ମୁଁ ଇନ୍ଦ୍ର ସମ୍ପତ୍ତି ପ୍ରାପ୍ତ ହୋଇଥିଲି । ମାତ୍ର ବର୍ତ୍ତମାନ ତାହାର ବିଚ୍ଛେଦରୁ ବଡ଼ ଦୁଃଖୀ ହୋଇଅଛି । ସେ ଫେରି ଆସୁ—ମୁଁ ଏହା ଭାବନା କରୁଅଛି ।"

୬୦ତମ ପଦ—"ମୋ ପ୍ରିୟାର ସ୍ତନଯୁଗଳ ସହିତ ଭ୍ରମ ଦୁହିଁଙ୍କର ମିଳନକୁ କବିମାନେ ଉପମା ଦେଇଥାନ୍ତି । ସୁତରାଂ ତା ସହିତ ତୁମ୍ଭର ବନ୍ଧୁତା ଅଛି । ଅତଏବ ମୋ ପ୍ରିୟାର ବାର୍ତ୍ତା କହ ।"

୬୧ତମ ପଦ—ରାମଚନ୍ଦ୍ର ଏହା କହନ୍ତେ ଚକ୍ରବାକ ପକ୍ଷୀ କୋପ କରି କହିଲା, "ଭୁଇଁ ନାବରେ ଗୋଡ଼ ଥୋଇଲେ ସମସ୍ତ ସମ୍ପତ୍ତି ବ୍ୟର୍ଥ ହୁଏ । ( ଦୁଇ ନାବରେ ଗୋଡ ଦେଲେ ମଣିଷ ବୁଡ଼ି ମରେ ) ।"

ବହୁ ଜଟା ଶିରେ ଧରି । ବୃଦ୍ଧମରାଳ ଅଟ ତ ।
ବିହଗ ରତି ବିଲୋକ । ବିଲଜ୍ଜ ଲୋକ ତୁ ।୬୨।
ବୋଲନ୍ତି ବୋଲିଲେ ଲକ୍ଷଣ । ବିଚକ୍ଷଣ ସୁଲକ୍ଷଣ ।
ହଂସ ହେଉଛୁ ଛାର । ବିହଗ ସାର ତୁ ।୬୩।
ବିଖ୍ୟାତୁ ତପ ହେତୁ ତୁ । ବୋଲାଉ କୁଟୁମ୍ବୀ ତୁହି ।
ବଶିଷ୍ଠାଦି ଏ ଅଜ୍ଞାଣ । ବଡ଼ ସୁଜାଣ ତୁ ।୬୪।
ବିଯୋଗରେ କାଳ ନିଅ । ଦେଇ ଏ ଶାପ ତହିଁ ।
ବେନି ସୋଦର ବହନେ । ବିଜେ ଗହନେ ସେ ।୬୫।
ବ୍ୟାକୁଳରେ ହୋଇ କ୍ଷୀଣୀ । ବକ୍ଷେ ଭଣେ ପକ୍ଷିଣୀ ।
ବିଭୋଗରେ ରତି ସାର । ବିଦ୍ୟା ସଂସାର ଏ ।୬୬।

---

୬୨ତମ ପଦ – ବିହଗ—ପକ୍ଷୀ । ବିଲଜ୍ଜ—ଲଜ୍ଜାଶୂନ୍ୟ ।
୬୪ତମ ପଦ – ବିଖ୍ୟାତୁ—ବିଖ୍ୟାତ ଅଟୁ ।

---

୬୨ତମ ପଦ— 'ତୁମ୍ଭେ ଶିରରେ ଜଟା ବହିଅଛ, ପୁଣି ସ୍ତ୍ରୀ ଲମ୍ପଟ ଅଟ; [ ଦୁଇ ନାକରେ ଗୋଡ଼ ଦେଇଛ ] ତେଣୁ ବୃଦ୍ଧ ମରାଳ ତୁମ୍ଭ ପକ୍ଷରେ ନିନ୍ଦିତ ଅଟେ । ପୁଣି ଏବେ ନିର୍ଲଜ ସେ ପକ୍ଷୀଙ୍କ ରତି କ୍ରୀଡ଼ା ଦେଖୁଅଛୁ ।"

୬୩ତମ ପଦ—ଚକ୍ରବାକଠାରୁ ଏହା ଶୁଣି ଲକ୍ଷ୍ମଣବନ୍ତ ଓ ପଣ୍ଡିତ ଲକ୍ଷ୍ମଣ ତତ୍କ୍ଷଣାତ୍ କହିଲେ, "ତୁ ଛାର ପକ୍ଷୀ ହୋଇ ମନେ ମନେ ବଡ଼ ହଂସ ବୋଲି ଜଣାଇ ଦେଉଛୁ ।"

୬୪ତମ ପଦ—"ତୁ ସାମାନ୍ୟ ପକ୍ଷୀ ମାତ୍ର ପୁଣି ତୁ ଗୃହୀ, ଅଥଚ ତପସ୍ୟାର ଲକ୍ଷଣ ବହୁଅଛୁ । ବଶିଷ୍ଠାଦି ଋଷିମାନେ କଣ ବଡ଼ ଅଜ୍ଞ ?—ସେ ଜଟାଜୁଟ ବାନ୍ଧି, ତପସ୍ୟା କରି ମଧ୍ୟ ଗୃହୀ ହୋଇଅଛନ୍ତି । ତୁ ତାଙ୍କଠାରୁ ବଡ଼ ପଣ୍ଡିତ ହେଉ !

୬୫ତମ ପଦ—ଆଜିଠାରୁ ବିଚ୍ଛେଦରେ ସମୟ କଟାଅ ।" ଏହି ଶାପ ଦେଇ ରାମ ଲକ୍ଷ୍ମଣ ଦୁଇ ଭାଇ ତତକ୍ଷଣାତ ସେଠାରୁ ଗହନ ବନ ମଧ୍ୟକୁ ବିଜେ କରି ଗଲେ ।

୬୬ତମ ପଦ—ଶାପ ପାଇବାରୁ ଚକ୍ରବାକୀ ବ୍ୟାକୁଳରେ କ୍ଷୀଣବର୍ଣ୍ଣ ପ୍ରାପ୍ତ ହୋଇ ନିଜ କାନ୍ତକୁ କହଇ, "ଏ ସଂସାର ଭିତରେ ସମସ୍ତ ଭୋଗ ମଧ୍ୟରେ ରତି ସମ୍ଭୋଗ ଶ୍ରେଷ୍ଠ ବୋଲି କଥିତ ହୋଇଅଛି ।"

ବିପଦ କି ଶିରଚ୍ଛେଦ । ବଡ଼ ବିପଦ ବିଚ୍ଛେଦ ।
ବଂଶ ବଢ଼ିବା ଅର୍ଜ୍ଜନ । ବ୍ୟର୍ଥ ସର୍ଜ୍ଜନ ଏ ।୬୭।
ବିଧୁର ସେ ଘୋଡ଼ାଇଲେ । ବିନୟ ପ୍ରେମେ ହୋଇଲେ ।
ବିଭୋ ଦକ୍ଷିଣ ଗମନ । ବାମ ସୁମନ ହେ ।୬୮।
ବହୁ ମଧୁର ମୂରତି । କହିଲେ କଟୁ ଭାରତୀ ।
ବି-ଜାତି କେତେ ମତିକେ । ଦେଲେ ବିତର୍କ ଯେ ।୬୯।
ବଦନ ଦଶ ବିଂଶତି । ବାହୁ ତା ଆଗେ ବସତି ।
ବିମାନେ ଶୋକ କଳିତା । ବରବନିତା ଯେ ।୭୦।
ବିଲୋକ ଏତେ ମାତର । ବିଚାର କର ଶଙ୍କର ।
ବିଭୁ ଶାପରୁ ସୁଗତି । କହୁଁ ଭଗତି ସେ ।୭୧।

---

୬୭ତମ ପଦ—"ଶିରଚ୍ଛେଦ ହେଲେ ତା କି ବିପଦ? ତା ଅପେକ୍ଷା ବିରହ ବିପଦ ବେଶୀ କଷ୍ଟଦାୟକ। ବଂଶ ବୃଦ୍ଧି ପ୍ରାପ୍ତ ନ ହେଲେ ଆମ୍ଭ ଜୀବନ ବୃଥା ଗଲା! [ସମ୍ଭୋଗ ନ ହେଲେ ବଂଶ ବୃଦ୍ଧି ହେବ ନାହିଁ। ତେଣୁ ଆମ କୁଳ ଏହିଠାରୁ ଲୋପ ପାଇବ]।"

୬୮ତମ ପଦ—ସେ ଚକ୍ରବାକ ଓ ଚକ୍ରବାକୀ ଏମନ୍ତ ବିଧୁର ହୋଇ ରାମଙ୍କ ପଛରେ ଗୋଡ଼ାଇଲେ ଓ ବିନୟ ପ୍ରକାଶ କରି କହିଲେ, "ହେ ବିଭୋ! ତୁମ୍ଭେ ଦକ୍ଷିଣ ଦିଗକୁ ଗମନ କରିବାରେ ଅଗ୍ରଣୀ ହୋଇଅଛ (ଅଥବା—ତୁମ୍ଭେ ଦେବତା ବା ବିଶ୍ୱ ପ୍ରତି ସମଦର୍ଶୀ ହୋଇଅଛ) ଅଥଚ ଆମ୍ଭଠାରେ ପ୍ରତିକୂଳ ଆଚରଣ କରୁଅଛ।"

୬୯ତମ ପଦ—"ତୁମ୍ଭେ ସୁନ୍ଦର ମୂର୍ତ୍ତି ଧାରଣ କରିଅଛ। ଅଥଚ ଏପରି କଟୁ କଥା କହିଲ [ମଧୁରଠାରେ କଟୁ ରହିବା ଅସମ୍ଭବ]। ଆମ୍ଭେ ଛାର ପକ୍ଷୀ ଜାତି—ଆମର ଜ୍ଞାନ ଅବା କେତେ? ଅଭିଶାପ ଦେଲାବେଳେ ଏହା ଟିକିଏ ମାତ୍ର ବିଚାର କଲ ନାହିଁ?"

୭୦ତମ ପଦ—"ଦଶମୁଖ ବିଂଶବାହୁ ବିଶିଷ୍ଟ କେହି ବିମାନରେ ବସି ଯାଉଥିଲାବେଳେ, ତା ଆଗରେ ଏକ ଶ୍ରେଷ୍ଠ ମହିଳା ବସି ଶୋକ କରୁଥିଲା।"

୭୧ତମ ପଦ—"ଆମ୍ଭେ ଏତିକି ମାତ୍ର ଦେଖିଅଛୁଁ,—ତୁମ୍ଭେ ତୁମ ମନରେ ବିଚାର କର। ଆମ୍ଭଙ୍କୁ ଦେଇଥିବା ଶାପରୁ ମୁକ୍ତ ପାଇବାର ଉପାୟ କହ।" ଏହା କହି ସେମାନେ ବିଶେଷ ଭାବରେ ଭକ୍ତି କଲେ।

ବାସରେ ମାଡର ଭର । ଢଭ୍ରବସ୍ତରେ ଅନ୍ତର
ଦେଖିବୁକେ ନଦେ ରହ । ବାଟୁ ଝରନ୍ତୁ ଏ ।
ବରଦ ସସବ ହେଲେ । ବାହୁଡ଼ିଲେ ପକ୍ଷୀ ହେଲେ ।
ବୋଲେ ଉପେନ୍ଦ୍ର ଅସ୍ମୃଦ । ବାସ୍ତ୍ରଶ୍ରି ପଦ ଏ ।୭୨।

---

୭୨ତମ ପଦ—ବାସର—ଭନ । ଢର—ରଙ୍ଗାପାଅ । ଅସ୍ମୃତ—ସ୍ଥାନ ।

---

୭୨ତମ ପଦ—ତାଙ୍କର ଭକ୍ତି ଦେଖି ରାମଚନ୍ଦ୍ର ତାଙ୍କୁ ବର ପ୍ରଦାନ କଲେ, "ତୁମ୍ଭେ ଦିବସରେ କେବଳ ଏକଣ ହେବ । ରାତିରେ ନଦୀର ଦୁଇ କୂଳରେ ଅନ୍ତର ହୋଇ ରହିବ । ତେଣୁ ବଞ୍ଚିବ ସଟିକ !" ରାମଚନ୍ଦ୍ର ଏହି ବର ଦେବାରୁ ପକ୍ଷୀଦୁହେଁ ତତ୍କ୍ଷଣାତ୍ ଫେରିଗଲେ । ଉପେନ୍ଦ୍ର ବାସ୍ତ୍ରଶ୍ରୀପଦର ସ୍ଥାନ ଏହି ଗ୍ରନ୍ଥରୁ କହିଲେ । [ ଶେଷ ପଦ ବାସ୍ତ୍ରଶ୍ରୀ ପଦ ସହିତ ମିଶିଅଛି ] ।



କଟକ ନବଭାରତପ୍ରେସରେ ଶ୍ରୀ ବନମାଲୀ ମିଶ୍ରଙ୍କ ଦ୍ୱାରା
ମେସିନ୍‌ଯନ୍ତ୍ରେ ମୁଦ୍ରିତ । ୧୯୪୯

